

ଆଦିଗନ୍ତ ପ୍ରସାରିତ
ଚାହାଣିରେ ଏକ ବୌଦ୍ଧିକ
ଗାମ୍ଭୀର୍ଯ୍ୟତା ଓ ସ୍ମିତହାସ୍ୟରେ
ସେ ଆମ ମନ ଓ ହୃଦୟକୁ ଶତତଃ ସ୍ପର୍ଶ କରୁଛନ୍ତି....



ଏକ ଅନ୍ତରଙ୍ଗ ମୂହୁର୍ତ୍ତରେ
ନିଆରା ମଣିଷଟିଏ

# ମାନସପୁତ୍ର ଓଡ଼ିଶା ସଂସ୍କୃତି ପରିଷଦର ବିଭିନ୍ନ କର୍ମଶାଳାରେ






# କର୍ମଶାଳାରେ ମଗ୍ନ ଅତିଥିମାନେ





# ସମସ୍ତ ସମ୍ବର୍ଦ୍ଧନାର ଉର୍ଦ୍ଧ୍ୱରେ ଯେ







ପ୍ରିୟ ନାତୁଣୀ ଲିତାର ଅନୁରୋଧରେ ଜାମାତାଙ୍କ ବାସଭବନରେ
ମହାମହୋପାଧାୟ ହିଡ଼ମ୍ବନାଥ ଚାଟର୍ଜୀ ଶାସ୍ତ୍ରୀ ଓ ପ୍ରଫେସର ବାନାର୍ଜୀଙ୍କ ଗହଣରେ

# ପରମ କାରୁଣିକ ସଦ୍‌ଗୁରୁ ଶ୍ରୀ ଶ୍ରୀ ରବିଶଙ୍କରଙ୍କ ସହିତ



ପରମ କାରୁଣିକ ସଦ୍‌ଗୁରୁ ଶ୍ରୀ ଶ୍ରୀ ରବିଶଙ୍କରଙ୍କ ଭାଷାରେ
**"He is a wise and happy man. A unique person."**





*From what I heard from my mother, I know that her Aja was a great man. I have always wanted to have him around so that he could help me and guide me at hard times. I am very sorry that he is gone. I pray to God that he has a good afterlife. I love my Jejeaja dearly and am very proud that he is my Jejeaja.*

**SARTHAK**
Boston, U.S.A.

# ପ୍ରଫେସର ଡଃ କାହ୍ନୁଚରଣ ମିଶ୍ର

*- ସଚ୍ଚିଦାନନ୍ଦ ରାଉତରାୟ*

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଏବଂ ଜଣେ ପ୍ରାଂଗ୍ୟ ଓଡ଼ିଆ ଅଧ୍ୟାପକ ଭାବେ ସମଗ୍ର ଓଡ଼ିଶାରେ ବିଦିତ ଶ୍ରୀ କାହ୍ନୁଚରଣ ମିଶ୍ର । ମୁଁ ତାଙ୍କୁ ତରୁଣ ବୟସରୁ ଜାଣେ । ମୁଁ ଯେତେବେଳେ କଲିକତା କେଶୋରାମ କଟନ ମିଲରେ ଏକ୍‌ଜିକ୍ୟୁଟିଭ ଅଫିସର ରୂପେ କାର୍ଯ୍ୟ କରୁଥିଲି, ସେ ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆରେ ଏମ୍.ଫିଲ କରୁଥିଲେ । ତାଙ୍କର ସେତେବେଳେ କେତେକ ପ୍ରାଚୀନ ଓଡ଼ିଆ କାବ୍ୟ ଦରକାର ଥିଲା । ସେ ବହିଗୁଡ଼ିକ କଲିକତାରେ ବା ଓଡ଼ିଶାରେ ମିଳୁନଥିଲା । ମୁଁ କେଶୋରାମ କଟନ ମିଲ ଶ୍ରମିକ ଲାଇବ୍ରେରୀରୁ ଏହି ବହିଗୁଡ଼ିକ ଆଣି ତାଙ୍କୁ ଦେଇଥିଲି । ସେ ସେଥିପାଇଁ ମୋ ନିକଟରେ ମଝିରେ ମଝିରେ କୃତଜ୍ଞତା ପ୍ରକାଶ କରୁଥିଲେ । ବଡ଼ ଦୁଃଖର ବିଷୟ ଯେ ଗତ ଡିସେମ୍ବର ମାସରେ ଇହ ଜଗତ ଛାଡ଼ି ଚାଲିଯାଇଛନ୍ତି ।

୧୯୭୮ ମସିହାରେ ସେ ମୋତେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ D.LITT ଉପାଧି ଦବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ତା' ପୂର୍ବ ବର୍ଷ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ମୋତେ D.LITT ଉପାଧି ଦେଇଥିଲେ ।

ସେ ଥିଲେ ଜଣେ ବିଜ୍ଞାନ ସମ୍ମତ ବିଚାରଧାରାର ଗବେଷକ । ତାଙ୍କର ଇଂରାଜୀ ପୁସ୍ତକ "The Cult of Jagannath" କଲିକତାରେ ଜଣେ ବିଶିଷ୍ଟ ପୁସ୍ତକ ପ୍ରକାଶକଙ୍କ ଦ୍ୱାରା ପ୍ରକାଶିତ ହୋଇ ସାରା ଭାରତରେ ଆଦୃତ ହୋଇଛି । ସେ ଜଗନ୍ନାଥଙ୍କର ଅନାର୍ଯ୍ୟସ୍ଥିତି (Origin) ଉପରେ ଆଲୋକପାତ କରିଥିଲେ ।

ବିଶ୍ୱବିଦ୍ୟାଳୟ ଚାକିରୀ ଅବସର ନେବା ପରେ ସେ ଗବେଷଣାଗାର ସ୍ଥାପନ କରି ବିଭିନ୍ନ ଓଡ଼ିଶାରେ ଧର୍ମ ଓ ସଂସ୍କୃତି ବିଷୟରେ ପ୍ରାମାଣିକ ଗ୍ରନ୍ଥମାନ ପ୍ରକାଶ କରିଛନ୍ତି । ଆମେରିକାର ଓଡ଼ିଆ ଅନୁଷ୍ଠାନ ତାଙ୍କୁ ବକ୍ତୃତା ଦବା ପାଇଁ ଡାକିଥିଲେ । ସେ ସେଠାରେ କେତେକ ଭାଷଣ ଦେଇଥିଲେ ।

ଏହାଛଡ଼ା ସେ ବିଦ୍‌ଗଧ କବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ଉପରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ଇଂରାଜୀରେ ଖଣ୍ଡିଏ ମନୋଗ୍ରାଫ୍ ଲେଖି ଯାଇଛନ୍ତି । ମୁଁ ତାଙ୍କର ସ୍ୱର୍ଗତ ଆତ୍ମାର ଶାନ୍ତି ଓ ସଦ୍‌ଗତି କାମନା କରୁଛି ।

■■

# କାହ୍ନୁ ଭାଇନା- ଏକ ମଧୁର ବ୍ୟକ୍ତିତ୍ୱ

*- ମହାପାତ୍ର ନୀଳମଣି ସାହୁ*

ଦିବଂଗତ ପ୍ରଫେସର କାହ୍ନୁଚରଣ ମିଶ୍ର ଥିଲେ ଜଣେ ନିଷ୍ଠାପର ଶକ୍ଷାବିତ୍- ଗବେଷକ- ଜ୍ଞାନସମୃଦ୍ଧ ଓ ଭାବମଧୁର ବ୍ୟକ୍ତିତ୍ୱ । ମୁଁ ତାଙ୍କୁ ସମ୍ମାନକର ଆତ୍ମୀୟତାରେ ଭାଇନା ଡାକୁଥିଲି ଓ ସେ ମୋର ନାମ ଧରି ଡାକୁଥିଲେ । ଜ୍ଞାନ ଓ ପାଣ୍ଡିତ୍ୟ ଥିଲା ତାଙ୍କର ବୃତ୍ତିଗତ ଐଶ୍ୱର୍ଯ୍ୟ । କିନ୍ତୁ ପ୍ରକୃତିରେ ଓ ପ୍ରବୃତ୍ତିରେ ସେ ଥିଲେ ଜଣେ ମାଧୁର୍ଯ୍ୟବାଦୀ ମଣିଷ । ବୈଷ୍ଣବ ଶାସ୍ତ୍ରରେ ତାଙ୍କର ଗଭୀର ପ୍ରବେଶ ଥିଲା ଓ ଜଗନ୍ନାଥ-ତତ୍ତ୍ୱ- ରସ-ଲୀଳାଦି ବ୍ୟାପାରରେ ତାଙ୍କର କେବଳ ଅନୁସନ୍ଧିୟା ନଥିଲା, ବହୁ ଦୂରାବଧି ଅନୁପ୍ରବେଶ ମଧ ଥିଲା । ଶେଷ ପର୍ଯ୍ୟନ୍ତ ସେ ଗବେଷଣାରେ ଓ ଗବେଷଣା ମାର୍ଗ ପ୍ରଦର୍ଶନରେ ନିଜକୁ ନିୟୋଜିତ ରଖିଥିଲେ । ଭାରତର ବହୁ ତୀର୍ଥ ଭ୍ରମଣ କରି ସେ ଭାରତର ଆଧାତ୍ମିକ ଚେତନା ସଙ୍ଗେ ପରିଚିତ ଥିଲେ । ଜଗନ୍ନାଥ ତତ୍ତ୍ୱର ବ୍ୟାଖ୍ୟାନ କରି ସେ ଆମେରିକାରେ ଖୁବ୍ ପ୍ରଶଂସା ଓ ସମ୍ମାନ ଲାଭ କରିଥିଲେ ।

ତାଙ୍କ ସହିତ ମୋର ସମ୍ପର୍କ ଥିଲା ବଡ଼ ଭାଇ ଓ ସାନଭାଇର । କିନ୍ତୁ ବଡ଼ଭାଇନାଙ୍କୁ ସର୍ବପ୍ରକାର ମାନ୍ୟତା ଦେଇ ମଧ ମୁଁ ତାଙ୍କ ସହିତ ନର୍ମସଖା ଭଳି ରସିକତା କରୁଥିଲି ଏବଂ ବେଳେବେଳେ ଖୁବ୍ ଉଗ୍ର ପରିହାସ ମଧ କରୁଥିଲି । ସେ ମଧ ଏସବୁ ଉପଭୋଗ କରୁଥିଲେ ଏବଂ ନିଜେ ମଧ ମୋ ସହିତ ରସିକତା କରିବାକୁ ଛାଡ଼ୁନଥିଲେ । ତାର କାରଣ ହେଲା- କାହ୍ନୁଭାଇନାଙ୍କର ବ୍ୟକ୍ତିତ୍ୱର କୋମଳ ବିଦଗ୍ଧତା । ନିଜଧାରାରେ ତାଙ୍କର ଜ୍ଞାନ ଥିଲା ଅଗାଧ । କିନ୍ତୁ ଜ୍ଞାନ ତାଙ୍କ ବ୍ୟକ୍ତିତ୍ୱକୁ ବୃଥା ଓଜନରେ ଭାରାକ୍ରାନ୍ତ କରିଦେଇନଥିଲା । ସେ ଇଚ୍ଛା କରି ନିଜକୁ ବେଶ ଲଘୁ ଓ ଚପଳ କରିପାରୁଥିଲେ । ଏହା ସମସ୍ତଙ୍କ ପକ୍ଷରେ ସହଜ ନୁହେଁ- ବିଶେଷତଃ ଜ୍ଞାନପନ୍ଥୀମାନଙ୍କ ପକ୍ଷରେ ।

ଭାଇନା ଥିଲେ ମୋ ଭଳି ଗେଡ଼ା ମଣିଷ । କିନ୍ତୁ ସୁସ୍ଥ ବଳିଷ୍ଠ ଓ ସୁନ୍ଦର । ତାଙ୍କର ହସ କି ମଧୁର ! କି ଆମୋଦ ଦାୟକ । ଆମ ଦୁହିଙ୍କ ଯୌବନକାଳରେ ମୁଁ ତାଙ୍କୁ ଥଟ୍ଟାରେ କହେ- ''ଭାଇନା ! ତୁମେ ଗୋଟିଏ 'ସ୍ତୋକକୃଷ୍ଣ' । ସେ ହସିହସି କହନ୍ତି- 'ତା'ହେଲେ ତୁମେ ଗୋଟିଏ ସ୍ତୋକ ମଧୁମଙ୍ଗଳ ।'' କିନ୍ତୁ କେହି ଯେପରି ନଭାବନ୍ତି ଯେ, ଆମ ଦୁହିଁଙ୍କର ସେତେବେଳେ ଦେଖାହେଲେ ଏଇ ସବୁ ଲଘୁ ଆମୋଦର ଆଳାପ ସଂଳାପ ହେଉଥିଲା । 'ରସତତ୍ତ୍ୱ' ଉପରେ- ବିଶେଷତଃ ବୀଭତ୍ସଭାବ ଓ ଶୃଙ୍ଗାରଭାବ କିପରି 'ବୀଭତ୍ସରସ' ଓ 'ଶୃଙ୍ଗାର ରସ'କୁ ଉତ୍ତୀର୍ଣ୍ଣ ହୋଇଯାଏ- ଏଥିନେଇ ଥରେ ଆମର ବହୁ ଆଲୋଚନା

ହୋଇଥିଲା । ଭୀମଙ୍କର ଦୁଃଶାସନର ରକ୍ତପାନ ଓ ଦୁଃଶାସନର ରକ୍ତରେ ଦ୍ରୌପଦୀଙ୍କର କେଶ ସମାର୍ଜନ ଭଳି ବୀଭତ୍ସଦୃଶ୍ୟରେ 'ରସ' କିପରି ସମ୍ଭବ ହେଲା- ମୁଁ ପ୍ରଶ୍ନ କରନ୍ତେ ସେ ଟିକିଏ ଇତଃସ୍ତତଃ ହେଲେ । ମୁଁ ତାର ଉତ୍ତର ଦେଲି ଭାଇନା ! ଏହା ଏକ ବ୍ୟକ୍ତିଗତ ହିଂସାର କ୍ରିୟା ପ୍ରତିକ୍ରିୟା ନୁହେଁ । ବ୍ୟାସଦେବ ସେହି ବିଭତ୍ସ ଘଟଣାକୁ ଏକ ସ୍ଥାନକାଳ ପାତ୍ରତୀତ ଐଶ୍ୱରିକ ମହିମା ପ୍ରଦାନ କରିଛନ୍ତି । ବିଶ୍ୱପ୍ରାଣରେ ଏହିଭଳି ଏକ ନିଦାରୁଣ ହିଂସା ପ୍ରତିହିଂସାର ବୀଜ ନିହିତ ଅଛି । ଏହି ଆଦିମ ବୀଜ ବାରମ୍ବାର ଅଙ୍କୁରିତ ହୋଇ ତାଙ୍କର ଶକ୍ତିର ପ୍ରଭାବରେ ଭଗବାନ (ଅବତାର ପୁରୁଷ)ଙ୍କର ଧର୍ମସଂସ୍ଥାପନ ଓ ଅଧର୍ମବିନାଶ କାର୍ଯ୍ୟକୁ ତ୍ୱରାନ୍ୱିତ କରିଥାଏ । ଅପଶକ୍ତି- ପ୍ରମତ୍ତ ଅସୁରରାଜା ହିରଣ୍ୟକଶିପୁର ତାର ଶୁଦ୍ଧ ସରଳ ଈଶ୍ୱର-ପରାୟଣପୁତ୍ର ବାଳକ ପ୍ରହ୍ଲାଦକୁ ଯେଉଁ ପୈଶାଚିକ ନିଷ୍ଠୁର ନିର୍ଯ୍ୟାତନା ଦେଇଥିଲା- ତାର ପ୍ରତିକ୍ରିୟାରେ ସ୍ୱୟଂ ଭଗବାନଙ୍କର ହୃଦୟ ମଧ୍ୟ ଥରି ଉଠିଥିଲା । ନୃସିଂହ ରୂପ ଧରି ସେ ହିରଣ୍ୟକଶିପୁର ପେଟକୁ ବିଦାରଣ କଲେ । ଏହା ମଧ୍ୟ ବିଭତ୍ସରସ ଏହି କାରଣରୁ, ମୁଁ ଏ କଥାଟି ଖୁବ୍ ବିଶଦ ଭାବେ ବର୍ଣ୍ଣନା କରିଥିଲି । ସବୁ ଶୁଣି ସାରି ସେ ମୋତେ କୁଣ୍ଢାଇ ପକାଇଲେ । କହିଲେ- ନୀଳମଣି ! କେତେ ଚମତ୍କାର କହିଲ ! ଏବେ ତୁମେ ନିଜେ ରସ-ତତ୍ତ୍ୱ ଉପରେ ଏକ ବହି ଲେଖ ।

ଏଭଳି ସମଝଦାର ଧୈର୍ଯ୍ୟବନ୍ତ ଶ୍ରୋତା ଆମ ପଣ୍ଡିତମନ୍ୟ ଅଧ୍ୟାପକ ମଣ୍ଡଳୀରେ କେତେଜଣ ଭଲା ଅଛନ୍ତି ? କାହ୍ନୁ ଭାଇନା ନିଜେ ରସତତ୍ତ୍ୱ ଓ ରୀତିତତ୍ତ୍ୱ ଉପରେ ଗଭୀର ଗବେଷଣା କରିଛନ୍ତି । ସଂସ୍କୃତ ଓ ବଙ୍ଗଳା ସାହିତ୍ୟରେ ମଧ୍ୟ ତାଙ୍କର ସମାଧିକ ପ୍ରବେଶ ଥିଲା । ଇଂରାଜୀ ଭାଷା ମାଧ୍ୟମରେ ସେ ବିଶ୍ୱ ସାହିତ୍ୟ ସଙ୍ଗେ ପରିଚିତ ଥିଲେ । ତାଙ୍କର ଗଳା ଥିଲା ଗଭୀର ଓ ମଧୁର । ତାଙ୍କର ଶିଷ୍ୟ ଶିଷ୍ୟାମାନେ ତାଙ୍କର ଅଧ୍ୟାପନା ପ୍ରଣାଳୀକୁ ଖୁବ୍ ପସନ୍ଦ କରୁଥିଲେ ଓ ତାଙ୍କୁ ଖୁବ୍ ସମ୍ମାନ କରୁଥିଲେ । ବ୍ୟକ୍ତିଗତ ବ୍ୟବହାରିକ ଜୀବନରେ କାହ୍ନୁ ଭାଇନା ଥିଲେ ଖୁବ୍ ଭଦ୍ର ଓ ସହଜ ମଣିଷ । କାହା ପ୍ରତି ପରୋକ୍ଷ ବା ବ୍ୟଙ୍ଗବିଦ୍ରୂପ କରିବାର କୁତ୍ସାରଟନା କରିବାର ମୁଁ ତାଙ୍କୁ କେବେ ଶୁଣିନାହିଁ । ସେ ଅନ୍ୟକୁ ସିଧାସଳଖ ଭର୍ତ୍ସନା କରନ୍ତି କିନ୍ତୁ କାହାର କୁତ୍ସା କରନ୍ତି ନାହିଁ । ତାଙ୍କ ଭଳି ହୃଦୟବାନ ମଣିଷ ଖୁବ୍ କମ୍ ଦେଖିଛି ।

କାଳସ୍ରୋତ ତାଙ୍କୁ ଆଗକୁ ଆଗକୁ ଭସାଇ ନେଉଥିଲା ସେହି ଅବ୍ୟକ୍ତ ଭିତରକୁ । ସେ ପରିପକ୍ୱ ଆୟୁଷ ନେଇ ବଞ୍ଚିଥିଲେ । କିନ୍ତୁ ସେ କାଳର ପ୍ରଭାବକୁ ସ୍ୱୀକାର କରିନାହାନ୍ତି । ଶେଷ ପର୍ଯ୍ୟନ୍ତ ସେ କର୍ମରତ ଥାଇ ବାହ୍ୟ ଜଗତରୁ ବିଦାୟ ନେଇଛନ୍ତି । ତାଙ୍କର ଉଜ୍ଜ୍ୱଳ ସ୍ମୃତି ମୋ ଭିତରୁ ଲିଭିବ ନାହିଁ- ଓଡ଼ିଶାର ସାହିତ୍ୟ ସଂସ୍କୃତି ଇତିହାସରେ ସେ ଅମର ହୋଇ ରହିବେ । ତାଙ୍କ ଉଦ୍ଦେଶ୍ୟରେ ମୋର ପ୍ରଣତି ଜଣାଇ ମୁଁ ନିଜକୁ କୃତାର୍ଥ ମନେ କରୁଛି ।

■■

# 'ସଖେତି ମତ୍ୱା'

- *ଚନ୍ଦ୍ରଶେଖର ରଥ*

ଦୁଇଜଣ ସମାନଧର୍ମା ଯେଉଁ ସହରରେ ଏକାଠି ହେବା ଏକ ବିରଳ ବିସ୍ମୟ, ସେଇଠି ସର୍ବଭାରତୀୟ ସ୍ତରର ବିଦ୍ୱାନମାନଙ୍କୁ ଏକତ୍ର କରି ଶୈବ, ଶାକ୍ତ, ଜଗନ୍ନାଥ ତତ୍ତ୍ୱ ଭଳି ଗମ୍ଭୀର ବିଷୟରେ ସମ୍ମେଳନ ଆୟୋଜନ କରିବା, ପଠିତ ନିବନ୍ଧମାନଙ୍କୁ ପୁସ୍ତକାକାରରେ ପ୍ରକାଶିତ କରିବା ଯେ ଜଣେ ମାତ୍ର ନିଷ୍ଠାବାନ ପ୍ରଖରତେଜା ଅଦମ୍ୟ- ଉତ୍ସାହଶାଳୀ ବ୍ୟକ୍ତି ପକ୍ଷରେ ସମ୍ଭବ ଏହା ସ୍ୱଚକ୍ଷୁରେ ଦେଖିନଥିଲେ ଆମେ କେହି ବିଶ୍ୱାସ କରିନଥାନ୍ତୁ । ସମ୍ମେଳନରେ ଯୋଗ ଦେଉଥିବା ସ୍ଥାନୀୟ ତଥା ଦୂରାଗତ ଆଲୋଚକ ଓ ଶ୍ରୋତା କିଭଳି କେବଳ ସେହି ଜଣକ ପ୍ରତି ଅନୁରକ୍ତ ରହୁଥିଲେ, ଥରେ ଆସିଲେ ଆଉଥରେ ଆସିବାକୁ ପ୍ରତିଶ୍ରୁତି ଦେଇ ଯାଉଥିଲେ ତାହା ମଧ୍ୟ ବିସ୍ମୟକର ଥିଲା । ଆକୃତିରେ, କଥାରେ, କାର୍ଯ୍ୟରେ ସେ ସେମିତି କିଛି ଅସାମାନ୍ୟ ବ୍ୟକ୍ତି ଥିଲେ ବୋଲି କେହି କହିବେ ନାହିଁ । କିନ୍ତୁ ଗୁଣୀଜନଙ୍କ ପ୍ରତି ଅକୁଣ୍ଠ ଓ ଅଗାଧ ସ୍ନେହ ଶ୍ରଦ୍ଧା, ଭାଷା, ସାହିତ୍ୟ, ସଂସ୍କୃତି ପ୍ରତି କର୍ତ୍ତବ୍ୟନିଷ୍ଠା, ମହତ୍ ଉଦ୍ଦେଶ୍ୟରେ ଅହରହ ଉଦ୍ୟମ, ଶ୍ରମ ତତ୍ପରତା, ସମସ୍ତଙ୍କୁ ନେଇ ସଂଘବଦ୍ଧ ଭାବରେ ଦୃଢ଼ ସଂକଳ୍ପ କରିବା ଓ ଯେ କୌଣସି ଯୋଜନାକୁ କାର୍ଯ୍ୟକାରୀ ଓ ସଫଳ କରିବାକୁ ଏକାଗ୍ର ମନୋନିବେଶ କରିବାରେ ତାଙ୍କ ଭଳି ବ୍ୟକ୍ତି ବିରଳ । ଏଥିରେ ସନ୍ଦେହ ନାହିଁ । ସେ ହେଉଛନ୍ତି ମୋର ପରମ ମାନନୀୟ ଓ ଗଭୀର ଶ୍ରଦ୍ଧାଭାଜନ ପ୍ରଫେସର କାହ୍ନୁଚରଣ ମିଶ୍ର ମହୋଦୟ ।

ପାଣ୍ଟେଇ, ଖଦଡ, ମୋଟା ଧୋତି, ଖଦଡ଼ ପଞ୍ଜାବୀ ଓ ଧଳା ଚାଦର ଉପରେ ଟେକା ହୋଇଥିବା ଛତା ଦେଖିଲେ ମନେ ହେଉଥିଲା, ଏଇ ବୋଧହୁଏ ବଳିଦ୍ୱାରେ ବାମନ ରୂପେ ଉଭା ହୋଇଯିବେ । ତାଙ୍କ ବ୍ୟସ୍ତତା, ବ୍ୟଗ୍ରତା ଓ କାର୍ଯ୍ୟ ଦେଖିଲେ ମନେ ହେଉଥିଲା ଯେ ସେ ତ୍ରିବିକ୍ରମ ରୂପରେ ତ୍ରିପାଦ ମେଦିନୀ ଛଳରେ ତ୍ରିଭୁବନକୁ ଅଧିକାର କରି ନେଇପାରିବେ । ଆସୁଆସୁ, ଦେଖୁଦେଖୁ, ଅବାରିତ ଗଙ୍ଗାଧାର ଭଳି ହସ । ନିଷ୍କପଟ, ମନଖୋଲା ଟହଟହ ହସ । ଆଦରରେ ବିଶ୍ୱାସରେ ଯେଉଁ କାମଟିକୁ ଦେଉଥିଲେ, ତାକୁ ନାହିଁ କରିବାର ଉପାୟ ନଥିଲା । ଆଉଥରେ ରାସ୍ତା ମୁଣ୍ଡରେ ଛତା ଦେଖାଯିବା ବେଳକୁ କାମଟିକୁ ପ୍ରସ୍ତୁତ କରି ରଖିଦେବାକୁ ଇଚ୍ଛା ହେଉଥିଲା । ହସ ମଝିରେ ଅକୁଣ୍ଠ ପ୍ରଶଂସା ଅଜାଡ଼ି ଦେଇ ସେ ଚାଲି ଯାଉଥିଲେ । ସେତିକିରେ ପୁରସ୍କାର ମିଳିଯାଉଥିଲା ।

ପିଏଚ୍‌ଡି ପାଇଁ ପ୍ରସ୍ତୁତ 'ଜଗନ୍ନାଥ ତତ୍ତ୍ୱ' ସମ୍ବଳିତ ନିବନ୍ଧ ଇଂରାଜୀରେ ପ୍ରକାଶିତ

ହେଲା ପରେ ସେଥିରେ ଥିବା ବହୁ ତଥ୍ୟ ଓ ନିଷ୍ପନ୍ନ ବାକ୍ୟମାନଙ୍କୁ ଗବେଷକମାନେ ଉଦ୍ଧାର କଲେ । ଡକ୍ଟର କାହ୍ନୁଚରଣ ମିଶ୍ର ଜଣେ ମୌଳିକ ତଥ୍ୟ ପ୍ରୋତା ରୂପେ ଗୃହୀତ ହେଲେ । କିନ୍ତୁ କଥା ପଡ଼ିଲେ ପୁଣି ସେଇ ଟହଟହ ହସ ଭିତରେ ତାକୁ ଉଡ଼େଇ ଦେଇ ବିନୟରେ ଗଳବସ୍ତ୍ର ହୋଇ ଠାକୁର ଆଗରେ ଠିଆ ହୋଇ ନ୍ୟୁନ ଭାବ ପ୍ରକାଶ କରୁଥିଲେ । 'ଅଗାଧ ସମୁଦ୍ରରୁ ମୁଁ କଣ ଟିକିଏ ଗୋଟେଇ ଏକାଠି କରିଛି ସିନା ବାକି ସବୁ କଳିବାକୁ ମୋର ବଳ କାହିଁ ? ଗୁରୁ ନିର୍ଦ୍ଦେଶକ ଡକ୍ଟର ସୁନୀତି କୁମାର ଚାଟାର୍ଜିଙ୍କୁ ସ୍ମରଣ କରି ପ୍ରଣାମ କରନ୍ତି । ଠାକୁରଙ୍କୁ ପ୍ରଣାମ କରନ୍ତି । ସେତିକିରେ ପ୍ରସଙ୍ଗ ସରିଯାଏ । ନିଜକୁ ଯେତିକି ନ୍ୟୁନ ଦେଖନ୍ତି ଅପରକୁ ସେତିକି ବହୁଗୁଣିତ କରି ଦେଖିବାର ସାଧୁ ଦୃଷ୍ଟି ତାଙ୍କର କଥାରେ ପ୍ରମାଣିତ ହୋଇଯାଉଥାଏ । ''ଓଃ ଟି.ଏନ୍. ଧର୍ମାଧିକାରୀ, ବିଶ୍ୱନାଥ ବାନାର୍ଜି, ପ୍ରଫେସର ହେରମ୍ବ ଚାଟାର୍ଜି ଶାସ୍ତ୍ରୀ !- କ'ଣ ସେମାନଙ୍କର ଅଗାଧ ପାଣ୍ଡିତ୍ୟ ! ସେମାନେ ସବୁ ରାଜି ହୋଇଛନ୍ତି । ଶକ୍ତିତତ୍ତ୍ୱ ଉପରେ ନିବନ୍ଧ ପାଠ କରିବେ । ଆପଣ ଆସିବେ !''- ମୋର ପ୍ରାସଙ୍ଗିକତା କାହିଁ ? ହେଲେ ସ୍ନେହାଧିକାରରେ ସେ ବିଦ୍ୱାନ ମଣ୍ଡଳକୁ ମୋତେ ଟାଣି ନେଇ ଯାଉଥିଲେ । ତାଙ୍କ ବିଶ୍ୱାସର ସମ୍ମାନାର୍ଥେ, ମୋତେ ଯଥାସମ୍ଭବ ଭୂମିକା ନିର୍ବାହ କରିବାକୁ ପଡୁଥିଲା । ସେଥିରେ ସେ ଖୁସି ହୋଇ ଯାଉଥିଲେ । ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଓରିଶାନ କଲ୍ଚର କ୍ରମଶଃ ପ୍ରତିଷ୍ଠିତ ହେବାକୁ ଲାଗିଲା । ଓଡ଼ିଶାରେ ଯେତେ ନୁହେଁ ଓଡ଼ିଶା ବାହାରେ ସେତେ । ଏକଦା ଦେଖା ହୋଇଗଲେ ବିଶ୍ୱନାଥ ବାନାର୍ଜି, ରୁଗ୍ଣ ଅବସ୍ଥା । ଚିହ୍ନିଲା ପରେ ମୁହଁ ଉଜ୍ଜ୍ୱଳି ଉଠିଲା । ପଚାରିଲେ ''କାନୁ ଦା କେମନ୍ ଆଛେନ୍ ?'' ସେମାନେ ସମସ୍ତେ କାହା ଖାତିରରେ ଆସୁଥିଲେ ଏତେ ବାଟ ? କାହା ଅନୁରୋଧକୁ ଆଦେଶତୁଲ୍ୟ ଅବମାନନା କରିପାରୁନଥିଲେ ?

ଧୋତି ଚାଦର ବିମଣ୍ଡିତ ସେ ଅପୂର୍ବ ବ୍ୟକ୍ତିତ୍ୱଟି ଅନ୍ତର୍ହିତ ହୋଇଗଲା ପରେ କେତେ କ'ଣ ଖାଲି ପଡିଗଲା । କେତେ କ'ଣ ଅଚଳ ହୋଇଗଲା । ରାଜଧାନୀ ପବନରୁ ହସର ଲହଡି ଘୁଞ୍ଚିଗଲା । ଆମ ମୁହଁରୁ ହସ ଲିଭିଗଲା । ଯେତେ ଯାହା ଅନୁଷ୍ଠାନ ଥିଲେ କ'ଣ ହେବ ? ଖାଲି ପିଣ୍ଡଟା କଣ କରିବ ? ଆତ୍ମା ଅପସରି ଗଲା ପରେ ଅବୟବକୁ ସକ୍ରିୟ କରିବ କିଏ ? କିଏ ଆଉ ଖଣ୍ଡିଏ ପୋଷ୍ଟକାର୍ଡ ଲେଖିଦେଲେ ପ୍ରଫେସର ହେରମ୍ବ ଚାଟାର୍ଜି ଶାସ୍ତ୍ରୀ ଚାଲିଆସିବେ ଆମ ସହରକୁ ? ଏଠି ତ ପରସ୍ପରକୁ କାହ୍ନୁବାବୁଙ୍କ ପ୍ରଣତ ଗୋଷ୍ଠୀରେ ଆବିଷ୍କାର କରି ସୁଦ୍ଧା ଦୁଇଜଣ ଏକାଠି ହୋଇପାରୁ ନାହୁଁ ! ଆଉ କାହା କଥା କଣ କରିବା ?

ତାଙ୍କର ସେ ଖର୍ବକାୟ ଉପସ୍ଥିତି କେଡ଼େ ପ୍ରିୟ, କେଡେ ଆପଣାର । ଅଥଚ ତାଙ୍କର ଏ ଅତିକାୟ ଅନୁପସ୍ଥିତିକୁ ଆଖି ପାଉ ନାହିଁ । ଥଟ୍ଟା ପରିହାସ କରିବାର ଅଭ୍ୟାସ ହୋଇଯାଇଥିଲା । କିନ୍ତୁ ଏବେ ଭୟ ସମ୍ଭ୍ରମରେ ପ୍ରଣାମ କରି ନିରବ ଆଡ ହୋଇଯିବା କଥା । ନମଃ ପୁରସ୍ତାଦଥ ପୃଷ୍ଠତସ୍ତେ । ନମୋଽସ୍ତୁତେ ସର୍ବତ ଏବ ସର୍ବ ।

■■

# ହେ ବନ୍ଧୁ ବିଦାୟ

*- ଚିନ୍ତାମଣି ବେହେରା*

ଓଡ଼ିଆ ସାହିତ୍ୟର ଅନ୍ୟତମ ବରେଣ୍ୟ ଓ ଉଜ୍ଜ୍ୱଳ ପୁରୁଷ, କେବଳ ରୂପକାନ୍ତିର ଔଜ୍ଜ୍ୱଲ୍ୟ ବା ଗୁଣଗୌରବର ଗାରିମା ନୁହେଁ, ସ୍ନେହ-ସଂପ୍ରୀତି- ସୌହାର୍ଦ୍ଦ୍ୟ ଓ ସାଧନାରେ ସମୁଜ୍ଜ୍ୱଳ ପ୍ରଫେସର କାହ୍ନୁଚରଣ ମିଶ୍ର ଗତ ୫ ତାରିଖରେ ତାଙ୍କର ମର୍ତ୍ତ୍ୟବାସ ପରିତ୍ୟାଗ କରି ଆମମାନଙ୍କ ନିକଟରୁ ଚିରବିଦାୟ ଗ୍ରହଣ କରିଛନ୍ତି । ତାଙ୍କର ଅଗଣତି ଛାତ୍ରଛାତ୍ରୀ, ବନ୍ଧୁ, ଆତ୍ମୀୟ ଓ ସହୃଦ୍‌ବୃନ୍ଦ ଏଇ ବିଦାୟରେ ବ୍ୟଥିତ ଓ ମର୍ମାହତ ହେବା ସ୍ୱାଭାବିକ । ମାତ୍ର ବ୍ୟକ୍ତିଗତ ଜୀବନରେ ମୁଁ ଜଣେ ମୋର ପରମ ବନ୍ଧୁ ଓ ଆତ୍ମୀୟ ସଦୃଶ ଶୁଭାର୍ଥୀଙ୍କୁ ହରାଇ ଯେଉଁ ମର୍ମବେଦନା ଅନୁଭବ କରୁଛି, ତାହା ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ, କାରଣ ଚରମ ଦୁଃଖର ପ୍ରକାଶନରେ ଭାଷାର କ୍ଷମତା ଅତି ସୀମିତ । ମୋଠୁଁ ବୟସରେ ସେ ଥିଲେ ପ୍ରାୟ ଦଶବର୍ଷ ବଡ଼ । ମାତ୍ର ୧୯୫୨ ମସିହାରେ ବିଶ୍ୱଭାରତୀର ଶାନ୍ତିନିକେତନ ଛାଡ଼ି ପୁରୀର ସାମନ୍ତ ଚନ୍ଦ୍ରଶେଖର କଲେଜରେ ଯେତେବେଳେ ଯୋଗଦେଲେ, ସେଇ ଦିନଠୁ ଏଯାବତ ଆମ ଦୁହିଙ୍କ ମଧ୍ୟରେ ବନ୍ଧୁତ୍ୱ ଓ ଅନ୍ତରଙ୍ଗ ଆତ୍ମୀୟତା ପ୍ରତିଷ୍ଠିତ ହୋଇଆସିଛି । ମୋତେ ଜଣେ ସମବୟସ୍କ ବନ୍ଧୁ ଭାବରେ ଗ୍ରହଣ କରିବା ସଂଗେ ସଂଗେ ସମୟ ସମୟରେ ସାନଭାଇ ସ୍ଥାନରେ ମୋତେ ଉପଦେଶ ଓ ପରାମର୍ଶ ମଧ୍ୟ ଦେଇ ଆସିଛନ୍ତି । ମୋର ସୁଖଦୁଃଖରେ ଅଂଶଗ୍ରହଣ ପୂର୍ବକ ଦୁଃଖ ବା ବିପଦ ସମୟରେ ମୋତେ ସାହସ ଦେବା ସହିତ ସାହାଯ୍ୟ-ସହାନୁଭୂତି ପ୍ରଦାନ କରିଛନ୍ତି । କେବଳ ମୁଁ ନୁହେଁ, ଯେ କୌଣସି ବନ୍ଧୁ ବା ବ୍ୟକ୍ତି ଏପରିକି ଶତ୍ରୁ ମଧ୍ୟ ତାଙ୍କର ସାହାଯ୍ୟ ବା ଅନୁଗ୍ରହ ପ୍ରାର୍ଥୀ ହେଲେ ସେ ଅକୁଣ୍ଠ ଚିତ୍ତରେ ନିଜର ଶକ୍ତି ମୁତାବକ ତାଙ୍କୁ ସାହାଯ୍ୟ କରୁଥିବାର ମୁଁ ସର୍ବଦା ଲକ୍ଷ୍ୟ କରିଆସିଛି । ପରୋପକାରିତା ତାଙ୍କ ଚରିତ୍ରର ଏକ ମହାନ୍ ଗୁଣ । ତାଙ୍କୁ ନିକଟରେ ଯେତିକି ଦେଖିଛି, ତାଙ୍କ ସମ୍ପର୍କରେ ଯେଉଁ ପ୍ରତ୍ୟକ୍ଷ ଅଭିଜ୍ଞତା ଅର୍ଜନ କରିଛି, ସେ ସବୁ ମଧୁର ସ୍ମୃତିର ଅବତାରଣା ଏଠାରେ କରିବା ସମ୍ଭବ ନୁହେଁ । ମଣିଷପଣରେ ସେ ଥିଲେ ମହିମାନ୍ୱିତ ।

ପ୍ରଫେସର ମିଶ୍ର ଥିଲେ ଜଣେ ପ୍ରଥିତଯଶା ଆଲୋଚକ, ପ୍ରାବନ୍ଧିକ ଓ ଗବେଷକ । ତାଙ୍କର ସାହିତ୍ୟ- ସମାଲୋଚନାମୂଳକ ଗ୍ରନ୍ଥ 'ସାହିତ୍ୟ ସମୀକ୍ଷା'ର (୧ମ ସଂସ୍କରଣ) କାବ୍ୟ କବିତା ଓ ଓଡ଼ିଆ ନାଟ୍ୟ ସାହିତ୍ୟ ସମ୍ପର୍କିତ ଦୁଇଟି ଦୀର୍ଘ ଆଲୋଚନା ମୋର ପୁରୀ

ଅବସ୍ଥାନ ସମୟରେ (୧୯୫୨-୫୪) ଲିଖିତ ଏବଂ ସେଇ କାଳୁ ହିଁ ତାଙ୍କର ଆଲୋଚକ ଓ ସମୀକ୍ଷକ ଜୀବନର ଦୀର୍ଘ କ୍ଷେତ୍ରଯାତ୍ରାର ଅୟମାରମ୍ଭ । ଜୀବନରେ ବହୁ ଆଲୋଚନା ଓ ସମୀକ୍ଷାଧର୍ମୀ ଗ୍ରନ୍ଥର ସେ ରଚୟିତା । ସଂସ୍କୃତ ସାହିତ୍ୟ ଏବଂ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ତାଙ୍କର ଅଧ୍ୟୟନ ଓ ଅବଗାହନ ଥିଲା ଗଭୀର । ଭାରତୀୟ ତଥା ଉତ୍କଳୀୟ ଧର୍ମଧାରାର ଆଲୋଚନାରେ ସେ ସ୍ୱକୀୟ ନିପୁଣତା ଓ ବ୍ୟୁତ୍ପତ୍ତି ପ୍ରଦର୍ଶନ କରି ଯାଇଛନ୍ତି । ବିଶେଷତଃ ଜଗନ୍ନାଥ ଧର୍ମ, ସଂସ୍କୃତି ଓ ଚେତନାର ସେ ଜଣେ ଦକ୍ଷ ଭାଷ୍ୟକାର ଓ ଗବେଷକ । ତାଙ୍କର ଗବେଷଣା ପ୍ରସୂତ ଗ୍ରନ୍ଥ "The Cult of Jagannath" ଏ କ୍ଷେତ୍ରରେ କେବଳ ଏକ ବଳିଷ୍ଠ ମାଇଲଖୁଣ୍ଟ ନୁହେଁ, ଜଗନ୍ନାଥ ତଥ୍ୟ ଓ ତତ୍ତ୍ୱ ସମ୍ବଳିତ ପରବର୍ତ୍ତୀ ବହୁ ଆଲୋଚନା ଓ ଗବେଷଣାର ଏହା ହେଉଛି ଦିଗ୍‌ଦର୍ଶକ ଓ ଆଦ୍ୟ ଉତ୍ସ-ମୁଖ ।

ପ୍ରଫେସର ମିଶ୍ରଙ୍କ କୀର୍ତ୍ତି ଓ କୃତିତ୍ୱର ଏକ ମହାନ୍ ଓ ସ୍ମରଣୀୟ ଅବଦାନ ହେଉଛି 'ଓଡ଼ିଶା ସଂସ୍କୃତି ପରିଷଦ'ର ପ୍ରତିଷ୍ଠା । ଏହାର ପ୍ରତିଷ୍ଠାତା ଓ ନିର୍ଦ୍ଦେଶକ ଭାବରେ ପ୍ରତିବର୍ଷ ସେ ସେମିନାର ବା ଆଲୋଚନାଚକ୍ରର ଆୟୋଜନ କରିଆସିଛନ୍ତି, ଯେଉଁଥିରେ ଯୋଗଦାନ କରୁଥିଲେ ଭାରତର ବିଭିନ୍ନ ପ୍ରାନ୍ତରୁ ଆମନ୍ତ୍ରିତ ବହୁ ବିଶିଷ୍ଟ ସ୍ୱନାମଧନ୍ୟ ଶିକ୍ଷାବିତ୍ ଓ ଗବେଷକ । ଏଯାବତ୍ ଅଠରଟି ସେମିନାର ଅନୁଷ୍ଠିତ ହୋଇସାରିଛି ଏବଂ ସେଗୁଡ଼ିକରେ ପଠିତ ଓ ଆଲୋଚିତ ପ୍ରବନ୍ଧାବଳୀ ଗ୍ରନ୍ଥାକାରରେ ମଧ୍ୟ ପ୍ରକାଶିତ । ଏପର୍ଯ୍ୟନ୍ତ ପ୍ରକାଶିତ ଗ୍ରନ୍ଥଗୁଡ଼ିକର ସଂଖ୍ୟା ହେଉଛି ଷୋହଳ ଏବଂ ଅନ୍ୟ ଦୁଇଟି ବର୍ତ୍ତମାନ ମୁଦ୍ରଣାଧୀନ । ପ୍ରକାଶିତ ଗ୍ରନ୍ଥଗୁଡ଼ିକର ସାଂସ୍କୃତିକ ଓ ସାରସ୍ୱତ ମୂଲ୍ୟ ଯେ କେହି ଗୁଣଜ୍ଞ ପାଠକ ସହଜରେ ଅବଧାରଣା କରିପାରିବ । ଏହି ପରିଷଦ ଆନୁକୂଲ୍ୟରେ ସାମନ୍ତ ଚନ୍ଦ୍ରଶେଖର 'ସିଦ୍ଧାନ୍ତ ଦର୍ପଣ' ଗ୍ରନ୍ଥ ପ୍ରକାଶିତ ଯାହାକି ବିଶ୍ୱର ଜ୍ୟୋତିର୍ବିଜ୍ଞାନକୁ ଏକ ଅମୂଲ୍ୟ ଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୮୯୯ ଖ୍ରୀ:ଅ:ରେ ଏହା ପ୍ରଥମେ ପ୍ରକାଶିତ୍ ହୋଇଥିଲା, ମାତ୍ର ବର୍ତ୍ତମାନ ଏହା ଥିଲା ଦୁର୍ଲଭ । ଶହେ ବର୍ଷ ପରେ ଏହି ପରିଷଦ ଆନୁକୁଲ୍ୟରେ ପୁଣି ଏହାର ଆତ୍ମପ୍ରକାଶ ସମ୍ଭବ ହୋଇପାରିଛି । ଓଡ଼ିଆ ଜାତିର ଗର୍ବ ଓ ଗୌରବ ଶ୍ରୀଧର ସ୍ୱାମୀ, ବଳଦେବ ବିଦ୍ୟାଭୂଷଣ ଓ ସାମନ୍ତ ଚନ୍ଦ୍ରଶେଖର, ଏଇ ତିନି ମହାନ୍ ସାଧକଙ୍କ ଜୀବନୀ, ସାଧନା ଓ ସିଦ୍ଧି ସମ୍ପର୍କରେ ଏକ ସେମିନାର ଏହି ପ୍ରତିଷ୍ଠାନ ଆନୁକୂଲ୍ୟରେ ସଂପାଦିତ ହୋଇସାରିଛି । ଅନ୍ୟାନ୍ୟ ପ୍ରକାଶିତ ଗ୍ରନ୍ଥାବଳୀ ମଧ୍ୟରେ ''ଓଡ଼ିଶାର କବି ଜୟଦେବ'' ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । କାରଣ, ଏଥିରେ ବହୁ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ତ ସ୍ଥାନ ପାଇଛି, ତାଛଡ଼ା ଜୟଦେବଙ୍କ ଜନ୍ମସ୍ଥାନ (କେନ୍ଦୁଲୀ ବା କେନ୍ଦୁବିଲ୍ୱ) ଯେ ଓଡ଼ିଶା ଥିଲା ସେ ସମ୍ପର୍କରେ ବଳିଷ୍ଠ ଓ ଅଗ୍ରନ୍ତ ପ୍ରମାଣ ନିଜେ ଡକ୍ଟର ମିଶ୍ର ବହୁ ଶ୍ରମ ସ୍ୱୀକାର ପୂର୍ବକ ବିଭିନ୍ନ ସ୍ଥାନରୁ ଦଳିଲ,

ପାଉତି ଓ ଖତିଆନ ଆଦି ସଂଗ୍ରହ କରି ସେଗୁଡ଼ିକ ସାହାଯ୍ୟରେ ପ୍ରଦର୍ଶନ କରିଛନ୍ତି । ତାଙ୍କର ଏ କୃତିତ୍ୱ କୌଣସି ଗବେଷକ ଭୁଲିଯିବାର ନୁହେଁ । ମାତ୍ର କେତେକ ଆଲୋଚକ ଓ ଗବେଷକ ପରବର୍ତ୍ତୀ କାଳରେ ତାଙ୍କୁ ସ୍ୱୀକୃତି ନଦେଇ ତାହାକୁ ନିଜର କୃତିତ୍ୱ ଭାବରେ ପ୍ରଦର୍ଶନ ଓ ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି । ଏଥିପାଇଁ ସେ ଗଭୀର ଆଘାତପ୍ରାପ୍ତ ଓ ମର୍ମାହତ ହେଉଥିବାର ମୁଁ ଜାଣିଛି । ଓଡ଼ିଆ ଆଲୋଚକ ଓ ଗବେଷକମାନଙ୍କର ଏ ପ୍ରକାର କୃତଘ୍ନତା, ଅନ୍ୟର କୃତି ଓ କୃତିତ୍ୱକୁ ଆତ୍ମସାତ୍ କରି ନିଜସ୍ୱରେ ପରିଣତ କରିବାର ଅପଚେଷ୍ଟା, ସେମାନଙ୍କର ଚାରିତ୍ରିକ ଦୁର୍ବଳତା ଓ ହୀନମନ୍ୟତାର ଯେ ପରିଚାୟକ, ଏ କଥା କହି ମୁଁ ତାଙ୍କୁ ଆଶ୍ୱସ୍ତ କରିଛି ଏବଂ କହିଛି ଯେ ମହାକାଳ ହିଁ ଦିନେ ନିଶ୍ଚୟ ମିଥ୍ୟାର ମୁଖା ଅନାବରିତ କରି ସତ୍ୟଧର୍ମର ପ୍ରତିଷ୍ଠା କରିବ । ଓଡ଼ିଆ ସାହିତ୍ୟର ଆଲୋଚନାରେ ମଧ୍ୟ ଏ ପ୍ରକାର ଦୁର୍ଲକ୍ଷଣ ଆଜି ପରିଦୃଶ୍ୟ । ସେ ଯାହାହେଉ, ଏହି ପ୍ରତିଷ୍ଠାନଟି ୧୯୮୨ ମସିହାରେ ରେଜିଷ୍ଟ୍ରିକୃତ ହୋଇଛି ଏବଂ ଏହାର ପରିଚାଳନା ପାଇଁ ଏକ ଟ୍ରଷ୍ଟି ମଧ୍ୟ ଗଠନ କରାଯାଇଛି । ମାତ୍ର ପ୍ରତିଷ୍ଠାନର ସ୍ଥାୟୀ ଗୃହଟିଏ ନଥିବାରୁ ଖଣ୍ଡିଏ ଜମି ଜାଗା ପାଇଁ ଏ ବୃଦ୍ଧ ବୟସରେ ଶ୍ରୀ ମିଶ୍ର ବହୁ ଆବେଦନ- ନିବେଦନ କରି ସରକାରଙ୍କ ବହୁ ମନ୍ତ୍ରୀ ଓ ଉଚ୍ଚ ପଦାଧିକାରୀଙ୍କ ଦ୍ୱାରସ୍ଥ ହୋଇଛନ୍ତି ଓ ବ୍ୟର୍ଥ ମନୋରଥ ହୋଇ ଶେଷରେ ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି । ବଙ୍ଗଳାର 'ବସୁମତୀ ସାହିତ୍ୟ ମନ୍ଦିର' ବା 'ଏସିୟାଟିକ୍ ସୋସାଇଟି' ତୁଳନାରେ ଏ ପ୍ରତିଷ୍ଠାନର କୃତିତ୍ୱ ଓ ସକ୍ରିୟତା କିଛି କମ୍ ନୁହେଁ । ସରକାରଙ୍କର ଶୁଭଦୃଷ୍ଟି ଯଦି ପଡ଼ନ୍ତା, ଏହା ଦିନେ ସର୍ବଭାରତୀୟ ସ୍ତରରେ ନିଜର ଉନ୍ନତ ମସ୍ତକ ଉତ୍ତୋଳନ କରି ଓଡ଼ିଶାର ଗର୍ବ ଓ ଗୌରବର ବାର୍ତ୍ତାବହ ହୋଇପାରନ୍ତା ଏବଂ ତତ୍‌ସଂଗେ ଏହାର ପ୍ରତିଷ୍ଠାତା ଡକ୍ଟର ମିଶ୍ରଙ୍କର ସ୍ୱପ୍ନ ମଧ୍ୟ ସାକାର ଓ ସାର୍ଥକ ହୋଇପାରନ୍ତା । ଜୀବଦ୍ଦଶାରେ ସେ କିଛି ସମ୍ମାନ ଓ ସମ୍ବର୍ଦ୍ଧନା ପାଇଛନ୍ତି ସତ, କିନ୍ତୁ ଯୋଗ୍ୟତା ତୁଳନାରେ ସେ ଯେଉଁ ସମ୍ମାନ ପାଇବାର କଥା ସେଥିରୁ ସେ ବଂଚିତ ହୋଇଛନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀର 'ଅତିବଡ଼ୀ ଜଗନ୍ନାଥ ଦାସ ସମ୍ମାନ' ବା ଭାରତ ସରକାରଙ୍କର 'ପଦ୍ମଶ୍ରୀ' ସମ୍ମାନଟିଏ ତାଙ୍କୁ ନ ମିଳିବା ଆମମାନଙ୍କ ପାଇଁ ନିଶ୍ଚୟ ଲଜ୍ଜା ଓ କ୍ଷୋଭର ବିଷୟ । ତଥାପି ସେଇ ସ୍ୱର୍ଗବାସରେ ବଂଧୁ ମୋର ନିଶ୍ଚିନ୍ତ ରହନ୍ତୁ, ତାଙ୍କର କର୍ମ ଓ ସାଧନା କେବେ ବ୍ୟର୍ଥତାରେ ପର୍ଯ୍ୟବସିତ ହେବ ନାହିଁ । କର୍ମବାଦ ଓ ଜନ୍ମାନ୍ତରବାଦ ଆମ ଭାରତୀୟ ଦର୍ଶନ, ଚିନ୍ତାଧାରା ଓ ସାଂସ୍କୃତିକ ଚେତନାର ଦୁଇଟି ବିଶିଷ୍ଟ ତତ୍ତ୍ୱ ଏବଂ ଏହାର ପ୍ରବକ୍ତା ଓ ଉଦ୍‌ଭାବକ ହେଉଛନ୍ତି ମହର୍ଷି ଯାଜ୍ଞବଲ୍କ୍ୟ । ଏଇ କର୍ମବାଦ ଅନୁଯାୟୀ ମନୁଷ୍ୟ ଆତ୍ମାର ଅବିନଶ୍ୱରତା ତାର କର୍ମ ଉପରେ ହିଁ ନିର୍ଭରଶୀଳ । ତେଣୁ ଆପଣଙ୍କ କର୍ମ, କୃତିତ୍ୱ ଓ ସାଧନା ଆପଣଙ୍କ ଗୌରବର୍ଣ୍ଣ ଲଲାଟରେ ବିଜୟର ଚନ୍ଦନ ତିଳକ ରୂପେ ନିଶ୍ଚୟ

ଦୀପ୍ୟମାନ ହୋଇ ରହିବ ଏବଂ ଜାତିର ବିଦଗ୍ଧ ଚେତନାରେ ଆପଣ ଚିରଂଜୀବୀ ହୋଇ ରହିବେ । ଲୋତକାପ୍ଲୁତ ଚକ୍ଷୁରେ ଆପଣଙ୍କ ଅଶରୀରୀ ଆତ୍ମା ପ୍ରତି ମୋର ବ୍ୟଥିତ ପ୍ରାଣର ଶ୍ରଦ୍ଧାର୍ଘ୍ୟ ଅର୍ପଣ କରି ଆଜି ବିଦାୟ ଦେଉଛି ସତ, କିନ୍ତୁ ଆଶା ରଖୁଛି ସେଇ ସ୍ୱର୍ଗଧାମରେ ଆମ ଦୁହିଁଙ୍କର ବନ୍ଧୁମିଳନ ପୁଣି ନିଶ୍ଚୟ ଘଟିବ । ସେ ପର୍ଯ୍ୟନ୍ତ ଆମ ମର୍ତ୍ତ୍ୟଲୋକର ଶ୍ରୀ ଜଗନ୍ନାଥ ବା ଅନ୍ୟାନ୍ୟ ଦେବଦେବୀଙ୍କୁ ଛାଡି ସୁରଲୋକ ଓ ତାର ସୁରବୃନ୍ଦଙ୍କ ଉତ୍ପତ୍ତି ଓ କ୍ରମ ବିକାଶ ସମ୍ପର୍କରେ ଗବେଷଣାରତ ରହିବାକୁ ବନ୍ଧୁ ଭାବରେ ମୋର ଏକାନ୍ତ ଅନୁରୋଧ ।

(''ପ୍ରଫେସର କାହ୍ନୁଚରଣ ମିଶ୍ରଙ୍କର ବିୟୋଗରେ ଶ୍ରଦ୍ଧାଞ୍ଜଳି'' ସମାଜ ପୃଷ୍ଠାରୁ ଗୃହୀତ ।)

■■

# ସାରସ୍ୱତ କାହ୍ନୁଚରଣ

*- ସାତକଡି ହୋତା*

ଆମ ସମୟକୁ ସହଜିଆ ମାର୍ଗୀଙ୍କ ସମୟ ବୋଲି ଅନେକ ଅଭିହିତ କରନ୍ତି । ଅର୍ଥାତ ସହଜରେ ସବୁ କରିବା ଓ ସାଧନା ନକରି ସୁନାମ ଅର୍ଜନ କରିବା ପାଇଁ ଆମ ସମୟରେ ଲୋକଙ୍କର ଉଚ୍ଚାଶା ଅନେକ ବେଶୀ । କିନ୍ତୁ କାହ୍ନୁଚରଣ ଆମ ସମୟର ଜଣେ ବିରଳ ସାଧକ, ଯିଏ ସହଜରେ କିଛି  କରି ସଫଳତା ଅର୍ଜନ କରିବା ସକାଶେ କେବେ ହେଲେ ଜୀବନର ଧର୍ମ ବୋଲି ବିଚାର କରୁନଥିଲେ । ୧୯୨୨ ମସିହା ଜାନୁୟାରୀ ପହିଲାରେ ଜନ୍ମଗ୍ରହଣ କରି ୨୦୦୧ ମସିହା ପର୍ଯ୍ୟନ୍ତ ଏଇ ପୁରୁଣା ପୃଥିବୀକୁ ଆହୁରି ସରସ, ସୁନ୍ଦର ମନୋରମ କରିବା ପାଇଁ କେବଳ କାମ କରି ଯାଇଛନ୍ତି । ଅନେକ ନିଜ ପାଇଁ ବା ନିଜ ପୁଅଝିଅଙ୍କ ପାଇଁ କାମ କରନ୍ତି । କାହ୍ନୁଚରଣ ମିଶ୍ର ସେପରି ଧାତୁର ମଣିଷ ନଥିଲେ । ନିଜକୁ ଗଢ଼ିବା ପାଇଁ ସେ ସମୟ ସହିତ ଲଢୁଥିବାବେଳେ ଓଡ଼ିଆ ସାହିତ୍ୟକୁ କିଛି ଦେଇଯିବା ପାଇଁ ସାଧନା କରୁଥିଲେ । ସେ କହୁଥିଲେ ଯେ ଜୀବନ ତ ସରି ଗଲାଣି କେବଳ ନେଇ ନେଇ କିନ୍ତୁ; ନେବାରେ ହୁଏତ ଆତ୍ମପ୍ରସାଦ ମିଳିପାରେ, ପ୍ରସିଦ୍ଧି ମିଳେ ନାହିଁ । ଖ୍ୟାତି ଅର୍ଜନ କରିହୁଏନି । ଖ୍ୟାତି ଅର୍ଜନ କରିବା ସକାଶେ ଦବାକୁ ହୁଏ- କୁଣ୍ଠା ନକରି । ଖ୍ୟାତି ହିଁ ଜିଆଇ ରଖେ ମଣିଷକୁ, ପରମାୟୁ ନୁହେଁ । ସେଥିପାଇଁ କୁହାଯାଇଛି: 'ଯସ୍ୟକୀର୍ତ୍ତି ସଜୀବତି' । କୀର୍ତ୍ତିମାନ ହିଁ କେବଳ ବଞ୍ଚିରହେ । କାହ୍ନୁଚରଣ ସେହି ପ୍ରାଚୀନ କିନ୍ତୁ ସଦା ନୂତନ ଆଦର୍ଶ ଅନୁଗ୍ରହଣ କରି ସମାଜଠାରୁ ଯେତେ ନେଇଥିଲେ ତାହାର ବହୁଗୁଣ ସମାଜକୁ ଦେଇ ଯାଇଛନ୍ତି । ସେ ଆଉ ଆମ ଗହଣରେ ନାହାନ୍ତି ସତ, କିନ୍ତୁ ସେ ଛାଡ଼ି ଯାଇଥିବା ସାଧନା ପ୍ରସୂତ ଅମୂଲ୍ୟ ରଚନା ରହିଛି । କାଳ ତାଙ୍କୁ ନେଇଗଲା,  କାରଣ ମଣିଷ ମରଣଶୀଳ; କିନ୍ତୁ କାଳର ଏତେ ଦମ୍ଭ ଓ ସାହସ କାହିଁ ସାଧକର ସାହିତ୍ୟ କୃତୀକୁ ହରଣ କରିବା ପାଇଁ ? ତାଙ୍କ ଦେହାନ୍ତ ପରେ ମଧ୍ୟ କାହ୍ନୁବାବୁ ଓଡ଼ିଆ ସାହିତ୍ୟକୁ ଯେଉଁ ସଂପଦ ଦାନ କରି ଯାଇଛନ୍ତି ତାହା ମଣିମୁକ୍ତା ପରି ଝଟକୁଥିବ ଚିରକାଳ । ଲେଖକର ମୃତ୍ୟୁ ହୁଏ ସିନା, କିନ୍ତୁ ସାହିତ୍ୟର ମୃତ୍ୟୁ ହୁଏ ନାହିଁ । 'କବି ବିଦଗ୍ଧ ଅଭିମନ୍ୟୁ' ଇଂରାଜୀରେ ରଚନା କରିଥିଲେ ସେ ଏବଂ ତାହା କେନ୍ଦ୍ର ସାହିତ୍ୟ ଏକାଡେମୀ ପ୍ରକାଶ କରିଥିଲା । ସେହିପରି 'ସଚ୍ଚି ରାଉତରାୟ - ଦି ପୋଏଟ୍' ନାମକ ଗ୍ରନ୍ଥ ସେ ରଚନା କରିଥିଲେ ଯାହା ତାଙ୍କୁ ଅଶେଷ ଖ୍ୟାତି ଆଣି ଦେଇଥିଲା । ସେହିପରି ତାଙ୍କର

ସାଧନାର ଫଳ ଆଉ ଏକ ଇଂରାଜୀ ପୁସ୍ତକ- 'ଏନ୍ ଆପ୍ରୋଚଟୁ ଓରିଆନ୍ କଲ୍ଟ' । ଓଡ଼ିଶା ଓ ଓଡ଼ିଆ ସାହିତ୍ୟ, ସଂସ୍କୃତି, ଧର୍ମ ଓ ଦର୍ଶନକୁ ସେ ବିଶ୍ୱଦରବାରରେ ପରିଚିତ କରିବା ସକାଶେ ଯେଉଁ ଅମୂଲ୍ୟ ଦାନ ଦେଇ ଯାଇଛନ୍ତି ତାହାର ତୁଳନା ନାହିଁ ।

ଓଡ଼ିଶାର ଇଷ୍ଟ ପୁରୁଷ ହେଉଛନ୍ତି ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥ । ଜଗନ୍ନାଥ କହିଲେ କେବଳ ପରମେଶ୍ୱରଙ୍କୁ ବୁଝାଏ ନାହିଁ, ବୁଝାଏ ଗୋଟିଏ ଅବିନଶ୍ୱର ଶାଶ୍ୱତ ଚେତନାକୁ ଯାହା ଅତୀତରେ ଥିଲା, ଏବେ ଅଛି ଏବଂ ଅନନ୍ତକାଳ ପର୍ଯ୍ୟନ୍ତ ରହିଥିବ । କାହ୍ନୁବାବୁଙ୍କ ରଚିତ 'ଦି କଲ୍ଟ ଅଫ୍ ଜଗନ୍ନାଥ' ପାଠ ନକଲେ ଜଗନ୍ନାଥ ଚେତନା ଓ ସେଇ ସର୍ବବ୍ୟାପକ, ସର୍ବଶକ୍ତିମାନ ପରମପୁରୁଷଙ୍କ ସମ୍ବନ୍ଧରେ କିଞ୍ଚିତ୍ ଧାରଣା କରାଯାଇପାରିବ ନାହିଁ । ଏହା ବ୍ୟତୀତ ସେ ସଉରା ଶବ୍ଦକୋଷ ଓ ବ୍ୟାକରଣ ଇଂରାଜୀ, ଓଡ଼ିଆ, ସଉରା ଓ ହିନ୍ଦୀ ଭାଷାରେ ରଚନା କରିଯାଇଛନ୍ତି । ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଉପନ୍ୟାସର ବିବ୍ଲିଓଗ୍ରାଫି ରଚନା କରି ସେ ଉତ୍ତର ପୁରୁଷମାନଙ୍କ ଅନୁଶୀଳନ ଓ ସାଧନା ପାଠକୁ ଆହୁରି ପ୍ରସାରିତ କରିଛନ୍ତି । ଉତ୍ର ଦେଶର ରାଜବଂଶାବଳୀ ଇଂରାଜୀ, ଓଡ଼ିଆ ଓ ସଂସ୍କୃତିରେ; ଓଡ଼ିଶାର କବି ଜୟଦେବ ଓଡ଼ିଆରେ; ପୂର୍ବ ଭାରତର ରାମାୟଣ, ଓଡ଼ିଆରେ; ଭାଗବତ ଅନୁଶୀଳନ, ମହାଭାରତ ପରିଚୟ, ପୁରୁଷୋତ୍ତମ କ୍ଷେତ୍ର ତତ୍ତ୍ୱ, ପ୍ରଭୃତି ଅନେକ ଗ୍ରନ୍ଥ ରଚନା କରି ସେ କେବଳ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ନାହାନ୍ତି, ସାହିତ୍ୟ ସାଧନା ପାଇଁ ମାର୍ଗ ପ୍ରସ୍ତୁତ କରି ଯାଇଛନ୍ତି ।

କାହ୍ନୁବାବୁ ଥିଲେ ଜଣେ ଭଲ ସଂଗଠକ । ସେ ଓଡ଼ିଆ ସଂସ୍କୃତି ପ୍ରତିଷ୍ଠାନର ନିର୍ଦ୍ଦେଶକ ଭାବେ ଦୁଇଟି ଆଞ୍ଚଳିକ ଓ ପନ୍ଦରଟି ସଂପାନ (ସେମିନାର) ପରିଚାଳନା କରିଥିଲେ । ସେଥିମଧ୍ୟରୁ 'ଜୈନ ଧର୍ମ', 'ମହିମାଧର୍ମ', 'ଜୟଦେବ' ଓ 'ପଠାଣୀସାମନ୍ତ', 'ଭାଗବତ', 'ଓଡ଼ିଶାର ଶୈବଧର୍ମ', 'ଓଡ଼ିଶାର ଶକ୍ତିବାଦ' ପ୍ରଭୃତି ଆଲୋଚନାଚକ୍ରର ଲିପିବଦ୍ଧ ବିବରଣୀ ପ୍ରକାଶ କରି ଏସବୁ ବିଷୟରେ ଆହୁରି ଗବେଷଣା କରିବା ସକାଶେ ମାର୍ଗ ଦର୍ଶନ କରିଯାଇଛନ୍ତି । କାହ୍ନୁବାବୁ ବିଶ୍ୱାସ କରୁଥିଲେ ଯେ ମଣିଷ କେବଳ ନିଜ ପାଇଁ ବଂଚେନାହିଁ; ସେ ବଂଚେ ସମାଜ ପାଇଁ; ସମୂହଙ୍କ ପାଇଁ । ମୃତ୍ୟୁ ପର୍ଯ୍ୟନ୍ତ ଏଇ ଚେତନା ତାଙ୍କୁ କର୍ମପ୍ରବଣ ଓ କର୍ମମୁଖର କରି ରଖିଥିଲା ଏବଂ ସେ ଘର ଭିତରେ ବସି ନରହି ଘର ବାହାରେ ଥିବା ଜ୍ଞାନର ଅନୁସନ୍ଧାନ କରୁଥିଲେ ।

ସେ ଷୋହଳଟି ପୁସ୍ତକର ସଂପାଦନା କରିଥିଲେ ଏବଂ ଇଂରାଜୀ ଓ ସଂସ୍କୃତ ଭାଷାରୁ ପାଞ୍ଚଟି ପୁସ୍ତକର ଅନୁବାଦ ମଧ୍ୟ କରିଥିଲେ । ଓଡିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ଟେକ୍ସଟବୁକ ବ୍ୟୁରୋ, ବୋର୍ଡ ଅଫ୍ ସେକେଣ୍ଡାରୀ ଏଡୁକେଶନ, ମ୍ୟୁଜିୟମ କମିଟି, ୟୁଜିସି ପ୍ୟାନେଲ ନୂଆଦିଲ୍ଲୀ, ଓଡ଼ିଆ ଭାଷା କମିଟି, ଓଡ଼ିଆ ସାହିତ୍ୟ ସମାଜ ପ୍ରଭୃତି ବହୁ ଅନୁଷ୍ଠାନ

ସହିତ ସେ ସମ୍ପୃକ୍ତ ଥିଲେ ଏବଂ ସେ ସବୁର ଜଣେ ସକ୍ରିଳ ସଭ୍ୟ ଭାବେ ଦିଗଦର୍ଶନ କରାଇବାରେ ସାହାଯ୍ୟ କରିଥିଲେ । ଏହା ବାହାରେ ୧୫ଟି ଗବେଷଣାତ୍ମକ ପ୍ରବନ୍ଧ ଇଂରାଜୀ ଓ ଓଡ଼ିଆ ଭାଷାରେ ପ୍ରକାଶ କରି ସାହିତ୍ୟ, ଧର୍ମ ଓ ଦର୍ଶନ, ସଂସ୍କୃତିର ବିଭିନ୍ନ ଦିଗରେ ନିଜର ସାଧନା ପ୍ରସୂତ ଜ୍ଞାନ ବିତରଣ କରି ଯାଇଛନ୍ତି । ସେ ଥିଲେ ଜଗନ୍ନାଥଙ୍କର ଜଣେ ଭକ୍ତ । ଓଡ଼ିଶା ତାଙ୍କର ପ୍ରିୟ ଜନ୍ମଭୂମି ଓ କର୍ମଭୂମି । ଓଡ଼ିଆ ଭାଷାର ଓ ଓଡ଼ିଆ ସାହିତ୍ୟରେ ଉନ୍ନତି ପାଇଁ ତାଙ୍କ ମାର୍ଗଦର୍ଶନରେ ଅନେକ ଛାତ୍ର ଉଚ୍ଚତର ଗବେଷଣା କରି ପିଏଚ୍‌ଡି ଓ ଡ଼ି.ଲିଟ୍ ଉପାଧି ପାଇଥିଲେ । ଜାତୀୟ ସେମିନାର ସଂଗଠିତ କରି ସେ ଯେପରି ନିଷ୍ଠା ଓ ସଂଗଠନ ଶକ୍ତିର ପରିଚୟ ରଖିଯାଇଛନ୍ତି ତାହା ବିରଳ ।

ବହୁ ସମ୍ମାନ ଓ ସମ୍ବର୍ଦ୍ଧନାର ଅଧିକାରୀ କାହ୍ନୁଚରଣ ଥିଲେ ନମ୍ର, ବିନୟୀ, ଭଦ୍ର ଓ ଜ୍ଞାନୀ । କଥା କହୁଥିବା ଓ କାମ କରୁଥିବାବେଳେ ସେ ନିଜ ପରିବାର ବା ସମ୍ପତ୍ତି ବିଷୟ ଭୁଲିଯାଇଥାନ୍ତି । ତାଙ୍କର କେବଳ ଲକ୍ଷ୍ୟ ଥାଏ ଓଡ଼ିଆ ସାହିତ୍ୟ, ସଂସ୍କୃତି, ଧର୍ମ ଓ ଦର୍ଶନ । ସେ ଇଷ୍ଟଦେବ ଜଗନ୍ନାଥଙ୍କୁ ସ୍ମରଣ କରି ନିତ୍ୟକର୍ମ ଆରମ୍ଭ କରନ୍ତି । ସେ ଥିଲେ ଧାର୍ମିକ କିନ୍ତୁ ଧର୍ମାନ୍ଧ ନଥିଲେ । ଧର୍ମୀୟ ଓ ସାଂସ୍କୃତିକ ବିବିଧତାରେ ବିଶ୍ୱାସୀ କାହ୍ନୁଚରଣ ଅନ୍ୟଧର୍ମାବଲମ୍ବୀ ବା ମତାବଲମ୍ବୀମାନଙ୍କୁ ଆଦର କରୁଥିଲେ । ତାଙ୍କର ନିଷ୍କପଟ ଆଲୋଚନା, ପ୍ରାଣଖୋଲା ସମ୍ବେଦନଶୀଳତା ଏବଂ ଜାଣିବାର ଇଚ୍ଛା ତାଙ୍କୁ କରିଥିଲା ନମସ୍ୟ ଓ ସମ୍ମାନକର । ଜୀବନରେ ବହୁ ସମ୍ମାନ ପାଇଛନ୍ତି ସେ । କିନ୍ତୁ ତାହା ତାଙ୍କୁ ଗର୍ବୀ କରି ନାହିଁ, ସେ ଥିଲେ ଅହଂର ଊର୍ଦ୍ଧ୍ୱରେ । କଲିକତା ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲେ । ସେ ଓଡ଼ିଆ ସାହିତ୍ୟରେ ସ୍ୱର୍ଣ୍ଣ ପଦକ ପାଇଥିଲେ । ବହୁ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ହୋଇଥିଲେ ପାଣ୍ଡିତ୍ୟ ପାଇଁ । ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ତାଙ୍କର ଅବଦାନ ସକାଶେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ ସେ ୧୯୮୬ରେ । କିନ୍ତୁ ପୁରସ୍କାର ବା ସମ୍ବର୍ଦ୍ଧନା ପାଇବା ଆଶା ରଖି ସେ ଗବେଷଣା କରୁନଥିଲେ । ଓଡ଼ିଆ ସାହିତ୍ୟ ଧର୍ମ ଓ ଦର୍ଶନର କେତେକ ଅନାବିଷ୍କୃତ ଦିଗ ସେ ଉଦ୍ଭାସିତ କରିଥିଲେ ନିଜର ନିବନ୍ଧ ମାନଙ୍କରେ । କାହ୍ନୁଚରଣ ଚିରକାଳ ବଂଚିନଥାନ୍ତେ, କିନ୍ତୁ ସେ ଜଗନ୍ନାଥ ସଂସ୍କୃତି, ଜୈନ ଓ ବୌଦ୍ଧଧର୍ମ, ବୈଷ୍ଣବ, ଶାକ୍ତ ଓ ଶକ୍ତିବାଦ ଉପରେ ଯେଉଁସବୁ ଗବେଷଣା ପ୍ରସୂତ ଅଭିମତ ପ୍ରକାଶ କରିଯାଇଛନ୍ତି ତାହାର ବିଲୟ ନାହିଁ ।

ସେ କେବଳ ସାହିତ୍ୟ ସ୍ରଷ୍ଟା ଓ ଶିକ୍ଷକ ନଥିଲେ । ସମାଜ ପ୍ରତି ତାଙ୍କର ଦୃଷ୍ଟି ଥିଲା ଉଦାର । ତେଣୁ ଦେଶ ଓ ଦେଶର ମଙ୍ଗଳ କରିବା ସକାଶେ ସେ ସଦା ପ୍ରସ୍ତୁତ ଥିଲେ । ୧୯୩୦ରେ ପଟ୍ଟାମୁଣ୍ଡାଇ ମଧ୍ୟ ଇଂରାଜୀ ବିଦ୍ୟାଳୟର ଛାତ୍ର ଥିବାବେଳେ ସେ ସ୍ୱାଧୀନତା

ସଂଗ୍ରାମୀ ଯଦୁମଣୀ ପରିଜାଙ୍କ ଅନୁପ୍ରେରଣାରେ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ ମହାତ୍ମା ଗାନ୍ଧିଙ୍କ ଆହ୍ୱାନ ଏଡି ଦେଇନପାରି । ଏଥିପାଇଁ ତାଙ୍କୁ ପୋଲିସର ବେତମାଡ ସହ୍ୟ କରିବାକୁ ହୋଇଥିଲା । କଲିକତାର ବଙ୍ଗବାସୀ କଲେଜର ଛାତ୍ର ଥିବାବେଳେ ସେ ବହୁ ବଜାର ଅଞ୍ଚଳରେ ବାସ କରୁଥିବା ଓଡ଼ିଆମାନଙ୍କ ମଧ୍ୟରେ ଶିକ୍ଷା ପ୍ରସାର ପାଇଁ ରାତ୍ରି ବିଦ୍ୟାଳୟର ସ୍ଥାପନ କରିଥିଲେ । ବୟସ୍କ ଓଡ଼ିଆ ଶ୍ରମିକମାନେ ରାତିରେ ସେଠାରେ ପଢୁଥିଲେ । ସେ କଲିକତାସ୍ଥ ଓଡ଼ିଆ ଛାତ୍ର ସଂଘର ଯୁଗ୍ମ ସଂପାଦକ ଥିଲେ ଏବଂ 'କର ବା ମର' ପତ୍ରିକାର ପ୍ରୁଫ୍‌ରିଡର ଭାବେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ କାର୍ଯ୍ୟ କରୁଥିଲେ । କଲିକତାରେ ସେଇ ସମୟରେ ଚାରି ପାଞ୍ଚ ଲକ୍ଷ ଓଡ଼ିଆ ଶ୍ରମିକ ବାସ କରୁଥିଲେ ଏବଂ ସେମାନଙ୍କର ଶିକ୍ଷା ଓ ସାମାଜିକ ଉନ୍ନତି ସକାଶେ ସେ ଆନ୍ଦୋଳନ କରୁଥିଲେ । ପଟ୍ଟାମୁଣ୍ଡାଇରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିବା ନିମନ୍ତେ ସେ କଲିକତାରୁ ଅର୍ଥ ସଂଗ୍ରହ କରିଥିଲେ । ପାଠପଢ଼ା ଶେଷ ହେବା ପରେ ପାରଳାଖେମୁଣ୍ଡି କଲେଜରେ ୧୯୪୪ରେ ଅଧ୍ୟାପକ ଭାବେ କାର୍ଯ୍ୟ କଲାବେଳେ ମଧ୍ୟ ସେ ଝାଡୁଦାରମାନଙ୍କୁ ଶିକ୍ଷା ଦେବା ପାଇଁ ରାତ୍ରି ବିଦ୍ୟାଳୟ ଖୋଲିଥିଲେ । ସମାଜ ସେବା ପାଇଁ ଗାନ୍ଧିବାଦୀ ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀ ତାଙ୍କୁ ଉତ୍ସାହିତ କରୁଥିଲେ । ତାଙ୍କର ସମାଜ ସେବା କାର୍ଯ୍ୟର ପରିଚୟ ପାଇ ଲକ୍ଷ୍ମୀନାରାୟଣ ସାହୁଙ୍କ ନେତୃତ୍ୱରେ ଗଠିତ ନିଖିଳ ଓଡ଼ିଶା ରିଲିଫ୍ କମିଟିର ସ୍ଥାୟୀ ସଦସ୍ୟ ଭାବେ ମଧ୍ୟ ତାଙ୍କୁ ନିଆଯାଇଥିଲା । ୧୯୪୭ରେ କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡାଇ, ମାର୍ଶାଘାଇ ଓ ରାଜନଗର ଅଞ୍ଚଳରେ ବନ୍ୟା ଦୁର୍ଗତମାନଙ୍କ ମଧ୍ୟରେ ସେ କାର୍ଯ୍ୟ କରିଥିଲେ । ଜୀବନର ଶେଷ ପର୍ଯ୍ୟନ୍ତ ସେ 'ପରୋପକାରାୟ ଧର୍ମାୟ' ଉକ୍ତିକୁ ଅକ୍ଷରେ ଅକ୍ଷରେ ପାଳିବା ପାଇଁ ନିଷ୍ଠାର ସହିତ କାର୍ଯ୍ୟ କରୁଥିଲେ । ଛାତ୍ର ଅବସ୍ଥାରେ ସଂଘର୍ଷ ଓ ସଂଗ୍ରାମ କରି ପାଠ ପଢ଼ିଥିବା କାହ୍ନୁଚରଣଙ୍କୁ ଅର୍ଥାଭାବ କେବେ ହେଲେ ନିରୁତ୍ସାହ କରିପାରିନାହିଁ । ସବୁଦିଗ ଅନ୍ଧାର ହୋଇଥିବାବେଳେ ହଠାତ୍ ବିଧାତାଙ୍କ ଅସୀମ କରୁଣାରୁ ବିଜୁଳି ଝଟକିବା ପରି ଗୋଟିଏ ଦିଗ ଆଲୋକିତ ହୋଇଛି । କାହ୍ନୁଚରଣଙ୍କ ଅମାୟିକ ବ୍ୟବହାର ଓ ବନ୍ଧୁ ବତ୍ସଳତା ତାଙ୍କୁ ଶିକ୍ଷକ ଭାବେ ଯେପରି ଅନେକ ଖ୍ୟାତି ଆଣି ଦେଇଥିଲା, ସେହିପରି ସାହିତ୍ୟ ଓ ସଂସ୍କୃତିର ଉନ୍ନତି ପାଇଁ ତାଙ୍କର ସାଧୁ ଓ ନିରଳସ ଉଦ୍ୟମ ତାଙ୍କୁ ଅନେକ ପ୍ରତିଭାଧାରୀଙ୍କ ସହିତ ମିଳିତ କରିଥିଲା । ପରିଣତ ବୟସର ଚାପ ତାଙ୍କୁ କେବେହେଲେ ହତାଶ ବା ନିରୁଦ୍ୟମ କରିପାରିନାହିଁ, ବରଂ ପ୍ରତିକୂଳତାକୁ ଅନୁକୂଳତାରେ ପରିଣତ କରିବା ପାଇଁ କାହ୍ନୁଚରଣ ଆଜୀବନ ଲଢ଼ି ଆସିଛନ୍ତି । ଆଉ ସେଇ ଲଢୁଆ ନମ୍ର ଅଧ୍ୟାପକ ଆମ ପାଖରେ ନାହାନ୍ତି, କିନ୍ତୁ ଦେଶ ପାଇଁ ସେ ଛାଡ଼ି ଯାଇଥିବା ରତ୍ନ ଭଣ୍ଡାର ରହିଛି ତାଙ୍କ ରଚିତ ଓ ସଂପାଦିକ ଗ୍ରନ୍ଥ

ସମୂହରେ । ତାହାରି ଭିତରେ କାହ୍ନୁ ଚରଣ ମିଶ୍ର ବହୁକାଳ ଜୀବିତ ରହିବେ ଏବଂ ତାଙ୍କ ପରି ଜଣେ ସାରସ୍ୱତ ସାଧକ ଜନ୍ମ ହୋଇଥିଲେ ବୋଲି ଉତ୍କଳ ଜନନୀ ଗର୍ବ କରୁଥିବେ ।

ଆଜି ସେଇ ସାରସ୍ୱତ ସାଧକଙ୍କ ପୁଣ୍ୟସ୍ମୃତି ଉଦ୍ଦେଶ୍ୟରେ ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ପାଇଁ ସୁଯୋଗ ମିଳିଥିବାରୁ ମୁଁ ତାଙ୍କୁ ପ୍ରଣାମ କରୁଛି ।

■■

# କାହ୍ନୁବାବୁ

*- ଯତୀନ୍ଦ୍ର ମୋହନ ମହାନ୍ତି*

ରିସେସ ହେଇଥାଏ । ରେଭେନ୍ସା କମନରୁମରେ ଆମେ ସମସ୍ତେ ବସିଛୁ । କଥାବାର୍ତ୍ତା ଚାହା ପିଆ ସବୁ ଚାଲିଥାଏ । ଜଣେ ବନ୍ଧୁ ଆସି ପହଞ୍ଚିଲେ । ଆମେ ଗୋଟାଏ କଣରେ କିଛି ବନ୍ଧୁ ଏକାଠି ବସିଥାଉ । ଆମ ପାଖରେ ବସି ପଡ଼ିଲେ, କହିଲେ, ଜାଣିଛ, ଜଣେ ନୂଆ ଚରିତ୍ର କଲେଜକୁ ଆସିଛନ୍ତି ।' 'ମାନେ' ଆମେ ସମସ୍ତେ ମୁହଁ ଟେକି ଚାହିଁଲୁ । 'ଆରେ ନାଇଁ ନାଇଁ, ସେମିତି କିଛି ନାହିଁ, ଜଣେ ଭଦ୍ରଲୋକ ଟ୍ରାନ୍ସଫର ହୋଇ କଲେଜକୁ ଆସିଛନ୍ତି, 'ଓଃ !' ସମସ୍ତେ ପୁଣି କଥାରେ ମନ ଦେଲେ । ତାଙ୍କର କେମିତି ଅଖାଡୁଆ ପୋଷାକ, ବନ୍ଧୁ ପୁଣି କହିଲେ, କଥା ପୁଣି ବନ୍ଦ ହୋଇଗଲା, ଆରେ ଅଖାଡୁଆ କଅଣ ? ପୋଷାକ ଅଛି ତ ? ଆଉ ଜଣେ ବନ୍ଧୁ ପଚାରିଲେ । ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ଖବର ଦେଇଥିବା ବନ୍ଧୁଙ୍କ ସମେତ । ବନ୍ଧୁ ପୁଣି କହିଲେ, ନାଇଁ ନାଇଁ, ପୋଷାକ ଅଛି । କିନ୍ତୁ ଟିକେ ଅଖାଡୁଆ, ଆଚ୍ଛା ହେଉ, ଆସନ୍ତୁ ଦେଖାଯିବ; ଜଣେ ବନ୍ଧୁ କହିଲେ । କେହି ଆଉ କଥା ବଢ଼େଇବାକୁ ଚାହିଁଲେନି । ଆଲୋଚନା କରୁଥିବା କଥାକୁ ସମସ୍ତେ ପୁଣି ଫେରି ଆସିଲେ । କିନ୍ତୁ ବେଶୀ ସମୟ ଅପେକ୍ଷା କରିବାକୁ ହେଲାନି । ରିସେସ ପ୍ରାୟ ସରି ଆସୁଥାଏ । ହଠାତ୍ ଟିକିଏ ଦୂରରେ ବସିଥିବା ଜଣେ ବରିଷ୍ଠ ଅଧ୍ୟାପକ କହି ଉଠିଲେ, 'ଆରେ, ଆରେ, କାହ୍ନୁବାବୁ ଯେ, ଆସନ୍ତୁ, ଆସନ୍ତୁ । କେବେ ଜଏନ କଲେ । ଏଇତ, ସାଙ୍ଗେ ସାଙ୍ଗେ, ଭଦ୍ର ଲୋକ ଜଣଙ୍କ କମନ୍‌ରୁମ୍ ଭିତରକୁ ପଶିଲେ । ଆମେ ସମସ୍ତେ ମୁହଁ ଟେକି ଚାହିଁଲୁ । ଖବର ଦେଇଥିବା ବନ୍ଧୁ ଜଣଙ୍କ ଟିକେ ଆଖି ମାରିଦେଲେ । ପୋଷାକ ବାସ୍ତବିକ ଅଖାଡୁଆ । ସୌମ୍ୟ, ଶାନ୍ତ ଚେହେରା । ହସହସ ମୁହଁ । ଆଖିରେ ନିଜର ଅନ୍ତରଙ୍ଗ ଲୋକ ପରି ଭାବ । କିନ୍ତୁ ପୋଷାକ ଆମ ସମସ୍ତଙ୍କ ପରି ପ୍ୟାଣ୍ଟସାର୍ଟ, ପ୍ୟାଣ୍ଟହାୱାଇ ବା ପ୍ୟାଣ୍ଟ କୋଟ ନୁହେଁ । ପରିଷ୍କାର, ସଫା ଧୋତି, ଦେହରେ ପରିଷ୍କାର ଧଳା ଚାଦର ବେଶ ମାନୁଛି । ଆଉ ସାରା ଦେହରେ ଗୋଟାଏ ସମୀହ କରିବାର ଭାବ । ମନେ ହେଉଛି ଯେପରି ଜଣେ ଶାସ୍ତ୍ରଜ୍ଞ, ରୁଚିଶୀଳ ଶୁଦ୍ଧ ପଣ୍ଡିତ କୌଣସି ପୂଜା ଅର୍ଚ୍ଚନାରୁ ଉଠି ଆସିଛନ୍ତି । କମନରୁମ୍‌ରେ ହୋହଲ୍ଲା ତ ବନ୍ଦ ହୋଇଗଲା । ସାରା କମନରୁମ୍‌ରେ ଯେମିତି ଗୋଟାଏ ନୂଆ, ପରିଷ୍କାର ପବନ ବହିଗଲା । ମୁଁ ଖବର ଦେଇଥିବା ବନ୍ଧୁଙ୍କ ଆଡ଼କୁ ଚାହିଁଲି, 'କିହୋ, ଅଖାଡୁଆ ପୋଷାକ କଅଣ ? ଏତ

ଠିକ୍ ପୋଷାକ । ଆମ ପୋଷାକ ବରଂ ଅଖାଡୁଆ । ବରିଷ୍ଠ ଅଧ୍ୟାପକ ସେତେବେଳେ କାହ୍ନୁବାବୁଙ୍କୁ ସମସ୍ତଙ୍କ ସହିତ ପରିଚିତ କରେଇ ଦେଉଥାନ୍ତି ।

ପରେ କାହ୍ନୁବାବୁଙ୍କ ସହିତ ଆସ୍ତେ ଆସ୍ତେ ପରିଚୟ ହେଲା । କିଛି ପରିମାଣରେ ଘନିଷ୍ଠତା ବି ହେଲା । ମୁଁ ଲକ୍ଷ୍ୟ କରି ଦେଖେ ସେ ଅନ୍ୟମାନଙ୍କ ପରି ଖୁସିଗପରେ ସମୟ ନଷ୍ଟ କରିବାକୁ ଚାହାଁନ୍ତି ନାହିଁ, ହାତରେ ସବୁବେଳେ କିଛି କାଗଜ ବା ବହିଥାଏ ଓ ସବୁବେଳେ ମନେହୁଏ ସେ ନିରବଚ୍ଛିନ୍ନ ଭାବରେ କିଛି ଭାବୁଚନ୍ତି ବା ଚିନ୍ତା କରୁଛନ୍ତି । ଦିନେ ମୁଁ ପଚାରିଦେଲି, 'କାହ୍ନୁବାବୁ, ଆପଣ ସବୁବେଳେ ଏତେ କଅଣ ଭାବୁଚନ୍ତି ? ସେ ହସିଲେ, କହିଲେ ନାଁ, ଠିକ୍ ତା ନୁହେଁ । ପୃଥିବୀରେ ଏତେ ଜାଣିବାର କଥା ଅଛି ଯେ ଆମେ ସେସବୁ କଅଣ ସବୁ ଜାଣିପାରିବା, ଏଇଆ ମୁଁ ଭାବୁଛି । ତାଛଡ଼ା ଓଡ଼ିଶା କଥା ଭାବି ମତେ ବହୁତ କଷ୍ଟ ଲାଗୁଛି । ଆମ ଏ ଓଡ଼ିଶାଟାରେ କିଛି ହେଲାନି, କାହାରି ବି କିଛି ଆଗ୍ରହ ନାହିଁ ବାହାରେ ଏତେ ଅନୁଷ୍ଠାନ, ଏତେ କାମଦାମ, ସଭା ସମିତି, ଓଡ଼ିଶାରେ କିଛି ନାହିଁ, ସେହିଦିନ ମୁଁ ବୁଝିଲି ଏ ଲୋକ ସମସ୍ତଙ୍କ ପରି ନୁହେଁ । ବାସ୍ତବିକ ଅଖାଡୁଆ, ଅଲଗା ।

ସେଦିନ କୌଣସି କାରଣ ପାଇଁ କଲେଜର ଶେଷ କ୍ଲାସଗୁଡ଼ା ସସ୍‌ପେଣ୍ଡ ହୋଇଗଲା । ମୁଁ ଲାଇବ୍ରେରୀରେ ବସି ବହିପତ୍ର ଦେଖୁଛି । ହଠାତ୍ କାହ୍ନୁବାବୁ ଆସି ପହଞ୍ଚିଲେ । କହିଲେ, 'ଯତିନ ବାବୁ, ତୁମକୁ ମୁଁ ଖୋଜି ଖୋଜି ଆସିଲି । କାମ ଅଛି ।' ସେ ବସିଲେ, ହାତରେ କଅଣ କାଗଜପତ୍ର ସବୁ ଧରିଥିଲେ ଟେବୁଲ ଉପରେ ରଖିଲେ । ମୁଁ କିଛି କହିବା ଆଗରୁ କହିଲେ, ନାଁ ମୋ କଥା ଆଗ ଶୁଣ । ତମର କଅଣ କାମ ଅଛି । ମୁଁ କହିଲି, 'ନାଁ, କହନ୍ତୁ ।' ସେ କାଗଜପତ୍ର ଖେଳେଇ ଗୋଟା ଲେଖା ମତେ ଦେଲେ, କହିଲେ 'ପଢ଼, କେମିତି ହେଇଛି ମତେ କୁହ ।' ଇଂରାଜୀରେ ଲେଖା ହୋଇଛି । ଶୀର୍ଷକ 'Lord Jagannnath: A Glimpse into Evolution.' । ମତେ ଟିକିଏ ସଂକୋଚ ଲାଗିଲା, ମୁଁ କହିଲି, କାହ୍ନୁବାବୁ ଏ ବିଷୟରେ କଅଣ ମୋର ଯୋଗ୍ୟତା ଅଛି ? ସେ କହିଲେ, ଅଛି, ଅଛି, ପଢ଼ । ମୁଁ ବିଧୁବାବୁଙ୍କ ପାଖକୁ ଯାଇଥିଲି (ପ୍ରଫେସର ବିଧୁଭୂଷଣ ଦାସ) । ସେ ଦେଖିଲେ, ଖୁସି ହେଲେ, କହିଲେ ଯତିକୁ ଦେଖା, ସେ ଠିକ୍ କରିଦେବ । ତୁମେ ଦେଖ, ମୋର ଆଉ ନାଁ କହିବାକୁ ଉପାୟ ନଥିଲା । ସେ ବସି ରହିଲେ, ମୁଁ ପ୍ରବନ୍ଧଟି ପଢ଼ିଲି ।

ବେଶ ଭଲ ପ୍ରବନ୍ଧ । ଯାହା କହିବାର କଥା କୁହାଯାଇଛି, ତଥ୍ୟଭିତ୍ତିକ, ଯାହା କେବଳ ଶୁଣା କଥା ତାର ସୂଚନା ଦିଆଯାଇ କାଟି ଦିଆଯାଇଛି । ସଂଗଠନ ଭଲ, ଇଂରାଜୀ ବି ଭଲ । ମୁଁ କହିଲି, ନାଁ, ଠିକ୍ ଅଛି, ଯାହା ସାମାନ୍ୟ ଏଠିସେଠି ଭୁଲ ଅଛି ତା ଠିକ୍ କରିଦେଲେ

ହବ, କିନ୍ତୁ ଏ ଗୋଟିକିଆ ପ୍ରବନ୍ଧ କଅଣ ? ଆପଣ କଅଣ କୋଉ ପତ୍ରିକାକୁ ପଠଉଛନ୍ତି, ବା କୌଣସି ଆସାଇନ୍‌ମେଣ୍ଟ କାମ ? ସେ ଟିକିଏ ଚୁପ୍ କରିଗଲେ, କହିଲେ, 'ନାଁ, କୌଣସି ପତ୍ରିକାକୁ ନୁହେଁ,  କି କୌଣସି ଆସାଇନ୍‌ମେଣ୍ଟ କାମ ନୁହେଁ, ଏ ମୋର ଗବେଷଣାର କାମ ।' 'ଗବେଷଣା ?' ମୁଁ ସାମାନ୍ୟ ଆଶ୍ଚର୍ଯ୍ୟ ହେଲି । 'ହଁ, ମୁଁ ଏ ବିଷୟରେ ପଢ଼ାପଢ଼ି କରୁଛି; ସେ କହିଲେ, ଭାବୁଛି କିଛି ଲେଖାଲେଖି କରିବି । ପିଏଚ୍‌ଡି ବି କରିପାରେ ।' ମୁଁ ଟିକିଏ ଭାବିଲି, କହିଲି, ଜଗନ୍ନାଥଙ୍କ ବିଷୟରେ ମୋର ଯାହା ମନେ ହୁଏ ଏପର୍ଯ୍ୟନ୍ତ କିଛି ଗୁରୁତ୍ୱପୂର୍ଣ୍ଣ ବା ସିରିଅସ କାମ ହେଇନି । ସବୁ ଖାଲି ଉପର ଠାଉରିଆ କଥା । ମତାମତ, ମୁଁ ଦେଖିଲି କାହ୍ନୁବାବୁଙ୍କ ଆଖି ଦି'ଟା ଯେମିତି ଜଳି ଉଠିଲା । ସେ ସିଧା ହୋଇ ବସିଲେ, କହିଲେ, ଯତିନ ବାବୁ, ଠିକ୍ କହିଛ । ଖାଲି ଉପରଠାଉରିଆ, ଲୋକ ଦେଖାଣିଆ କଥା । ଜଗନ୍ନାଥ ଯେମିତି ଗୋଟାଏ ଧର୍ମଶାଳା । ଯିଏ ଯୋଉଠି ପାରିଲା କିଛି ନଜାଣି ବା ଅଳ୍ପ ଟିକେ ଜାଣି ଗୋଟା ପ୍ରବନ୍ଧ, ଖାଲି ଶସ୍ତା ନା ନେବା କଥା । କାହ୍ନୁବାବୁ ମୋ ଠାରୁ ବୟସରେ ଅନେକ ବଡ଼ । ତାଙ୍କୁ ତାଙ୍କର ଗବେଷଣା ବିଷୟରେ ପଚାରିବାକୁ ମତେ ସଂକୋଚ ଲାଗୁଥାଏ । ତଥାପି ମୁଁ ପଚାରିଲି, ଆପଣ କଅଣ ଏ  ବିଷୟରେ ପଢ଼ାପଢ଼ି କଲେଣି ? ସେ କହିଲେ, 'ହଁ, କରୁଛି,  ଯେତେ କରୁଛି ଦେଖୁଛି ଓଡ଼ିଶାରେ ଯାହା ବିଷୟରେ ପ୍ରଥମେ କାମ ହେବା ଦରକାର ସେହି ଜଗନ୍ନାଥଙ୍କ ବିଷୟରେ, ପ୍ରାୟ କିଛି ହେଇନି । ଯାହା କାମ ସବୁ ବାହାରୁ । ମୁଁ ଭାବୁଛି ମୋ ବହି ଇଂରାଜୀରେ ଲେଖିବି ବାହାର ଲୋକେ ଜାଣିବା ଦରକାର । ମତେ ତୁମେ ସାହାଯ୍ୟ କର, ମୁଁ ଖୁସିରେ ରାଜି ହୋଇଥିଲି । କିନ୍ତୁ ପରେ ଯେ ମୋତେ ତାଙ୍କୁ ଖୁବ୍ ବେଶୀ ସାହାଯ୍ୟ କରିବାକୁ ପଡ଼ିଛି ତା ନୁହେଁ । ସେ ତାଙ୍କ କାମ କରୁଥାନ୍ତି । ମୋ ସାଙ୍ଗରେ ସମ୍ପର୍କ ଥାଏ । କେତେବେଳେ ଦରକାର ହେଲେ ଆସି ଆଲୋଚନା କରନ୍ତି ବା ଇଂରାଜୀ ଠିକ୍ କରିନିଅନ୍ତି । ପରେ ତାଙ୍କର ବହି ବାହାରିଲା । ସେ ବିଷୟରେ ସେ ପି.ଏଚ୍.ଡି ମଧ୍ଯ କଲେ । ତାଙ୍କର ବହି 'The cult of Jagannath' ସତୁରୀ ଦଶକ ଆରମ୍ଭରେ ଛପା ହୋଇଥିଲା ଓ ମୋର ଯାହା ମନେ ହେଉଛି ଉଭୟ ଇଂରାଜୀ ଓ ଓଡ଼ିଆରେ ଜଗନ୍ନାଥଙ୍କ ସମ୍ପର୍କରେ ତାହା ହିଁ ପ୍ରଥମ ଗୁରୁତ୍ୱପୂର୍ଣ୍ଣ ବହି ।

ଏହାର ଅନେକ ଦିନ ପରେ, କାହ୍ନୁବାବୁ ବୋଧହୁଏ ସେତେବେଳେ ଅବସର ନେଇ ସାରିଲେଣି, ମୁଁ ଦିଲ୍ଲୀ ଶିକ୍ଷା ମନ୍ତ୍ରଣାଳୟକୁ ଯାଇଥାଏ କୌଣସି ଗୋଟାଏ ମିଟିଂ ପାଇଁ, ମିଟିଂ ସରିବା ପରେ ମନ୍ତ୍ରଣାଳୟର  ଜଣେ ଡେସ୍କ ଅଫିସର ମୋ ପାଖକୁ କଅଣ ଗୋଟାଏ କାଗଜ ନେଇ ଆସିଲେ, କହିଲେ, ସାର ଏ କାଗଜ ଟିକେ ଦେଖନ୍ତୁ । ଭୁବନେଶ୍ୱରର ଗୋଟିଏ ଅନୁଷ୍ଠାନ ସେମିନାର କରିବା ପାଇଁ ଆମକୁ ସାହାଯ୍ୟ ମାଗିଛନ୍ତି । ଏ ଅନୁଷ୍ଠାନର ଉପଦେଷ୍ଟା

ମଣ୍ଡଳୀରେ ଅନେକ ଗଣ୍ୟମାନ୍ୟ ଲୋକ ଅଛନ୍ତି । ଆଙ୍କୁ ସାହାଯ୍ୟ ଦେଲେ ଭଲ ହେବ କି ? ମୁଁ ଦେଖିଲି କାହ୍ନୁବାବୁଙ୍କ ଅନୁଷ୍ଠାନ । ମୁଁ ସେ କାଗଜ ଡେସ୍କ ଅଫିସରଙ୍କୁ ଫେରେଇଦେଲି, କହିଲି, ଏ ଉପଦେଷ୍ଟା ମଣ୍ଡଳୀର ଗଣ୍ୟମାନ୍ୟ ଲୋକଙ୍କ କଥା ଭୁଲିଯାଆନ୍ତୁ । ସେମାନେ ସେମିତି ସବୁ ଅନୁଷ୍ଠାନରେ ରହନ୍ତି । କିନ୍ତୁ ଏ ଅନୁଷ୍ଠାନ ଯେ ଚଳଉଛନ୍ତି, ଡକ୍ଟର କେ.ସି. ମିଶ୍ର, ସେ ସମ୍ପୂର୍ଣ୍ଣ ଠିକ୍ ଲୋକ । ଆପଣ ବିନା ଦ୍ୱିଧାରେ ଟଙ୍କା ଦିଅନ୍ତୁ ।

କାହ୍ନୁବାବୁ ସେତେବେଳେ ଟଙ୍କା ପାଇଥିଲେ, ତାପରେ ବି ଅନେକଥର ପାଇଛନ୍ତି । ଓଡ଼ିଶାର ସାହିତ୍ୟ ଓ ସଂସ୍କୃତି ପ୍ରତି ଆଗ୍ରହୀ ହୋଇ, ଗୋଟିଏ ସାଂସ୍କୃତିକ ଅନୁଷ୍ଠାନକୁ ସମ୍ପୂର୍ଣ୍ଣ ଭାବରେ ନିଜର ଏକକ ଚେଷ୍ଟାରେ ଦୀର୍ଘ ଦିନ ଧରି ନିୟମିତ ଭାବରେ ଅତ୍ୟନ୍ତ ସଫଳତାର ସହ ଚଳେଇ ରଖିବାରେ ମୁଁ ଓଡ଼ିଶାରେ ଆଉ କୌଣସି ଲୋକକୁ ଦେଖିନାହିଁ, ସେ ଆଜି ନାହାନ୍ତି । ଏ ଖାଲି ଆମମାନଙ୍କ ପାଇଁ ବ୍ୟକ୍ତିଗତ ଭାବରେ ନୁହେଁ, ସମଗ୍ର ଭାବରେ ଓଡ଼ିଶା ପାଇଁ ଅପୂରଣୀୟ କ୍ଷତି । ତାଙ୍କ କାମକୁ ଠିକ୍ ଭାବରେ ଚଳେଇ ରଖି ପାରିଲେ ବୋଧହୁଏ ତାଙ୍କର ସବୁଠାରୁ ବଡ଼ ସ୍ମୃତି ରକ୍ଷା ହେବ ।

■■

# ସାର୍

***- ଡକ୍ଟର ବିଭୁତି ପଟ୍ଟନାୟକ***

୧୯୫୮-୫୯ ମସିହାରେ ମୁଁ ରେଭେନ୍ସାରେ ଏମ୍.ଏ. ପଢୁଥିଲାବେଳେ କାହ୍ନୁଚରଣ ମିଶ୍ର ଥିଲେ ଓଡ଼ିଆ ବିଭାଗର ଅଧ୍ୟାପକ । ମୁଁ ଇତିହାସ ଶାସ୍ତ୍ରରେ ଏମ୍.ଏ ପଢୁଥିଲି । ତେଣୁ ତାଙ୍କ କ୍ଲାସରେ ପଢ଼ିବାର ସୁଯୋଗ ନଥିଲା । କିନ୍ତୁ ବି.ଏ.ରେ ଯେହେତୁ ମୋର ଓଡ଼ିଆ ଅନର୍ସ ଥିଲା, ସ୍ନାତକୋତ୍ତର ଓଡ଼ିଆ ବିଭାଗ ପ୍ରତି ମୋର ଏକ ସ୍ୱାଭାବିକ୍ ଆକର୍ଷଣ ଥିଲା । ନିଜର ବେଶ ପୋଷାକ ଏବଂ ବଳିଷ୍ଠ ବ୍ୟକ୍ତିତ୍ୱ ଯୋଗୁ ସେ ଅନ୍ୟମାନଙ୍କ ଠାରୁ ବାରି ହୋଇ ପଡୁଥିଲେ ।

ଧୋତି ଚାଦର ପିନ୍ଧା ସେଇ ତେଜସ୍ୱୀ ପୁରୁଷ ମନେ ହେଉଥିଲେ ଜଣେ ଖାଣ୍ଟି ଓଡ଼ିଆ କେବଳ ଅଧ୍ୟାପକ ନୁହେଁ, ଓଡ଼ିଆ ଭାଷା ସାହିତ୍ୟ ସମ୍ପର୍କରେ ପ୍ରକାଶିତ ତାଙ୍କର ମନୋଜ୍ଞ ପ୍ରବନ୍ଧମାଳା ଆମକୁ ତାଙ୍କ ପ୍ରତି ଆକୃଷ୍ଟ କରିଥିଲା ।

୧୯୭୦ ମସିହାରେ ମୁଁ ଓଡ଼ିଆ ବିଭାଗର ଅଧ୍ୟାପକ ଭାବରେ ବିଜେବି କଲେଜରେ ଯୋଗଦେଲା ପରେ ତାଙ୍କ ସହିତ ଘନିଷ୍ଠ ସମ୍ପର୍କ ଗଢ଼ି ଉଠିଲା । ସେତେବେଳେ ସେ ଥିଲେ ବିଭାଗୀୟ ମୁଖ୍ୟ, ଡକ୍ଟରେଟ ଡିଗ୍ରୀ ହାସଲ କରି ସାରିଥିଲେ । ଜଗନ୍ନାଥ ତତ୍ତ୍ୱ ଉପରେ ଲିଖିତ ତାଙ୍କର ଇଂରାଜୀ ଭାଷାରେ ରଚିତ ଗ୍ରନ୍ଥ ତାଙ୍କୁ ସର୍ବଭାରତୀୟ ଖ୍ୟାତି ଆଣି ଦେଇଥିଲା । ସେଥିପାଇଁ ଷ୍ଟାଫ୍ କମନ୍‌ରୁମ୍‌ରେ ଅନ୍ୟ ବିଭାଗୀୟୟ ମୁଖ୍ୟମାନଙ୍କ ଅପେକ୍ଷା ତାଙ୍କର ବ୍ୟକ୍ତିତ୍ୱ ଅଧିକ ବାରି ହୋଇ ପଡୁଥିଲା ।

ବିଭାଗୀୟ ରୁଟିନ୍ ପ୍ରସ୍ତୁତ କରିବା ଦାୟିତ୍ୱ ସେ ମୋ ଉପରେ ନ୍ୟସ୍ତ କରିଥିଲେ । ଅନ୍ୟ ବିଭାଗୀୟ ମୁଖ୍ୟମାନେ ଯେପରି ସବୁଠାରୁ କମ୍ କ୍ଲାସ ନେବା ପାଇଁ ଇଚ୍ଛା ପୋଷଣ କରନ୍ତି, କାହ୍ନୁ ବାବୁଙ୍କର ସେମାନଙ୍କର ପାଠ ନ ପଢ଼ାଇବା ମନୋବୃତ୍ତି ନଥିଲା । ସେ ମୋତେ ପରାମର୍ଶ ଦେଇଥିଲେ- ଯେଉଁ ''କ୍ଲାସ ଅନ୍ୟମାନେ ନେବାକୁ ରାଜି ହେବେ ନାହିଁ, ସେ କ୍ଲାସ୍ ମୋତେ ଦେଇଦେବ ।

ସେତେବେଳେ ଓଡ଼ିଆ ବିଭାଗ ପ୍ରଫେସର ପଦ ପାଇଁ ଗୋଲଖ ବିହାରୀ ଧଳ ଏବଂ ତାଙ୍କ ମଧ୍ୟରେ ବିବାଦ କୋର୍ଟକୁ ଯାଇଥାଏ । ସେଥିପାଇଁ ସପ୍ତାହରେ ଦୁଇ ତିନିଥର ତାଙ୍କୁ

କଟକ ଯିବାକୁ ହୁଏ । ମୁଁ ସେତେବେଳେ ଦୁଇ ନମ୍ବର ୟୁନିଟ୍ ସରକାରୀ ବାସଭବନରେ ରହୁଥାଏ । ଯେଉଁଦିନ ତାଙ୍କର କଟକ ଯିବାର ଥାଏ, ସେଦିନ ସକାଳୁ ସେ ଆସି ଖବର ଦେଇଯାଆନ୍ତି- ବିଭୁତି ! ମୁଁ କଟକ ଯାଉଛି- ତମେ ମୋ କ୍ଲାସ ନେଇଯିବ ।

ସପ୍ତାହରେ ଦୁଇ ତିନିଦିନ ଡକ୍ଟର ମିଶ୍ରଙ୍କ କ୍ଲାସ୍ ନେଇ ମୁଁ ଅଡୁଆରେ ପଡ଼ିଲି । ଯେଉଁସବୁ ଅଡୁଆ କ୍ଲାସ୍ ତାଙ୍କୁ ଦେଇଥିଲି, ସେ କ୍ଲାସ୍ ସବୁ ମୋତେ ହିଁ ନେବାକୁ ହେଲା । ସେଥିରୁ ସପ୍ତାହରେ ଗୋଟିଏ ଅନର୍ସ କ୍ଲାସରେ କାହ୍ନୁ ବାବୁଙ୍କର ଦେବଦୁର୍ଲ୍ଲଭ ଦାସଙ୍କର 'ରହସ୍ୟ ମଞ୍ଜରୀ' ପଢ଼ାଇବା କଥା । ତାଙ୍କର ସେଇ କ୍ଲାସରେ ମତେ ପଢ଼ାଇବାକୁ ଦିଆଯାଇଥିବା ଆଧୁନିକ କବିତା ମୁଁ ପଢ଼ାଏ । ଦେବଦୁର୍ଲ୍ଲଭଙ୍କ ରହସ୍ୟମଞ୍ଜରୀ ଅପଢ଼ା ରହିଯାଏ ।

ଯେଉଁଦିନ ରହସ୍ୟ ମଂଜରୀ ସେଇଦିନ କାହ୍ନୁ ବାବୁଙ୍କର ହାଇକୋର୍ଟରେ କେଶ !

ଅନର୍ସ ପିଲାମାନେ ବ୍ୟସ୍ତ ହେଉଥାଆନ୍ତି । ବି.ଏ. ଅନର୍ସ ପରୀକ୍ଷା ପାଖ ହୋଇଆସୁଥାଏ । ମୁଁ ଯାଇ ସାରଙ୍କୁ କହିଲି — ପରୀକ୍ଷା ପୂର୍ବରୁ 'ରହସ୍ୟ ମଞ୍ଜରୀ' ଶେଷ ହେବାର ସମ୍ଭାବନା ନଥିବାରୁ ଏ କ୍ଲାସ ଅନ୍ୟ କୌଣସି ଅଧ୍ୟାପକଙ୍କୁ ପଢ଼ାଇବାକୁ ଦିଆଯାଉ ।

କାହ୍ନୁ ବାବୁ ମୋ ପ୍ରସ୍ତାବ ବାତିଲ କରି ଦେଇ କହିଲେ — ତମେ କାହିଁକି ବ୍ୟସ୍ତ ହେଉଛ ? 'ରହସ୍ୟ ମଞ୍ଜରୀ' ଶେଷ କରିବା ମୋ ଦାୟିତ୍ୱ । ମୁଁ ଠିକ୍ ସମୟରେ ସାରି ଦେବି । ପରୀକ୍ଷା ଆଉ ଗୋଟିଏ ମାସ ଥାଏ, ହଠାତ୍ ଦିନେ କାହ୍ନୁ ବାବୁ ଅନର୍ସ ପିଲାମାନଙ୍କୁ ଡାକି କହିଲେ, କାଲିଠାରୁ ଆମ ଘରେ 'ରହସ୍ୟ ମଞ୍ଜରୀ' କ୍ଲାସ ନେବି । ତମେ କଲେଜ ନଆସି ଘରକୁ ଆସ ।

ସତକୁ ସତ କାହ୍ନୁ ବାବୁ ଅନର୍ସ ପିଲାଙ୍କୁ ନିଜ ଘରକୁ ଡାକି ନେଇ ସେମାନଙ୍କୁ ଜଳଖିଆ ଖାଇବାକୁ ଦେଇ ଅସମ୍ପୂର୍ଣ୍ଣ 'ରହସ୍ୟ ମଞ୍ଜରୀ' ସେ ବର୍ଷ ଶେଷ କରିଥିଲେ । ପିଲାମାନଙ୍କ ଠାରୁ ଶୁଣିଛି, 'ରହସ୍ୟ ମଞ୍ଜରୀ'ର ଗୌଡୀୟ ବୈଷ୍ଣବ ଧର୍ମର ତତ୍ତ୍ୱ ବୁଝାଇଲାବେଳେ ସେ ଏଭଳି ତନ୍ମୟ ହୋଇ ଯାଉଥିଲେ ଯେ, ମନେ ହେଉଥିଲା ସେ ଯେପରି କ୍ଲାସ ନେଉନାହାନ୍ତି- କୌଣସି ସାହିତ୍ୟ ସଭାରେ ଭାଷଣ ଦେଉଛନ୍ତି !

ଅଧ୍ୟାପନା; ଗବେଷଣା, ସାହିତ୍ୟ ରଚନା- ସବୁ କ୍ଷେତ୍ରରେ ସେ ଥିଲେ ଜଣେ ସୁଦକ୍ଷ ପୁରୁଷ । ଜଗନ୍ନାଥ ଧର୍ମ- ଦର୍ଶନ ଉପରେ ଆମେରିକାରେ ଭାଷଣ ଦେବା ଲାଗି ସେ ଆମନ୍ତ୍ରିତ ହୋଇ ଯାଇଥିଲେ । ସେଠାରୁ ଫେରି ମତେ କହିଥିଲେ- ବସ୍ତୁବାଦୀ ଆମେରିକା ବୁଦ୍ଧିଜୀବୀମାନେ ଜଗନ୍ନାଥ ଧର୍ମ ସମ୍ପର୍କରେ ଜାଣିବା ପାଇଁ ଏତେ ବ୍ୟାକୁଳ, ସେଠାକୁ ଯାଇନଥିଲେ ମୁଁ ବୁଝିପାରିନଥାନ୍ତି ।

ଧୋତି, ପଞ୍ଜାବୀ ପିନ୍ଧି, ଚାଦର ପକାଇ ସେ ପାଦରେ ଏତେ ଦ୍ରୁତବେଗରେ ଚାଲିପାରନ୍ତି ଯେ, ମୋ ଭଳି ଗାଡି ନଥିବା ଅଗାଡି ଲୋକ ତାଙ୍କ ସହିତ ପାଦ ମିଳାଇ ଚାଲିପାରେନାହିଁ । ସେଇ ବିଜେବି କଲେଜ ଦିନଠାରୁ ତାଙ୍କ ସହିତ ମୋର ଏକ ଆତ୍ମୀୟ ସମ୍ପର୍କ ଗଢ଼ି ଉଠିଥିଲା । ମୋର ବିଜେବି କଲେଜରୁ ଅନ୍ୟତ୍ର ବଦଳି ହୋଇଗଲେ ତାହା ବାତିଲ କରିବା ପାଇଁ ସେ ଯାହାକୁ ପାରୁଥିଲେ  ତାକୁ ଟେଲିଫୋନ କରୁଥିଲେ । ମୁଁ ବଦଳି ହୋଇଗଲେ ଓଡ଼ିଆ ଡିପାର୍ଟମେଣ୍ଟ ଅଚଳ ହୋଇଯିବ — ଏମିତି ଏକ ଧାରଣା ଡିପିଆଇଙ୍କୁ ଦେଇ ଥରେ ମୋ ସ୍ଥାନରେ ବିଜେବି କଲେଜରେ ଯୋଗ ଦେବାକୁ ଆସିଥିବା ଜଣେ ଅଧାପିକାଙ୍କୁ ଫେରାଇ ଦେଇଥିଲେ । ମୋର ପି.ଏଚ୍‌ଡି ଡିଗ୍ରୀ ପାଇଁ ମୋ ଅପେକ୍ଷା ତାଙ୍କର ଚିନ୍ତା ଥିଲା ଅଧିକ । ଏଥିପାଇଁ ମୋର ଗାଇଡ୍ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କୁ ମଧ୍ୟ ଏଥିପାଇଁ ସେ ଥରକୁ ଥର ତାଗିଦ୍ କରୁଥିଲେ ।

ବିଜେବି କଲେଜରୁ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ ଓଡ଼ିଆ ବିଭାଗ ପ୍ରଫେସର ହୋଇ ଯାଇଥିଲେ । ତାଙ୍କ ସହିତ ନିୟମିତ ଦେଖା ହେବା ଆଉ ସମ୍ଭବ ନଥିଲା । ହଠାତ୍ ଦିନେ ଆସି ମୋ ବସାରେ ପହଞ୍ଚିଲେ । ହାତରେ ଧରିଥିଲେ, ମୋର ସଦ୍ୟ ପ୍ରକାଶିତ 'ସାହିତ୍ୟର ସୂଚୀପତ୍ର' ବହି । ମତେ ସେ ବହିଟି ଦେଖାଇ କହିଲେ— ଏଥିରେ ବିଭିନ୍ନ ସାହିତ୍ୟ-ଆନ୍ଦୋଳନ ସମ୍ପର୍କରେ ଯାହା ସବୁ ଲେଖିଛ, ତାହା ଖୁବ୍ ସଂକ୍ଷିପ୍ତ ହୋଇଯାଇଛି । ସମ୍ଭବତଃ ବି.ଏ. ଅନର୍ସ ଛାତ୍ରଙ୍କ ଆବଶ୍ୟକତାକୁ ଆଖି ଆଗରେ ରଖି, ଜାଣିଶୁଣି ଲେଖା ଛୋଟେଇ ଦେଇଛ । ଏଇଟା ଆମ ବିଶ୍ୱବିଦ୍ୟାଳୟ ଏମ୍.ଏ.  ଛାତ୍ରମାନଙ୍କ ପାଇଁ ମଧ୍ୟ ଦରକାର । ମୁଁ ଏ ବହିକୁ ରେଫରେନ୍ସ ବହି ତାଲିକାରେ ରଖିଛି । ତମେ ଏ ଲିଟରାରି ମୁଭମେଣ୍ଟ ପ୍ରବନ୍ଧଗୁଡ଼ିକୁ ବଢ଼ାଇ ଦିଅ ।

ତାଙ୍କରି ପରାମର୍ଶରେ 'ସାହିତ୍ୟର ସୂଚୀପତ୍ର' ଦ୍ୱିତୀୟ ସଂସ୍କରଣ ବେଳେ ମତେ ପ୍ରବନ୍ଧଗୁଡ଼ିକ ଯଥା ସମ୍ଭବ ପରିବର୍ତ୍ତିତ କରିବାକୁ ହୋଇଥିଲା ।

ଚାକିରୀରୁ ଅବସର ନେଲା ପରେ ସେ ଗୋଟିଏ ଗବେଷଣା ପ୍ରତିଷ୍ଠାନ ସ୍ଥାପନ କରି କାର୍ଯ୍ୟବ୍ୟସ୍ତ ଥିଲେ । ସେହି ସଂସ୍ଥା ତରଫରୁ କେତେ ଖଣ୍ଡ ଉଚ୍ଚମାନର ଗବେଷଣା ଗ୍ରନ୍ଥ ମଧ୍ୟ ପ୍ରକାଶିତ ହୋଇଥିଲା । ବିଗତବର୍ଷ ଭୁବନେଶ୍ୱର ପୁସ୍ତକମେଳା ତରଫରୁ ତାଙ୍କର ସାହିତ୍ୟ-ସାଧନା ପାଇଁ ସମ୍ମାନିତ କରବା ପାଇଁ ଆମନ୍ତ୍ରଣ କରାଯାଇଥିଲା । ସାହିତ୍ୟ ଉତ୍ସବ ଶେଷ ହେବା ମାତ୍ରେ ମତେ କହିଲେ, ବିଭୂତି ! ମୋ ଦେହ ଭଲ ଲାଗୁନାହିଁ । ମତେ ଟିକିଏ ଘରକୁ ପଠାଇଦେବା ଲାଗି ବ୍ୟବସ୍ଥା କର ।

ସେଇ ପ୍ରଥମ ତାଙ୍କ ଶାରୀରିକ ଅସୁସ୍ଥତା କଥା ମୁହଁରୁ ଶୁଣି ଚିନ୍ତାରେ ପଡ଼ି ଯାଇଥିଲି ।

ଆଉ ଥରେ ରବି ଟକିଜ୍ ମାଛ ହାଟରେ ତାଙ୍କ ସହିତ ଦେଖା ହେଲା । ମୁଁ ତାଙ୍କ ଦେହ କଥା ପଚାରିବା ମାତ୍ରେ କହିଲେ ଭଲ ହୋଇଯାଇଛି । ମୋର ଆଉ କୌଣସି ଅସୁସ୍ଥତା ନାହିଁ । ଡାକ୍ତର କଳାବଇଁଶି ମାଛ ଖାଇବାକୁ କହିଛି । ସେଥିପାଇଁ ହାଟକୁ ଆସିଛି ।

କଳାବଇଁଶି ନେଇ ଫେରିଯିବା ଆଗରୁ କଣ ଭାବି କହିଲେ— ବଂଶୀ ଚାଲିଗଲା, କୃଷ୍ଣ ଚାଲିଗଲା । ଆମେ ସବୁ ଗୋଟିଏ ସମୟରେ ଅଧ୍ୟାପକ ଚାକିରି ଆଗପଛ ହୋଇ ଆରମ୍ଭ କରିଥିଲୁ । ମୋର ଡାକରା କେବେ ଆସିଯିବ କେଜାଣି ?

ମୁଁ ତାଙ୍କୁ କହିଥିଲି, ସେମାନେ ସବୁ ଗାଡିରେ ଚାଲୁଥିଲେ । ଆପଣ ଗୋଡରେ ଚାଲୁଛନ୍ତି । ଗାଡ଼ିବାଲା ଆଗ ଚାଲିଯାଆନ୍ତି । ଗୋଡବାଲା ପଛରେ ।

ମୋ କଥା ଶୁଣି ତାଙ୍କ ମୁହଁରେ ଏକ ଦୁର୍ଲ୍ଲଭ ପରିତୃପ୍ତିର ହସ ଫୁଟି ଉଠିଥିଲା ।

ତାପରେ ଆଉ ଦେଖା ହୋଇନାହିଁ । ମଝିରେ ମଝିରେ ଟେଲିଫୋନ କରନ୍ତି । ବିଭୂତି ! ଆଜି ମାନସିଂହଙ୍କ ବିଷୟରେ କହିବାକୁ ଯାଉଛି । ତାଙ୍କ ବହିର ନାମ ଟିକିଏ ମନେ ପକାଇଦିଅ । ବିଭୂତି ! କେମିତି ଅଛ ? ଆଜି ଗଳ୍ପ ସାହିତ୍ୟ ବିଷୟରେ କହିବାକୁ ଅଛି- କଣ କଣ କହିବି, ଟିକିଏ  କହିଦିଅ-

ସଭାକୁ ଭାଷଣ ଦେବାକୁ ଯିବା ଆଗରୁ ପ୍ରସ୍ତୁତ ହୋଇ ଯିବା ଥିଲା ତାଙ୍କର ସ୍ୱଭାବ । ଅପ୍ରସ୍ତୁତ ଭାଷଣବାଜିରେ ସେ ବିଶ୍ୱାସ କରୁନଥିଲେ ।

କିନ୍ତୁ ତାଙ୍କ ଶେଷ ଟେଲିଫୋନ ପ୍ରସଙ୍ଗ ଥିଲା ଭିନ୍ନ ।

କହିଲେ, ବିଭୂତି ! ତମ ମାଉସୀ କେତେ ଗୁଡ଼ିଏ ଗଳ୍ପ ଲେଖିଛନ୍ତି । ତମେ ଟିକିଏ ଆମ ଘରକୁ ଆସି ଦେଖିଯିବ । ମୋର ସେତିକିବେଳେ ମୁମ୍ବାଇ ଯିବାର ଥିଲା । ଫେରିଲେ ଯିବି ବୋଲି କଥା ଦେଇଥିଲି । କିନ୍ତୁ ମୁଁ ତାଙ୍କ ପାଖରେ ପହଞ୍ଚିବା ଆଗରୁ ସେ ଚାଲିଗଲେ ।

ଡକ୍ଟର ବଂଶୀଧର ମହାନ୍ତି, କୃଷ୍ଣଚରଣ ସାହୁ, ଜାନକୀବଲ୍ଲଭ ମହାନ୍ତି, ରାଜକିଶୋର ରାୟ, ନଟବର ସାମନ୍ତରାୟ ଏବଂ ଶେଷରେ ଡକ୍ଟର କାହ୍ନୁଚରଣ ମିଶ୍ର— ଯେଉଁମାନେ ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପନା କରି ବହୁ କୃତି ଛାତ୍ରଛାତ୍ରୀ ସୃଷ୍ଟି କରିଯିବା ସହିତ ନିଜର ରଚନା, ଗବେଷଣା, ସମ୍ପାଦନା ଦ୍ୱାରା ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରି ଯାଇଛନ୍ତି, ସେମାନେ ଆଗପଛ ହୋଇ ଚାଲିଗଲେ । ସେମାନଙ୍କ ସହିତ ଶେଷ ହୋଇଥିଲା ଗୋଟିଏ ଯୁଗ ।

କାହ୍ନୁବାବୁ ଥିଲେ ଓଡ଼ିଆ ଭାଷା, ସାହିତ୍ୟର ଜଣେ ଅନଳସ ସାଧକ । ମୋର ପ୍ରିୟ ସାର୍ । ତାଙ୍କର ଅମର ଆତ୍ମା ପ୍ରତି ମୋର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ।

■■

# ଓଡ଼ିଶା ସଂସ୍କୃତି ପରିଷଦ, ଭୁବନେଶ୍ୱର ଓ ପ୍ରଫେସର ଡକ୍ଟର କାହ୍ନୁଚରଣ ମିଶ୍ର

*- ଡଃ ଭଗବାନ ପଣ୍ଡା*

ଓଡ଼ିଶାର ପରମ୍ପରା, ଐତିହ୍ୟ ଓ ସଂସ୍କୃତି ସମ୍ବନ୍ଧୀୟ ଗବେଷଣା କ୍ଷେତ୍ରରେ ଯେଉଁ କେତେଜଣ ବିଶିଷ୍ଟ ଗବେଷକ ଆଜୀବନ ସାଧନାରତ ଥିଲେ ସେମାନଙ୍କ ମଧ୍ୟରେ ପ୍ରଫେସର ଡକ୍ଟର କାହ୍ନୁଚରଣ ମିଶ୍ର ଥିଲେ ଅନ୍ୟତମ । ଓଡ଼ିଶା ଓ ଓଡ଼ିଆ ଜାତି ପ୍ରତି ତାଙ୍କର ଦାନ ଅତୁଳନୀୟ । ଛାତ୍ର ସମାଜରେ ସେ ଥିଲେ ସର୍ବମାନ୍ୟ ଓ ଆଦର୍ଶ ସ୍ଥାନୀୟ । ତାଙ୍କର ବହୁ ଛାତ୍ର ଦେଶ ବିଦେଶରେ ବିଭିନ୍ନ ଉଚ୍ଚ ପଦପଦବୀରେ ପ୍ରତିଷ୍ଠିତ । ଡକ୍ଟର ମିଶ୍ରଙ୍କ ପରି ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ସ୍ନେହଶୀଳ ଗୁରୁ, ପ୍ରବୀଣ ଗବେଷକ ଓ ସ୍ୱସୁଖ ନିରଭିଳାଷ ବିନମ୍ର ବ୍ୟକ୍ତି ସାମ୍ପ୍ରତିକ ସମାଜରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମ ଯୁଗର ଛାତ୍ର, ଅଣ ଛାତ୍ର ଓ ସାଧାରଣ ସମସ୍ତଙ୍କର ସେ ଥିଲେ ସାର । ଆମ ଆଗରେ ସାର୍ ଥିଲେ ପ୍ରେରଣାର ମୂର୍ତ୍ତିମନ୍ତ ପ୍ରତୀକ । ସଂକ୍ଷେପରେ କହିଲେ-

ଗର୍ବଂ ନୋଦ୍‌ବହତେ ନ ନିନ୍ଦତି ପରାନ୍ନୋ ଭାଷତେ ନିଷ୍ଠୁରଂ
ପ୍ରୋକ୍ତଂ କେନଚିଦପ୍ରିୟଂ ଚ ସହତେ କ୍ରୋଧଂ ଚ ନାଲମ୍ବତେ ।
ଶ୍ରୁତ୍ୱା କାବ୍ୟମଲକ୍ଷଣଂ ପରକୃତଂ ସଂତିଷ୍ଠତେ ମୂକବଦ୍
ଦୋଷାଂଚ୍ଛାଦୟତେ ସ୍ୱୟଂ ନ କୁରୁତେ ହ୍ୟୋତସ୍ୱତାଂଲକ୍ଷଣମ୍ ।

- ଅର୍ଥାତ୍ ଡକ୍ଟର ମିଶ୍ରଙ୍କର ଗର୍ବ ନଥିଲା । ସେ କେବେହେଲେ ପରନିନ୍ଦା କରୁନଥିଲେ କି ନିଷ୍ଠୁର କଥା କହୁନଥିଲେ । କେହି କେବେ ତାଙ୍କୁ ଅପମାନିତ କଲେ ସେ ତାହା ସହିଯାଉଥିଲେ ସିନା କେବେ କ୍ରୋଧ ପ୍ରକାଶ କରୁନଥିଲେ । ଅନ୍ୟର ତ୍ରୁଟି ବିଚ୍ୟୁତି ଦେଖିଲେ ସେ ନୀରବ ରହୁଥିଲେ ଏବଂ କାୟ ମନୋବାକ୍ୟରେ କୌଣସି ପ୍ରକାର ଅପକର୍ମ କରୁନଥିଲେ ।

ବ୍ୟକ୍ତିଗତ ଭାବେ ଡକ୍ଟର ମିଶ୍ରଙ୍କର ସିଧାସଳଖ ଛାତ୍ରନଥିଲେ ବି ମୁଁ ତାଙ୍କୁ ଗୁରୁ ଭାବେ ମୋ ହୃଦୟରେ ସ୍ଥାନ ଦେଇଥିଲି ଏବଂ ସେ ମୋତେ କେବଳ ଛାତ୍ର ଭାବେ ନୁହେଁ, ପୁତ୍ରବତ୍ ସ୍ନେହ ଓ ଶ୍ରଦ୍ଧା କରୁଥିଲେ ।

୧୯୭୦ ମସିହା ଜୁନ୍ ୨୧ ତାରିଖରେ ମୁଁ ପୁରୀରୁ ଆସି ସଂସ୍କୃତି ନିର୍ଦ୍ଦେଶାଳୟରେ ଯୋଗ ଦେଲି । ଓଡ଼ିଶା ସଂସ୍କୃତ ସମିତି, ପୁରୀରେ, ସହାଧକ୍ଷ ଓ ସହ ସଂପାଦକ ଥିବାବେଳେ (୧୯୬୪-୧୯୭୦) ପଟ୍ଟାମୁଣ୍ଡାଇ ସଂସ୍କୃତ ଟୋଲର ହେଡ ପଣ୍ଡିତ ଥିବା ଡକ୍ଟର ମିଶ୍ରଙ୍କ ପିତା ପଣ୍ଡିତ ବଳରାମ ମିଶ୍ର ମଝିରେ ମଝିରେ ଅନୁଷ୍ଠାନର କାର୍ଯ୍ୟରେ ପୁରୀ ଆସୁଥିଲେ । ପଣ୍ଡିତ ମହାଶୟଙ୍କ ଦିବ୍ୟବପୁ ଦେଖି ଯେ କେହି ତାଙ୍କୁ ଶ୍ରଦ୍ଧାରେ ଓ ଭକ୍ତି ସହକାରେ ପ୍ରଣାମ କରୁଥିଲେ । ପଣ୍ଡିତ ମିଶ୍ରଙ୍କର ବିଭିନ୍ନ ଶାସ୍ତ୍ରରେ ଯେପରି ଅଗାଧ ପାଣ୍ଡିତ୍ୟ ଥିଲା, ସେ ସେହିପରି ନମ୍ର ଓ ମଧୁରଭାଷୀ ଥିଲେ । ତାଙ୍କର ଅନ୍ୟତମ ପୁତ୍ର କବିରାଜ ଘନଶ୍ୟାମ ମିଶ୍ରଙ୍କ ସହିତ ମୋର ଘନିଷ୍ଠ ବନ୍ଧୁତା ଗଢ଼ି ଉଠିଥିଲା । ତେଣୁ ଭୁବନେଶ୍ୱର ଆସିବାର ବହୁ ପୂର୍ବରୁ ମୁଁ ପ୍ରଫେସର ଡକ୍ଟର ମିଶ୍ରଙ୍କୁ ଜାଣିଥିଲି ।

ଗବେଷଣା କାର୍ଯ୍ୟରେ ଡକ୍ଟର ମିଶ୍ର ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗକୁ ବାରମ୍ବାର ଆସୁଥିଲେ । ପୋଥି ବିଭାଗର ସଂଗ୍ରହାଧକ୍ଷ ଥିବା ପଣ୍ଡିତ ନୀଳମଣି ମିଶ୍ରଙ୍କ ପ୍ରକୋଷ୍ଠରେ ସାର୍‌ଙ୍କ ସହିତ ସାକ୍ଷାତ ଓ ଆଲୋଚନା ହେଉଥିଲା । ଦିନେ ପଣ୍ଡିତ ମହାଶୟଙ୍କ ପ୍ରସ୍ତାବକ୍ରମେ ଡକ୍ଟର ମିଶ୍ରଙ୍କ ଅଧକ୍ଷତାରେ ଓଡ଼ିଶା ସଂସ୍କୃତି ପରିଷଦ ଗଠନ କରିବା ସ୍ଥିର ହେଲା । ଡକ୍ଟର ରବିନାରାୟଣ ଦାଶ, ମୁଁ ଓ ପଣ୍ଡିତ ମିଶ୍ର ଏକାଠି ବସି ପରିଷଦର ସମ୍ବିଧାନ ପ୍ରସ୍ତୁତ କଲୁ । ଡକ୍ଟର କାହ୍ନୁଚରଣ ମିଶ୍ରଙ୍କ ଅଧକ୍ଷତାରେ ଗଠିତ ପ୍ରଥମ ପରିଚାଳନା ସମିତିରେ ଶ୍ରୀଯୁକ୍ତ ଶଶିଭୂଷଣ ମିଶ୍ର, ପଣ୍ଡିତ ନୀଳମଣି ମିଶ୍ର, ଡକ୍ଟର ରବିନାରାୟଣ ଦାଶ, ଡକ୍ଟର ବାସୁଦେବ ସାହୁ, ଡକ୍ଟର ଭଗବାନ ପଣ୍ଡା, ଡକ୍ଟର ଦାଶରଥି ଦାସ, ଶ୍ରୀଯୁକ୍ତ ଚିନ୍ତାମଣି ବେହେରା, ଡକ୍ଟର ରତ୍ନାକର ସାହୁ, ଶ୍ରୀଯୁକ୍ତ ବଳରାମ ଦାସ ସଦସ୍ୟ ଭାବେ ରହିଲେ ଏବଂ ଡକ୍ଟର ଉପେନ୍ଦ୍ରନାଥ ଧଳ ଏହାର ସଂପାଦକ ହେଲେ । କାଳ ବିଳମ୍ବ ନକରି ସାର୍ ପରିଷଦକୁ ୧୯୮୨ ମସିହାରେ ପଞ୍ଜୀକରଣ କଲେ ।

ପରବର୍ତ୍ତୀ ସମୟରେ ଡକ୍ଟର ମହେଶ ପ୍ରସାଦ ଦାଶ, ଡକ୍ଟର କରୁଣା ସାଗର ବେହେରା, ଡକ୍ଟର ବିଜୟାନନ୍ଦ କର, ଡକ୍ଟର ଶରତଚନ୍ଦ୍ର ଶତପଥି, ଡକ୍ଟର ମଧୁରେନ୍ଦ୍ର ପୃଷ୍ଟି, ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ଡକ୍ଟର କୃଷ୍ଣଚରଣ ସାହୁ, ଡକ୍ଟର ଜଗନ୍ନାଥ ଦାଶ ପ୍ରଭୃତି ଏହାର ସଦସ୍ୟ ହେଲେ ଏବଂ ଶ୍ରୀଯୁକ୍ତ ରାଜକିଶୋର ମିଶ୍ର ଏହାର ସଂପାଦକ ହେଲେ । ପରିଷଦର ଶେଷ ଅଧିବେଶନ ୨୬.୮.୨୦୦୨ରେ ଅନୁଷ୍ଠିତ ହୋଇଥିଲା ।

ବିଗତ ୨୦.୭.୧୯୯୯ରେ ଅନୁଷ୍ଠିତ ବୈଠକରେ ପରିଷଦର ଏକ ଉପଦେଷ୍ଟା ମଣ୍ଡଳୀ ଗଠିତ ହୋଇଥିଲା । ସେଥିରେ ଡକ୍ଟର ମନ୍ମଥନାଥ ଦାସ, ଡକ୍ଟର ଗୌରାଙ୍ଗ ଚରଣ ନାୟକ,

ପ୍ରଫେସର ଚନ୍ଦ୍ରଶେଖର ରଥ, ପ୍ରଫେସର ଚିତ୍ତରଞ୍ଜନ ଦାସ, ପ୍ରଫେସର ତ୍ରିଲୋଚନ ମିଶ୍ର, ଡକ୍ଟର ହରିଶ୍ଚନ୍ଦ୍ର ଦାସ, ପ୍ରଫେସର ଅଲେଖଚନ୍ଦ୍ର ଷଡଙ୍ଗୀ, ଶ୍ରୀଯୁକ୍ତ ପ୍ରସନ୍ନ କୁମାର ପଟ୍ଟନାୟକ ଓ ଡକ୍ଟର ଲକ୍ଷ୍ମୀଧର ଶତପଥି ଉପଦେଷ୍ଟା ଭାବେ ମନୋନୀତ ହୋଇଥିଲେ ।

ଓଡ଼ିଶା ସଂସ୍କୃତି ପରିଷଦ ବିଗତ ୧୦.୭.୨୦୦୦ରେ ଏକ ଟ୍ରଷ୍ଟ ବା ନ୍ୟାସ ରୂପେ ଗଠିତ ହେଲା । ଏଥିରେ ଡକ୍ଟର କାହ୍ନୁଚରଣ ମିଶ୍ର, ଡକ୍ଟର ହରପ୍ରସନ୍ନ ମିଶ୍ର, ଡକ୍ଟର କରୁଣା ସାଗର ବେହେରା, ଶ୍ରୀଯୁକ୍ତ ପ୍ରସନ୍ନ କୁମାର ପଟ୍ଟନାୟକ, ଶ୍ରୀଯୁକ୍ତ ରାଜକିଶୋର ମିଶ୍ର, ଡକ୍ଟର ଶରତଚନ୍ଦ୍ର ଶତପଥୀ, ଡକ୍ଟର ମଥୁରେନ୍ଦ୍ର ପୃଷ୍ଟି, ଡକ୍ଟର ଭଗବାନ ପଣ୍ଡା, ପ୍ରଫେସର ଚିନ୍ତାମଣି ବେହେରା ଓ ଡକ୍ଟର ବିଜୟାନନ୍ଦ କର ସଦସ୍ୟ ରହିଲେ । ଏହାର ପ୍ରଥମ ଅଧିବେଶନ ଡକ୍ଟର ମିଶ୍ରଙ୍କ ଅଧକ୍ଷତାରେ ୨୧.୬.୨୦୦୧ରେ ଅନୁଷ୍ଠିତ ହୋଇଥିଲା ।

ବର୍ତ୍ତମାନ ପଞ୍ଜୀକୃତ ଟ୍ରଷ୍ଟର ନିୟମାବଳୀ ଅନୁଯାୟୀ ଓଡ଼ିଶା ସଂସ୍କୃତି ପରିଷଦ ନ୍ୟାସରେ ଶ୍ରୀମତୀ ପ୍ରିୟମ୍ବଦା ମିଶ୍ର ଅଧକ୍ଷା ଅଛନ୍ତି । ଉପର୍ଯ୍ୟୁକ୍ତ ସଦସ୍ୟମାନଙ୍କ ବ୍ୟତୀତ ପ୍ରଫେସର ତ୍ରିଲୋଚନ ମିଶ୍ର ଓ ଶ୍ରୀମତୀ ଜ୍ୟୋତିର୍ମୟୀ ମିଶ୍ର ଏହି ନ୍ୟାସର ସଦସ୍ୟ ଭାବେ କାର୍ଯ୍ୟ କରୁଛନ୍ତି ।

୧୯୮୨ ମସିହାରେ ପଞ୍ଜୀକୃତ ହେବା ପରେ ପରିଷଦର କାର୍ଯ୍ୟ ଆରମ୍ଭ ହେଲା ପ୍ରଥମେ ସାର ଓ ମୁଁ ମିଳିତ ଭାବେ 'ଉତ୍ର ଦେଶ ରାଜବଂଶାବଳୀ' ଗ୍ରନ୍ଥ ସମ୍ପାଦନା କଲୁ । ପରିଷଦ ପକ୍ଷରୁ ଏହା ୧୯୮୩ ମସିହାରେ ପ୍ରକାଶିତ ହେଲା । ଏହାପରେ ପ୍ରାୟ ପ୍ରତିବର୍ଷ ପରିଷଦ ପକ୍ଷରୁ ବିଭିନ୍ନ ପ୍ରସଙ୍ଗ ଉପରେ ଜାତୀୟ ପାଠଚକ୍ରମାନ ଆୟୋଜିତ ହେଲା । ସାଧାରଣତଃ ପରବର୍ତ୍ତୀ ପାଠଚକ୍ର ଆୟୋଜିତ ହେବା ବେଳକୁ ପୂର୍ବ ପାଠଚକ୍ରର ପ୍ରବନ୍ଧଗୁଡ଼ିକ ସଂକଳିତ କରି ପ୍ରକାଶ ପାଇଥିବା ପୁସ୍ତକ ଉନ୍ମୋଚିତ ହେଉଥିଲା । ପରିଷଦ ପକ୍ଷରୁ ଅଦ୍ୟାବଧି ଯେଉଁ ପୁସ୍ତକଗୁଡ଼ିକ ପ୍ରକାଶ ପାଇସାରିଛି । ସେଗୁଡ଼ିକର ନାମ ନିମ୍ନମତେ ଉଲ୍ଲେଖ କରାଗଲା । ୧) ଉତ୍ରଦେଶ ରାଜବଂଶାବଳୀ-୧୯୮୩; ୨) ଓଡ଼ିଶାର କବି ଜୟଦେବ - ୧୯୮୬; ୩) ଭାଗବତ ପରିଚୟ - ୧୯୮୭; ୪) ପୂର୍ବ ଭାରତର ରାମାୟଣ - ୧୯୮୭; ୫) The Ramayana in Eastern India - 1987; ୬) Studies in Bhagabata-1988; ୭) Studies in Mahabharata - 1989; ୮) Studies in the cult of Jagannatha- 1991; ୯) ପୁରୁଷୋତ୍ତମ କ୍ଷେତ୍ର ତତ୍ତ୍ୱ -୧୯୯୧; ୧୦) Studies in Saivisim - 1993; ୧୧) Saura Language Dictionary - 1994; ୧୨) ମହାଭାରତ ପରିଚୟ - ୧୯୯୪; ୧୩) Studies in Saktisim - 1995; ୧୪) Studies in Budhisim -1995; ୧୫) ମହିମାଧର୍ମ - ୧୯୯୮; ୧୬) ସିଦ୍ଧାନ୍ତ ଦର୍ପଣ - ୧୯୯୮ ।

୧୯୯୯ ମସିହା ଏପ୍ରିଲ ମାସରେ ଅନୁଷ୍ଠିତ ହୋଇଥିବା ବୈଷ୍ଣବ ଧର୍ମ ଓ ଦର୍ଶନ ସମ୍ବନ୍ଧୀୟ ପୁସ୍ତକ ଓ ଓଡ଼ିଶାର ବରପୁତ୍ରତ୍ରୟୀ ଶୀର୍ଷକ ଅନ୍ୟ ଏକ ପୁସ୍ତକ ବର୍ତ୍ତମାନ ମୁଦ୍ରଣାଧୀନ ଅଛି ।

ଓଡ଼ିଶା ସଂସ୍କୃତି ପରିଷଦ ପ୍ରତିଷ୍ଠା, ଡକ୍ଟର ମିଶ୍ରଙ୍କର ଓଡ଼ିଶା ପ୍ରତି ଏକ ଅବଦାନ । କାରଣ ମାତ୍ର ଅଠରବର୍ଷ ମଧରେ ଏହି ଅନୁଷ୍ଠାନ ଐତିହ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏପରି ଗୁରୁତ୍ୱପୂର୍ଣ୍ଣ ସାରସ୍ୱତ କାର୍ଯ୍ୟମାନ କରିଛି ତାର ପଟାନ୍ତର ନାହିଁ । ଏଥିରୁ ଗବେଷଣା କାର୍ଯ୍ୟ ପ୍ରତି ଡକ୍ଟର ମିଶ୍ରଙ୍କର ଅହେତୁକ ଆଗ୍ରହ, ଶ୍ରଦ୍ଧା, ସଦିଚ୍ଛା ଓ ନିରନ୍ତର ଉଦ୍ୟମର ସୂଚନା ମିଳେ । ପାଠଚକ୍ରଟିଏ ଆୟୋଜନ କରିବା ପାଇଁ ଦିନ ସ୍ଥିର ହେବା ଠାରୁ ତାର ଉଦ୍‌ଯାପନ ପର୍ଯ୍ୟନ୍ତ ସାର୍ ଦିନରାତି ଯେପରି ଅକ୍ଳାନ୍ତ ପରିଶ୍ରମ କରନ୍ତି, ଓଡ଼ିଶା ତଥା ଓଡ଼ିଶା ବାହାରର ଗବେଷକମାନଙ୍କ ସହିତ ଯୋଗାଯୋଗ ତଥା ବହିରାଗତ ବିଦ୍ୱାନମାନଙ୍କ ଆତିଥ୍ୟ ଓ ଗମନାଗମନ ବ୍ୟବସ୍ଥା କରନ୍ତି ଏବଂ ଆମ୍ଭମାନଙ୍କ ସକ୍ରିୟ ସହଯୋଗରେ ଆଲୋଚନାଚକ୍ରଟିକୁ ସର୍ବତୋ ଭାବେ ସାଫଲ୍ୟମଣ୍ଡିତ କରନ୍ତି ତାହା ଡକ୍ଟର ମିଶ୍ରଙ୍କର ଗବେଷଣା ପ୍ରତି ଥିବା ଆନ୍ତରିକତାର ପ୍ରମାଣ ଦିଏ । ଏହିସବୁ କାର୍ଯ୍ୟରେ ସାର୍ କେତେ ଯେ ଆନନ୍ଦିତ ହୁଅନ୍ତି ତାହା ଭାଷାରେ ପ୍ରକାଶ କରିହେବ ନାହିଁ ।

ଡକ୍ଟର ମିଶ୍ରଙ୍କର ମହତ୍ତ୍ୱପୂର୍ଣ୍ଣ ଅବଦାନ ହେଲା ତାଙ୍କ ପ୍ରଣୀତ The cult of Jagannath ଗ୍ରନ୍ଥ । ଏହି ନିବନ୍ଧଟି ଲେଖି ସେ ୧୯୬୫ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଉପାଧି ଲାଭ କରିଥିଲେ । ଏହାର ପ୍ରଥମ ସଂସ୍କରଣ କଲିକତାର ଫାର୍ମା କେ.ଏଲ. ମୁଖୋପାଧ୍ୟାୟ ପ୍ରକାଶନ ସଂସ୍ଥା ଦ୍ୱାରା ୧୯୭୧ରେ ପ୍ରକାଶ ପାଇଥିଲା । ଏହି ଗ୍ରନ୍ଥ ମାଧମରେ ଶ୍ରୀ ଜଗନ୍ନାଥ ସଂସ୍କୃତି ଓ କବିରାଜ ଜୟଦେବ ଓଡ଼ିଶାର କବି ବୋଲି ବିଶ୍ୱ ଦରବାରରେ ପରିଚିତ କରାଇବାରେ ଡକ୍ଟର ମିଶ୍ର ହିଁ ଥିଲେ ପ୍ରଥମ ଓଡ଼ିଆ ଗବେଷକ । ଏହି ଗ୍ରନ୍ଥରେ (ପୃ୫୫-୫୮) କବି ଜୟଦେବ ଓଡ଼ିଶାର ପ୍ରାଚୀ ତୀରବର୍ତ୍ତୀ କେନ୍ଦୁଲିରେ ଜନ୍ମ ହୋଇଥିଲେ ବୋଲି ସ୍ପଷ୍ଟ ଭାଷାରେ ସେ ଉଲ୍ଲେଖ କରିଛନ୍ତି । ଏଠାରେ ସୂଚନା ଦେବା ଅପ୍ରାସଙ୍ଗିକ ହେବ ନାହିଁ ଯେ, ପୂର୍ବୋକ୍ତ ନିବନ୍ଧର ନିର୍ଦ୍ଦେଶକ ଥିଲେ କଲିକତା ବିଶ୍ୱବିଦ୍ୟାଳୟର ବିଖ୍ୟାତ ପ୍ରଫେସର ଡକ୍ଟର ଜିତେନ୍ଦ୍ରନାଥ ବାନାର୍ଜି (ବନ୍ଦୋପାଧ୍ୟାୟ) ଏବଂ ପ୍ରକାଶିତ ଗ୍ରନ୍ଥର ମୁଖବନ୍ଧ ଲେଖିଛନ୍ତି ଜାତୀୟ ପ୍ରଫେସର ଡକ୍ଟର ସୁନୀତି କୁମାର ଚାଟାର୍ଜୀ । ଓଡ଼ିଶାର କବି ଜୟଦେବ ଶୀର୍ଷକ ପୁସ୍ତକ ପ୍ରକାଶ ପାଇବା ପରେ ଯେଉଁ ତଥାକଥିତ ଓଡ଼ିଆ ଗବେଷକମାନେ ଅସନ୍ତୋଷ ପ୍ରକାଶ କରୁଥିଲେ ସେମାନଙ୍କ ପାଇଁ ଏତକ ସୂଚନା ଦେବା ଯଥେଷ୍ଟ ବୋଲି ମନେ ହୁଏ ।

ଶ୍ରୀମଦ୍ ଭାଗବଦ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି-

ନିୟତଂ କୁରୁ କର୍ମତ୍ୱଂ ଜ୍ୟାୟୋ ହ୍ୟକର୍ମଣଃ ।
ଶରୀରଯାତ୍ରାପି ଚ ତେନ ପ୍ରସିଦ୍ଧ୍ୟେଦକର୍ମଣଃ ।। ୩-୮

ଅର୍ଥାତ ତୁମେ ଶାସ୍ତ୍ର ବିହିତ କର୍ତ୍ତବ୍ୟ କର୍ମକର, କାରଣ କର୍ମ ନ କରିବାଠାରୁ କର୍ମ କରିବା ଶ୍ରେୟସ୍କର । କାରଣ, କର୍ମ ନକଲେ ତୁମର ଶରୀର ଯାତ୍ରା ମଧ୍ୟ ସିଦ୍ଧ ହୋଇପାରିବ ନାହିଁ । ଡକ୍ଟର ମିଶ୍ର ସାରା ଜୀବନ ଗୀତାର ଏହି ବାଣୀକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ତେଣୁ ସେ ସର୍ବଦା ଚଳଚଞ୍ଚଳ ଥିଲେ ଏବଂ ହସହସ ମୁଖରେ ସମସ୍ତ କାର୍ଯ୍ୟ ଦ୍ୱିଗୁଣ ଉତ୍ସାହରେ ସମ୍ପାଦନ କରିବା ସଙ୍ଗେ ସଙ୍ଗେ ସହକର୍ମୀ ଓ ପ୍ରିୟ ଛାତ୍ରମାନଙ୍କୁ ସାରସ୍ୱତ କାର୍ଯ୍ୟରେ ପ୍ରଚୋଦିତ କରି ପାରୁଥିଲେ । ଯେତେ ଅସୁବିଧା ଥିଲେ ବି ତାଙ୍କର ସସ୍ନେହ ଅନୁରୋଧକୁ କେହି ଏଡ଼େଇ ଯାଉନଥିଲେ । ଏହା ହିଁ ତାଙ୍କ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ଥିଲା ।

ଡକ୍ଟର ମିଶ୍ର ଇହଲୀଳା ସମ୍ବରଣ କରିବାର ବର୍ଷଟିଏ ପୂରିଗଲା । କିନ୍ତୁ ଏବେ ବି ସାର୍ ଉତ୍ତରୀୟ ସହିତ ଶୁଭ୍ରବସ୍ତ୍ର ପରିଧାନ କରି ହସହସ ମୁଖରେ ଚଞ୍ଚଳ ଗତିରେ ଯିବା ଆସିବା କରୁଥିବାର ଦୃଶ୍ୟ ଆଖି ଆଗରେ ଭାସିଯାଉଛି । ସାର୍‌ଙ୍କର ମମତାସିକ୍ତ ନାମସମ୍ବୋଧନ ଓ ପ୍ରୀତିପୂର୍ଣ୍ଣ ଆଲୋଚନା ମୋର କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେଉଛି । ସାର୍ ଯେ ଦିବ୍ୟଗତି ଲାଭ କରିଛନ୍ତି ସେଥିରେ ସନ୍ଦେହ ନାହିଁ । ଦିବ୍ୟ ଧାମରୁ ସାର୍‌ଙ୍କର ଆଶିର୍ବାଦଧାରା ଝରିଆସୁ ଏହା ହିଁ ଶ୍ରୀ ଜଗନ୍ନାଥଙ୍କ ଠାରେ ପ୍ରାର୍ଥନା ।

■■

# ପ୍ରଫେସର କାହ୍ନୁଚରଣ ମିଶ୍ରଃ ଏକ ଶ୍ରଦ୍ଧା ନିବେଦନ

*- ଗଗନେନ୍ଦ୍ର ନାଥ ଦାଶ*

ପୂଜନୀୟ ପ୍ରଫେସରର କାହ୍ନୁଚରଣ ମିଶ୍ର ଏକ ଅନନ୍ୟ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ମୁଁ ସ୍ନାତକ ଶ୍ରେଣୀରେ ତାଙ୍କର ଛାତ୍ର ଥିଲି । ପୁଣି ପରବର୍ତ୍ତୀ କାଳରେ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଥିବାବେଳେ ମୁଁ ସେ ବିଭାଗରେ ପ୍ରାଧ୍ୟାପକ ଭାବରେ ଯୋଗ ଦେଇ ତାଙ୍କ ଅଧୀନରେ କେତେ ବର୍ଷ କାମ କରିବାର ସୁଯୋଗ ପାଇଥିଲି । ତେଣୁ ମୁଁ ତାଙ୍କୁ ଅତି ନିକଟରେ ଦେଖିବାର ସୁଯୋଗ ପାଇଥିଲି; ଆଉ ସେ ସୁଯୋଗ ସେ ମତେ ଦେଇଥିଲେ । ଏପରି ବ୍ୟକ୍ତିତ୍ୱ ସମ୍ପନ୍ନ ମଣିଷ ଆମ ସମାଜରେ ବାସ୍ତବିକ ବିରଳ । ସେଇ ଅଳ୍ପ ଉଚ୍ଚତା ବିଶିଷ୍ଟ, ସୌମ୍ୟ ବପୁ ମଣିଷଟିର ଢୁଙ୍ଗିମା କଳନା କରିବା ମଧ୍ୟ ଆଦୌ ସହଜ ନୁହେଁ । ତାଙ୍କରି ଆଶୀର୍ବାଦରୁ ମୁଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ପ୍ରାଧ୍ୟାପକ ଭାବରେ ଯୋଗ ଦେଇଥିଲି । ତାଙ୍କର ବ୍ୟକ୍ତିତ୍ୱ ହିଁ ମତେ ଶାନ୍ତି ନିକେତନରୁ ଆକର୍ଷଣ କରି ବ୍ରହ୍ମପୁର ଆଣିଥିଲା । ତାଙ୍କ ସହାୟତା, ସହାନୁଭୂତି, ଉତ୍ସାହ ଓ ଉପଦେଶ ବିନା ବ୍ରହ୍ମପୁରରେ ମୋର ସ୍ଥିତି ବିପନ୍ନ ହେବାର ଆଶଙ୍କା ମଧ୍ୟ ଥିଲା । ତେଣୁ ତାଙ୍କ ସମ୍ପର୍କରେ କିଛି କହିବା ସମୟରେ ମୋର ଭାବ ପ୍ରବଣତା ଜାତ ହେବା ସ୍ୱାଭାବିକ ।

ତାଙ୍କ ପରି ଉଦାରମନା ବ୍ୟକ୍ତି ଖୁବ୍ କମ୍ ଦେଖିବା ପାଇଁ ମିଳନ୍ତି । ନିଷ୍କପଟ ଖୋଲା ଲୋକ । ତାଙ୍କର ତେଣୁ ଭିତର ବାହାର ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନଥିଲା । ତାଙ୍କର ରାଗ ଥିଲା ସ୍ୱଳ୍ପାୟୁ; କାହା ଉପରେ ରାଗିଲେ ତା ଅଳ୍ପ ସମୟ ପରେ ପାଣି ଫୋଟକା ଫାଟିଗଲା ପରି ଫାଟିଯାଏ । ପୁଣି ତାଙ୍କର ଅଧର ହୋଇଉଠେ ହାସ୍ୟଧୌତ ।

କେହି ପ୍ରତିକୂଳ ସମାଲୋଚନା କଲେ ସେ ସେଥିରେ ବିବ୍ରତ ହୁଅନ୍ତି ନାହିଁ, ସେହିପରି ସମାଲୋଚକଙ୍କ ପ୍ରତି ମଧ୍ୟ । ସେ ସମାଲୋଚକ ବୟସରେ ବା ପଦ ମର୍ଯ୍ୟାଦାରେ ବଡ଼ ବା ଛୋଟ ହୋଇଥିଲେ ମଧ୍ୟ ତାଙ୍କର ପ୍ରତିକ୍ରିୟା ସମାନ ରହେ । ମୁଁ ବେଳେବେଳେ ତାଙ୍କୁ କେତେକ ଅପ୍ରିୟ କଥା କହିଛି । କିନ୍ତୁ ତାକୁ ସେ କେବେ ମନରେ ଧରିନାହାନ୍ତି । ‘‘ବରଂ ଗଗନ ବଡ଼

ତେଜୀ ପିଲା ଯାହା କୁହେ ତା ଆଗରେ କୁହେ । କିନ୍ତୁ ପଛରେ ଷଡ଼ଯନ୍ତ୍ର କରେ ନାହିଁ । ତେଣୁ ତାକୁ ମୁଁ ଭଲପାଏ ।'' ବୋଲି ଅନ୍ୟମାନଙ୍କ ଆଗରେ କହିଥିବା ମୁଁ ପରୋକ୍ଷରେ ଶୁଣିଛି । ଏପରି ଉଦାରମନା ବ୍ୟକ୍ତି ସତରେ ବିରଳ ।

ସେ ଓଡ଼ିଶା ବାହାରେ, ବଙ୍ଗ ପ୍ରଦେଶରେ କଲିକତାରେ ତାଙ୍କର ଛାତ୍ର ଜୀବନ ଅତିବାହିତ କରିଥିଲେ । ସେତେବେଳେର ବଙ୍ଗ ପ୍ରଦେଶ ଓ ବିଶେଷ ଭାବରେ କଲିକତା ଜ୍ଞାନ ବିଜ୍ଞାନ ଚର୍ଚ୍ଚାରେ ସାରା ଭାରତର କାହିଁକି ବିଶ୍ୱରେ ମଧ ଖ୍ୟାତି ଲାଭ କରିଥିଲା । ସେଠାରେ ରହୁଥିଲେ ବହୁ ପ୍ରସିଦ୍ଧ ବିଦ୍ୱାନ । ସେମାନଙ୍କ ନିକଟବର୍ତ୍ତୀ ହେବାର, ସେମାନଙ୍କୁ ଅତି ନିକଟରୁ ଦେଖିବାର ଓ ଏପରି କି ସେମାନଙ୍କ ମଧ୍ୟରୁ କେତେକଙ୍କ ସହ ଘନିଷ୍ଠ ହେବାର ସୁବର୍ଣ୍ଣ ସୁଯୋଗ ସେ ପାଇଥିଲେ । ତେଣୁ ସେଠାକାର ଛାତ୍ର ଜୀବନ ତାଙ୍କର ଜ୍ଞାନର ଦିଗନ୍ତକୁ ଯେପରି ପ୍ରସାରିତ କରିପାରିଥିଲା ସେହିପରି ତା ଓଡ଼ିଶା ଭାଷାଭାଷୀ ଅଞ୍ଚଳର ବାହାରେ ଥିବାରୁ ତାଙ୍କର ମନକୁ ମଧ କରିଥିଲା ଉଦାର । ତେଣୁ ତାଙ୍କର ସମସାମୟିକ ବହୁ ଓଡ଼ିଆ ବିଦ୍ୱାନମାନଙ୍କ ମଧ୍ୟରେ, ବିଶେଷ ଭାବରେ ପ୍ରଫେସରମାନଙ୍କ ମଧ୍ୟରେ, ସେ ଥିଲେ ଏକ ବ୍ୟତିକ୍ରମ, ଏକ ସ୍ୱତନ୍ତ୍ର ଦୃଷ୍ଟିକୋଣର ଅଧିକାରୀ । ପୁଣି ସ୍ୱାଧୀନତାର ପୂର୍ବବର୍ତ୍ତୀ କାଳୀନ ବଙ୍ଗ ପ୍ରଦେଶରେ, ବିଶେଷ ଭାବରେ କଲିକତାର ଉଗ୍ର ଜାତୀୟତାବାଦ ବାୟୁମଣ୍ଡଳରେ ଅତିବାହିତ ହୋଇଥିବା ତାଙ୍କ ଛାତ୍ର ଜୀବନର ପ୍ରଭାବ ମଧ ଥିଲା ସୁଦୂରପ୍ରସାରୀ । (ଏଠାରେ ସୂଚାଇ ଦେବା ଉଚିତ ହେବ ଯେ ସେ ଛାତ୍ରାବସ୍ଥାରେ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରିଥିଲେ ତଥା ସେ ଦିନରୁ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଖଦଡ଼ ପରିଧାନ କରୁଥିଲେ ।) ତାହା ତାଙ୍କ ଓଡ଼ିଆ ସାହିତ୍ୟ, ସଂସ୍କୃତି ଚର୍ଚ୍ଚାକୁ, ତାଙ୍କ ଗବେଷଣାକୁ ମଧ ପ୍ରଭାବିତ କରିଥିଲା । ତେଣୁ ତାଙ୍କ ସମସାମୟିକ ବହୁ ବିଶିଷ୍ଟ ବିଦ୍ୱାନମାନଙ୍କ ପରି (ପ୍ରଖ୍ୟାତ ଐତିହାସିକ ରମେଶଚନ୍ଦ୍ର ମଜୁମଦାରଙ୍କ ନାମ ଏ ପ୍ରସଙ୍ଗରେ ସ୍ମରଣୀୟ) ଓଡ଼ିଆ ସାହିତ୍ୟ, ସଂସ୍କୃତି ଚର୍ଚ୍ଚା କ୍ଷେତ୍ରରେ ଓ ଗବେଷଣା ପ୍ରସଙ୍ଗରେ ସେ ଥିଲେ ମୁଖ୍ୟତଃ ଜାତୀୟତାବାଦୀ ଓ ପରମ୍ପରାବାଦୀ । ତେଣୁ ସେ ପ୍ରସଙ୍ଗରେ ଅନେକ ସମୟରେ ତାଙ୍କ ସହ ମୋର ମତର ଅମେଳ ମଧ ଘଟୁଥିଲା । ଉଦାହରଣ ସ୍ୱରୂପ ସେ 'ବିଦଗ୍ଧ ଚିନ୍ତାମଣୀ'କୁ ମଧ୍ୟଯୁଗୀୟ କାବ୍ୟ ପରମ୍ପରାର ଶ୍ରେଷ୍ଠ କାବ୍ୟ ବୋଲି ମନେ କରୁଥିଲେ । (ଉଭୟ ସ୍ନାତକ ଓ ସ୍ନାତକୋତ୍ତର ଶ୍ରେଣୀରେ ସେ 'ବିଦଗ୍ଧ ଚିନ୍ତାମଣି' ପଢ଼ାଇବାକୁ ସୁଖ ପାଉଥିଲେ । ଆଉ ବିଦଗ୍ଧ କବି ଅଭିମନ୍ୟୁଙ୍କ ଉପରେ ସେ ଲେଖିଥିବା ପୁସ୍ତକ ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ପୁରସ୍କାର ଲାଭ କରିଛି ।) ମୁଁ କିନ୍ତୁ 'ବିଦଗ୍ଧ ଚିନ୍ତାମଣି'କୁ ଏକ ଅସଫଳ ମହାକାବ୍ୟ ବୋଲି ମନେ କରେ । ସେହିପରି ଜୟଦେବଙ୍କ ପ୍ରସିଦ୍ଧ 'ଗୀତ ଗୋବିନ୍ଦ' କାବ୍ୟକୁ ସେ ଏକ ଅତି ଉଚ୍ଚମାନର

ସାହିତ୍ୟ କୃତି ତଥା ଆଂଶିକ ଭାବରେ ଏକ ଆଧାତ୍ମିକ ଗ୍ରନ୍ଥ ବୋଲି ମନେ କରୁଥିଲେ । ଏ ପ୍ରସଙ୍ଗରେ ମଧ୍ୟ ମୁଁ ତାଙ୍କ ସହ ଏକ ମତ ନଥିଲି । ମୋର ଏଇ ସବୁ ଭିନ୍ନ ମତକୁ ସେ ଆଦୌ ଗ୍ରହଣ କରୁନଥିଲେ ମଧ୍ୟ ମୋ ସହ ତାଙ୍କ ବ୍ୟକ୍ତିଗତ ସମ୍ପର୍କକୁ ତା ଆଦୌ ମଳିନ କରିପାରିନଥିଲା । ଏଠାରେ ଏ ପ୍ରସଙ୍ଗରେ କହି ରଖିବା ଆବଶ୍ୟକ ଯେ ପଣ୍ଡିତ ନୀଳକଣ୍ଠଙ୍କ ପ୍ରତି ତାଙ୍କର ଅତ୍ୟଧିକ ସମ୍ମାନବୋଧ ଓ ଶ୍ରଦ୍ଧ ଥିବା ସତ୍ତ୍ୱେ ତାଙ୍କ ଅଭିମତକୁ ସେ ସର୍ବଦା ଗ୍ରହଣ କରୁନଥିଲେ । ମୋଟ ଉପରେ ବିଦ୍ୟାଚର୍ଚ୍ଚାରେ ଭିନ୍ନ ମତବାଦର ଊର୍ଦ୍ଧ୍ୱରେ ରହୁଥିଲା ତାଙ୍କ ବ୍ୟକ୍ତିଗତ ସମ୍ପର୍କ । ଅବଶ୍ୟ ମୋର ଏଇ ସବୁ ଭିନ୍ନ ମତବାଦ ପାଇଁ ସେ ମତେ କେଉଁଠି କେଉଁଠି 'କଳା ପାହାଡ' ଅଭିଧାରେ ଅଭିହତ କରିଥିବା ମଧ୍ୟ ମୁଁ ପରୋକ୍ଷରେ ଶୁଣିଛି । କିନ୍ତୁ ଏହା ଜାଣି ମୁଁ ଆଦୌ କ୍ଷୁବ୍ଧ ହୋଇନାହିଁ, ବରଂ ଆମୋଦିତ ହୋଇଛି ଓ ସେ ଅଭିଧାକୁ ଆଦରର ସହ ଗ୍ରହଣ କରିଛି । କାରଣ ସେ ଜାତୀୟତାବାଦୀ ହୋଇଥିବାରୁ ସେ ମତେ ଏଇ ଦୃଷ୍ଟିରେ ଦେଖିବା ଥିଲା ତାଙ୍କ ପକ୍ଷରେ ଅତ୍ୟନ୍ତ ସ୍ୱାଭାବିକ ଆଉ ପ୍ରତ୍ୟାଶିତ । ତା ସତ୍ତ୍ୱେ ମୋର ଗବେଷଣା ସମ୍ପର୍କରେ ସେ ଅତି ଉଚ୍ଚ ଧାରଣାପୋଷଣ କରୁଥିବା ମଧ୍ୟ ମୁଁ ଜାଣେ । ତେଣୁ ସେ କଥା ସ୍ମରଣ କଲେ ଆଜି ମୋର ମସ୍ତକ ଶ୍ରଦ୍ଧାରେ ଅବନତ ହୋଇଯାଏ । ତାଙ୍କର ଜାତି ପ୍ରୀତି ଯଥାର୍ଥରେ ବନ୍ଦନୀୟ ଓ ଅନୁକରଣୀୟ ।

ତାଙ୍କର ଓଡ଼ିଆ ସାହିତ୍ୟ ସଂସ୍କୃତି- ଚର୍ଚ୍ଚା ବହୁଦିଗ- ସମନ୍ୱିତ; ତାର ପରିସର ବ୍ୟାପକ ଓ ଥିଲା ବିପୁଳ । ସେ କ୍ଷେତ୍ରରେ ତାଙ୍କ ଅବଦାନର କଳନା କରିବା ସହଜ ନୁହେଁ । ଓଡ଼ିଆ ସାହିତ୍ୟ ସମାଲୋଚନା କ୍ଷେତ୍ରକୁ ସେ ବହୁ ମନ୍ତେ ଋଦ୍ଧିମନ୍ତ କରିଛନ୍ତି । ତାଙ୍କର ''ସାହିତ୍ୟ ସମୀକ୍ଷା'' ଓ ''ଆଲୋଚନାମାଳା'' ପୁସ୍ତକ ଦୁଇଟି ଯେତେବେଳେ ଆତ୍ମ ପ୍ରକାଶ କଲା ତା ସେତେବେଳର ସାହିତ୍ୟ ପ୍ରେମୀଙ୍କ ମଧ୍ୟରେ ବେଶ ଆଲୋଚନା ସୃଷ୍ଟି କରିଥିଲା । ସେତେବେଳେ ଓଡ଼ିଆ ସାହିତ୍ୟ ଉପରେ ଖୁବ୍ କମ ସମାଲୋଚନା ପୁସ୍ତକ ଲେଖାଯାଉଥିଲା । ତେବେ ସେ କ୍ଷେତ୍ରରେ ତାଙ୍କର ସର୍ବଶ୍ରେଷ୍ଠ ଅବଦାନ ହେଉଛି ଜଗନ୍ନାଥ ଧର୍ମ ଓ ସଂସ୍କୃତି ସମ୍ପର୍କୀୟ ଗବେଷଣା ଏହି ଗବେଷରାର ଫଳ ହେଉଛି **The Cult of Jagannath** ପୁସ୍ତକ । ଏ ପୁସ୍ତକ ଲେଖା ହେବା ପୂର୍ବରୁ ଜଗନ୍ନାଥ ଧର୍ମ ଓ ସଂସ୍କୃତିର ସାମଗ୍ରିକତାକୁ ଧରି ରଖିଥିବା କିନ୍ତୁ ବୈଜ୍ଞାନିକ ରୀତିରେ ଲିଖିତ କୌଣସି ପ୍ରାମାଣିକ ପୁସ୍ତକ ନଥିଲା । ଜଗନ୍ନାଥ ଧର୍ମ ଓ ସଂସ୍କୃତି ସମ୍ପର୍କରେ ବହୁ ଅଜ୍ଞାତ ଓ ପ୍ରାମାଣିକ ତଥ୍ୟରେ ସମୃଦ୍ଧ ଏ ପୁସ୍ତକ ସେ ଅଭାବକୁ ଦୂର କରିଥିଲା । ତେଣୁ ପରବର୍ତ୍ତୀ କାଳରେ ଜଗନ୍ନାଥ ଧର୍ମ ଓ ସଂସ୍କୃତି ସମ୍ପର୍କରେ ଗବେଷଣା କରିବା ପାଇଁ ଏ ପୁସ୍ତକ ହୋଇଯାଇଛି ମୂଳ ଭିତ୍ତି ବା ମୁଖଶାଳା ସ୍ୱରୂପ; ଗବେଷକମାନଙ୍କ ପ୍ରଧାନ ଅବଲମ୍ବନ । ପୁଣି ଇଂରାଜୀରେ ଲିଖିତ ପୁସ୍ତକ ସାରା ଭାରତରେ କାହିଁକି, ଭାରତ

ବାହାରେ ମଧ୍ୟ ବିଦ୍ୱାନମାନଙ୍କ ଦ୍ୱାରା ଆଦୃତ ଓ ଉଚ୍ଚ ପ୍ରଶଂସିତ । ତାଙ୍କର ବିଦବତ୍ତା ଲାଭ କରିଛି ଆନ୍ତର୍ଜାତୀୟ ସ୍ୱୀକୃତି । ଏ ପୁସ୍ତକ ପାଇଁ ସେ ଆଜି ବିଶ୍ୱର ବିଶିଷ୍ଟ ବିଦ୍ୱାନମାନଙ୍କ ମଧ୍ୟରେ ଜଣେ ହୋଇ, ସେମାନଙ୍କ ସହ ଏକ ଆସନରେ ସମାସୀନ ହୋଇ ଓଡ଼ିଶାବାସୀଙ୍କୁ ଗୌରବାନ୍ୱିତ ଓ ଗର୍ବିତ କରିଛନ୍ତି ।

ଓଡ଼ିଶାର ସାହିତ୍ୟ ସଂସ୍କୃତି କ୍ଷେତ୍ରକୁ ତାଙ୍କର ଅନ୍ୟ ଏକ ବିଶିଷ୍ଟ ଅବଦାନ ହେଉଛି ଓଡ଼ିଶା ସଂସ୍କୃତି ପରିଷଦର ପ୍ରତିଷ୍ଠା । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଅବସର ଗ୍ରହଣ କରିବା ପରେ ସେ ଏଇ ଅନୁଷ୍ଠାନର ପ୍ରତିଷ୍ଠା କରିଥିଲେ । ପ୍ରାୟ ପ୍ରତିବର୍ଷ ଏଇ ଅନୁଷ୍ଠାନ ପକ୍ଷରୁ ଓଡ଼ିଶାର ସାହିତ୍ୟ ସଂସ୍କୃତି ବିଷୟକ ପ୍ରବନ୍ଧ ପାଠ ଓ ଆଲୋଚନାଚକ୍ରମାନ ଅନୁଷ୍ଠିତ ହେଉଥିଲା । ଏଥିରେ ଯୋଗ ଦେବା ପାଇଁ ସେ ଓଡ଼ିଶାର ଓ ଓଡ଼ିଶା ବାହାରର ବିଶିଷ୍ଟ ବିଦ୍ୱାନ ଓ ତତ୍ତ୍ୱବିତ୍‌ମାନଙ୍କୁ ନିମନ୍ତ୍ରଣ କରୁଥିଲେ । ସେ କାରଣରୁ ଏ ଆଲୋଚନାଚକ୍ରମାନଙ୍କରେ ଆଲୋଚନାର ମାନ ଉନ୍ନତ ଥିଲା । କେବଳ ସେତିକି ନୁହେଁ ଏଥିରେ ଉପସ୍ଥାପିତ ପ୍ରବନ୍ଧସବୁ ସମ୍ପୁସମ୍ପାଦିତ ହୋଇ ପୁସ୍ତକ ଆକାରରେ ପ୍ରକାଶିତ ହେଉଥିଲା । ବର୍ଷ ବର୍ଷ ଧରି ଆମରଣ ଧାରାବାହିକ ଭାବରେ ସେ ପ୍ରାୟ ଏକକ ଉଦ୍ୟମରେ ଏ କାର୍ଯ୍ୟକୁ ସୁଚାରୁ ରୂପେ ଚଳାଇ ରଖିଥିଲେ । ଏହା ଫଳରେ ଓଡ଼ିଶା ସାହିତ୍ୟ ସଂସ୍କୃତି ଚର୍ଚ୍ଚାର ବାଟ ବହୁ ଭାବରେ ସୁଗମ ହୋଇଥିଲା । ଏହା ବ୍ୟତୀତ ଆହୁରି କେତେକ ପୁସ୍ତକ ମଧ୍ୟ ଏ ଅନୁଷ୍ଠାନ ଦ୍ୱାରା ପ୍ରକାଶିତ ହୋଇଛି । ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ବିଶ୍ୱ ଦରବାରରେ ପରିଚିତ କରିବା ପାଇଁ ଏ ଉଦ୍ୟମ ବାସ୍ତବିକ ଅବିସ୍ମରଣୀୟ । ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗଗୁଡ଼ିକ ମଧ୍ୟ ଏପରି ଉଦ୍ୟମ କରିପାରିନାହାନ୍ତି ।

ଓଡ଼ିଆ ସାହିତ୍ୟ ସଂସ୍କୃତି ଚର୍ଚ୍ଚା କ୍ଷେତ୍ରରେ ପ୍ରଫେସର କାହ୍ନୁଚରଣ ମିଶ୍ରଙ୍କ ନାମ ଚିରଦିନ ପାଇଁ ଉଜ୍ଜ୍ୱଳ ରହିବ ।

■■

# ପ୍ରାବନ୍ଧିକ କାହ୍ନୁଚରଣଙ୍କ ଦୃଷ୍ଟିରେ 'ଧର୍ମଧାରା' ଏକ ବିହଙ୍ଗାବଲୋକନ

- ହରିହର ମିଶ୍ର

ଧର୍ମ ହେଉଛି ପ୍ରକୃତ ପ୍ରେମ ସ୍ୱରୂପ ଯାହା କାଳକ୍ରମେ ବିକଶିତ ଓ ବିସ୍ତାରିତ ହୋଇ ସୃଷ୍ଟି ଲାଭ କରିଥାଏ । ଧର୍ମର ରୂପ ଦ୍ୱିବିଧ ବହିଃ ଓ ଅନ୍ତଃ । ଧର୍ମର ବହିଃରୂପ ଆଚାର ଓ ଅନୁଷ୍ଠାନ ପଦ୍ଧତି ମଧ୍ୟରେ ଆବଦ୍ଧ । ମାତ୍ର ତା'ର ଅନ୍ତଃରୂପ ସାର୍ବଜନୀନ ଧର୍ମର ଅନ୍ତରାତ୍ମା ପ୍ରତି ଲକ୍ଷ୍ୟ କଲେ ଜଣାଯାଏ ଯେ ପୃଥିବୀର ପ୍ରତ୍ୟେକ ଧର୍ମର ଉଦ୍ଦେଶ୍ୟ ଏକ ଓ ଅଭିନ୍ନ । ମାନବ ସମାଜ ମଧ୍ୟରେ ମୈତ୍ରୀ ଓ ମଙ୍ଗଳ ବିତରଣ କରିବା ହେଉଛି ଏହାର ମୌଳିକ ଲକ୍ଷ୍ୟ । ସତ୍ୟର ସନ୍ଧାନ ଓ ତାର ଉପଲବ୍ଧି ଏବଂ ବିଶ୍ୱଜନୀନ ପ୍ରାପ୍ତି ହିଁ ଧର୍ମର ସାର ବା ନିର୍ଯାସ ।

ଧର୍ମକୁ 'Religion' ବୋଲି ଇଂରାଜୀରେ କୁହାଯାଉଛି । ଏହା ଧର୍ମର ଏକ ସଂକୀର୍ଣ୍ଣ ପରିଚୟ । ଡଃ ରାଧା କ୍ରିଷ୍ଣନଙ୍କ ମତରେ "Religion which make for division, discord as disintegration and do not foster unity understanding and cohorence, play into the hands of the opponents'– ଅନେକ ସମୟରେ ଧର୍ମପ୍ରଚାର ସଂକୀର୍ଣ୍ଣତାର ପାଚେରୀ ଅତିକ୍ରମ କରି ନପାରି କୁସଂସ୍କାର ତଥା ଅନ୍ଧ ବିଶ୍ୱାସକୁ ପ୍ରଶୟ ଦେଇ ଜନକଲ୍ୟାଣ ନିମିତ୍ତ ଉଦ୍ଦିଷ୍ଟ ଧର୍ମକୁ ଲକ୍ଷ୍ୟଚ୍ୟୁତ କରିଛି । ତେଣୁ ଏକାଧାରରେ ଧର୍ମ ମହିମାନ୍ୱିତ ହେଲେ ବି କଳଙ୍କିତ ହୋଇ ଉଠିବା ବିଚିତ୍ର ଘଟଣା ନୁହେଁ । କିନ୍ତୁ ମନ୍ଦ ଉଦ୍ଦେଶ୍ୟ ନେଇ ତ କୌଣସି ଧର୍ମର ସୃଷ୍ଟି ହେବା ସମ୍ଭବ ନୁହେଁ ବରଂ ମନ୍ଦ ଶକ୍ତିକୁ ବିନାଶ କରି ସଦ୍‌ଶକ୍ତିର ସଂରକ୍ଷଣ କରିବା ଧର୍ମର ମୁଖ୍ୟ କର୍ମ ବୋଲି ଭଗବତ କହିବା ବାହୁଲ୍ୟ ଓଡ଼ିଆ ସାହିତ୍ୟର ପରମ୍ପରାରେ ଧର୍ମ ସାହିତ୍ୟ ହିଁ କେବଳ ସୃଷ୍ଟି ହୋଇଛି । ବୌଦ୍ଧ ଧର୍ମ ବିବାଦଗ୍ରସ୍ତ ହୋଇ ହୀନଯାନ ଓ ମହାଯାନରେ ବିଭକ୍ତ ହେଲା । ହୀନଯାନର ଆତ୍ମାର ଶୂନ୍ୟତା ଓ ମହାଯାନରେ ଆତ୍ମା ସଂଗେ ସମସ୍ତ ଧର୍ମର ଶୂନ୍ୟତା ଗୃହୀତ ହେଲା । ମହାଯାନ କାଳକ୍ରମେ ମାଧ୍ୟମିକ ଓ ଯୋଗାଚାରରେ ବିଭକ୍ତ ହେଲା । ଯୋଗାଚାର ମତରେ ବସ୍ତୁ ମାତ୍ରକେ ଅସତ୍ ବା ଶୂନ୍ୟ । ବିଜ୍ଞାନ କେବଳ ସଦ୍‌ବସ୍ତୁ । ଶୂନ୍ୟବାଦ ବା ବୈରାଗ୍ୟରେ ବିଜ୍ଞାନର ସମ୍ମିଶ୍ରଣ

ହେଲା ମାଧମିକ ବୌଦ୍ଧ ଦର୍ଶନ । ଏହି ଶୂନ୍ୟବାଦ ପ୍ରଥମେ ଓଡ଼ିଶାରୁ ପ୍ରଚାରିତ ହୋଇଥିଲା ବୋଲି "Pug sam jamgon"ରେ ଲିଖିତ ଅଛି । ଓଡ଼ିଆ ସାହିତ୍ୟରେ ଏହି ଶୂନ୍ୟବାଦ ପରିକିର୍ତ୍ତିତ ହୋଇଛି । ଯୋଗ ପ୍ରକ୍ରିୟାରେ ଏହାର ଉପଲବ୍ଧି ଅପାଣିପାଦ ଜଗନ୍ନାଥ ମଧ ଏହି ଶୂନ୍ୟତାର ପ୍ରତିଭୂ ହୋଇ ବିଦ୍ୟମାନ । ଭୀମଭୋଇଙ୍କ ମତରେ-

ଘଟରେ ବ୍ରହ୍ମକୁ ନ ଚିହ୍ନି<br>
ବାହ୍ୟରେ ମରୁଛନ୍ତି ପ୍ରାଣୀ<br>
ମୂର୍ତ୍ତି ପ୍ରତିମା ଶୁଷକାଠ<br>
ଏ ପୁଣି ନେବେ କି ବୈକୁଣ୍ଠ<br>
ଘଟରେ ଜଗନ୍ନାଥ ଅଛି<br>
ପ୍ରତିମା ମିଛରେ ପୂଜୁଛି ।

ଗୋରେଖନାଥଙ୍କ 'ସପ୍ରାଙ୍ଗ ଯୋଗଧାରଣ' ପୁସ୍ତକଟି ତ୍ରୟୋଦଶ ଶତାବ୍ଦୀର ରଚନା । ହଠଯୋଗର ଶୋଧନ, ଦୃଢ଼ତା, ଧୈର୍ଯ୍ୟ, ଲାଘବ, ସ୍ଥିରତା, ପ୍ରତ୍ୟକ୍ଷର ଓ ନିର୍ଲିପ୍ତତ୍ୱ ଏହି ସାତୋଟି ଅଂଶ ବର୍ଣ୍ଣନାରେ ଏହାର ନାମକରଣ ହୋଇଛି । ଏହି 'ସପ୍ତବରଣ' କିପରି ପଞ୍ଚଭୂତ ଆତ୍ମାକୁ ଘେରି ରହିଛି ତାହା ସିଦ୍ଧ ସାଧକମାନଙ୍କୁ ନାଥ ସାହିତ୍ୟରେ ଅଜ୍ଞାତ ନଥିଲା । ଓଡ଼ିଆ ଅଭିଲେଖରେ ଧର୍ମର ରୂପାୟନ ଆଦୌ ବିରଳ ନୁହେଁ । ଖ୍ରୀଷ୍ଟିୟ ଷଷ୍ଠ ଶତାବ୍ଦୀରୁ ଅନନ୍ତ ବର୍ମା (ଖ୍ରୀ ୫୪୮ )ଙ୍କ ପୁତ୍ର ଦେବେନ୍ଦ୍ର ବର୍ମାଙ୍କ ତାମ୍ର ଶାସନରୁ ମହେନ୍ଦ୍ରଗିରିରେ ଗୋକର୍ଣ୍ଣେଶ୍ୱର ପୂଜା ପାଇଁ ଶୈବ ବ୍ରାହ୍ମଣମାନଙ୍କୁ ବହୁଗ୍ରାମ ଦାନ ଦେବା କଥା ବର୍ଣ୍ଣିତ ହୋଇଛି । ନବମ ଠାରୁ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବିଷ୍ଣୁ ଉପାସନାର ସଂକେତ ବହୁ ଶିଳାଲିପିରେ ଖୋଦିତ ହୋଇଛି । ଅନନ୍ତ ବାସୁଦେବ ମଂଦିରର ଶିଳାଲେଖ ତା ଭିତରୁ ଗୋଟିଏ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ମହିମା ଏଥିରେ ବର୍ଣ୍ଣିତ । 'ସୋମନାଥ ବ୍ରତ କଥା'ରେ କାପୁଡ଼ିଆମାନଙ୍କ ଶିବଙ୍କ ମହିମା ପ୍ରଖ୍ୟାତ ଓ ବ୍ତ୍ସା ଦାସଙ୍କ 'କଳସା'ରେ ଏହାର ଜୀବନ୍ତ ଆଲେଖ୍ୟ ବେଶ ମର୍ମସ୍ପର୍ଶୀ । 'ରୁଦ୍ର ସୁଧାନିଧି'ରେ ଉଭୟ ଶିବ ଓ ବିଷ୍ଣୁଙ୍କ ମହିମାର ବିସ୍ତୃତ ଚିତ୍ର ପ୍ରଦତ୍ତ ହୋଇଥିବା ଆମ ଦୃଷ୍ଟିଗୋଚର ହୁଏ ।

ସେହିପରି ଶ୍ରୀକ୍ଷେତ୍ରର ବିମଳାଙ୍କ ଉପାସନା ବହୁକାଳରୁ ପ୍ରଚଳିତ । ପୀଠ ନିର୍ଣ୍ଣୟରେ ପୁରୁଷୋତ୍ତମ କ୍ଷେତ୍ର ଯେ ଶକ୍ତିକ୍ଷେତ୍ର ରୂପେ ପରିଗଣିତ । ଉଡ୍ଡୀୟାନ ତନ୍ତ୍ରରେ ଉଲ୍ଲେଖ ଅଛି

ସୁଭଦ୍ରା ଲୋକମାତାତ୍ମା ଆତ୍ମଶକ୍ତି ବରାପ୍ରଦା<br>
ରାମକୃଷ୍ଣ ଦ୍ୱୟୋର୍ମଧ୍ୟେ ପରମା ପରମେଶ୍ୱରୀ

୩୫ଟି ଶକ୍ତିପୀଠ, ୧୯ଟି ଶୈବପୀଠ ଓ ୧୬ଟି ମହାପୀଠ- ଏହିଭଳି ୭୦ଟି ପୀଠକୁ ନେଇ ଉତ୍କଳର ଶାକ୍ତମଣ୍ଡଳ ମହିମାନ୍ୱିତ । ଚତୁର୍ଥ ଶତାବ୍ଦୀରୁ ବିରଜା ଦେବୀଙ୍କ ପୂଜା, ଗଂଗବଂଶୀ ରାଜାଙ୍କ ଇଷ୍ଟଦେବୀ ମଧ୍ୟ ଦୁର୍ଗା । ଦୁର୍ଗା ପୁତ୍ର ଭାବେ ୧ମ ନରସିଂହ ଦେବଙ୍କୁ ଅଭିହିତ କରାଯାଇଛି । 'ରୁଦ୍ର ସୁଧାନିଧି'ରେ ଶାକ୍ତଧର୍ମର ସାଧନା ମାର୍ଗ ବର୍ଣ୍ଣିତ ହୋଇଛି ତନ୍ତ୍ରମତରେ । ଏହିଭଳି ପଞ୍ଚ ଦେବାଦେବୀର ବର୍ଣ୍ଣନାରେ ଓଡ଼ିଆ କାବ୍ୟ ପରମ୍ପରା ସମୃଦ୍ଧ । ଗଣେଶ, ନାରାୟଣ, ରୁଦ୍ର, ଅମ୍ବିକା ଓ ସୂର୍ଯ୍ୟଙ୍କ ଏ ଉପାସନା ସହିତ ବୈଷ୍ଣବୀୟ ତତ୍ତ୍ୱ ଓଡ଼ିଆ ସାହିତ୍ୟରେ ମୂର୍ତ୍ତିମନ୍ତ ହୋଇଛି ନାନା ଭାବରେ । ଓଡ଼ିଆ ପୁରାଣ ସାହିତ୍ୟରେ ଏହାର ଭୁରିଭୁରି ପ୍ରମାଣ ଆମେ ଦେଖିବାକୁ ପାଇବା ।

ଓଡ଼ିଆ ସାହିତ୍ୟରେ ପଞ୍ଚସଖା ଓ ରୀତିଯୁଗ ଶୁଦ୍ଧ ଭକ୍ତିର ଯୁଗ । ଶୂନ୍ୟବାଦୀ ଜ୍ଞାନମାର୍ଗୀ ପଞ୍ଚସଖାମାନେ ଜଗନ୍ନାଥଙ୍କ ପାଖରେ ଯୋଗ, ତତ୍ତ୍ୱଭିତ୍ତିକ ଭକ୍ତି ବଖାଣିବା ବେଳେ କାବ୍ୟ ଯୁଗ ବା ସଂଗୀତ ଯୁଗରେ ରାଧାକୃଷ୍ଣଙ୍କ ଅଚଳା ଭକ୍ତିର ରସାନୁଭବ କରି ଓଡ଼ିଆ ପାଠକ ବିହ୍ୱଳ । ଅଧିକ ଉଦାହରଣର ଆବଶ୍ୟକ ନାହିଁ । ଡଃ ମିଶ୍ରଙ୍କ ଯେ କୌଣସି ଛାତ୍ର ବିଦଗ୍ଧ ଚିନ୍ତାମଣିର ଏହି ପଦକର ବ୍ୟାଖ୍ୟା କେବେ ଭୁଲିନପାରେ ।

ବିଚାରିକି ପଦ୍ମଯୋନି ସୁଧା ଅନୁରାଗ ଘେନି

ବିଶ୍ୱ ତୁଳନାରେ ତୁଳି କଳନା କଲେ

ଉଶ୍ୱାସ ଭାଗ ଉଠିଲା ଗରୁଆ ତଳକୁ ଗଲା

ଉଚ୍ଚ ନୀଚ ନୀଚ ଉଚ୍ଚ ଜଣା ବିଧିରେ

ସୁଧା ଅନୁରାଗ ସଙ୍ଗତେ

ସରି କରି ବୋଲି ପାରିବ କେ କେମନ୍ତେ

ଚନ୍ଦ୍ର-ସୁଧା-ଶୁଭ୍ର- ଅମୃତ । ସୂର୍ଯ୍ୟ ଅନୁରାଗ ରକ୍ତିମାଭ । ଅମୃତ ହିଁ ଜ୍ଞାନ । ତେଣୁ ଚନ୍ଦ୍ର ଜ୍ଞାନର ପ୍ରତୀକ । ତାହା ଶୁଭ୍ରତା ବ୍ୟଞ୍ଜକ । ଅନୁରାଗ ଭକ୍ତି ଅସ୍ତ ସୂର୍ଯ୍ୟ ରକ୍ତିମାଭ ହେତୁ ସେ ଅନୁରାଗର ପ୍ରତୀକ । ଅନୁରାଗବର୍ଣ୍ଣ ରକ୍ତିମାଭ । ତୁଳା ଫଡର ରୀତି ଅନୁସାରେ ଯେ ଭାରି ସେ ତଳକୁ ଯାଏ, ଯେ ଉଶ୍ୱାସ ସେ ଉପରକୁ ଉଠେ । ଏଠାରେ ବିଶ୍ୱସ୍ରଷ୍ଟା ସ୍ୱୟଂବ୍ରହ୍ମା । ତୁଳା ନିକିତିରେ ଦୁଇଟି ଜ୍ୟୋତିଷ ପଦାର୍ଥକୁ ତୁଳିବାରେ ଚନ୍ଦ୍ର ଉପରକୁ ଓ ସୂର୍ଯ୍ୟ ତଳକୁ ଯିବାରୁ ସୂର୍ଯ୍ୟ ତଥା ଅନୁରାଗ ତଥା ଭକ୍ତିର ଶ୍ରେଷ୍ଠତ୍ୱ ପ୍ରମାଣିତ ହେଲା । ପୁନଶ୍ଚ ଯେ ଉଚ୍ଚ

ସେ ନୀଚ ଓ ଯେ ନୀଚ ସେ ଉଚ୍ଚ ହେବାରେ ଅର୍ଥ ହେଲା- ଉପନିଷଦ ମାର୍ଗରେ ଜ୍ଞାନ ଥିଲା ଉଚ୍ଚ ସୋପାନରେ ଅଧିରୂଢ଼ ମାତ୍ର ଭକ୍ତି ଥିଲା ନ୍ୟୁନ । ଆଜି ଭକ୍ତି ହେଲା ଉଚ୍ଚ ଓ ଜ୍ଞାନ ହେଲା ନୀଚ । ଭକ୍ତି ଯୁଗରେ ପ୍ରେମ ଭକ୍ତିର ଉପାସକ ଅଭିମନ୍ୟୁଙ୍କ ଏହିପରି କାବ୍ୟିକ ପରିପ୍ରକାଶ ଧର୍ମୀୟ ଭାବନାକୁ ରସମୟ କରି ଗଢ଼ିପାରିଛି । ଏଥିପାଇଁ କବି ସୁନ୍ଦର ରୂପକଳ୍ପର ଆଶ୍ରୟ ନେଇଛନ୍ତି । ଓଡ଼ିଆ ସାହିତ୍ୟରେ ଇସଲାମୀ ପ୍ରଭାବର ଚିତ୍ର 'ସତ୍ୟନାରାୟଣ ପାଲା'ରେ ଦେଖିବାକୁ ମିଳେ ।

''ମୁସଲମାନ ପୀର ବୋଲେ ହିନ୍ଦୁ ନାରାୟଣ

କରାମତ ଦେଖିଯା ପୂଜିଲ ସର୍ବଜନ ।''

'ମୋଗଲ ତାମସା' ନାଟରେ ଏହାର ଭୁରି ଭୁରି ପ୍ରମାଣ ଦେଖିବାକୁ ମିଳେ । ସେହିଭଳି ଖ୍ରୀଷ୍ଟିୟାନ ଧର୍ମର ପ୍ରଭାବ ଓଡ଼ିଆ ସାହିତ୍ୟରେ ବେଶ ଦେଖିବାକୁ ମିଳେ ।

ପରଲାଗି ଆପେ ମରି ଏମନ୍ତ କେ ପାରେ ସାଧି ହେ

ଅଭିଷିକ୍ତ ତ୍ରାଣବିଧି ଅଛ ପୂର୍ବୁ ଅଦ୍ୟାବଧି

ମୁକ୍ତିଦାନେ ସୁପ୍ରସିଦ୍ଧି ହର ପାପ ମହାବ୍ୟାଧି

(ଗଙ୍ଗାଧର ଷଡଙ୍ଗୀ)

ଗୀର୍ଜା, ମସ୍‌ଜିଦ୍, ମନ୍ଦିରକୁ ନେଇ ଓଡ଼ିଶାର ଧର୍ମ ଭାବନା ଓଡ଼ିଆ ସାହିତ୍ୟର ବୈଶିଷ୍ଟ୍ୟ ପ୍ରକାଶ କରେ । ବ୍ରାହ୍ମଧର୍ମର ଉନ୍ମେଷ ଓ ବିକାଶରେ ଓଡ଼ିଆ ସାହିତ୍ୟର ମଧ ବିଶେଷ ଭୂମିକା ରହିଛି । ଭକ୍ତକବି ମଧୁସୂଦନଙ୍କ କବିତା ଏହାର ନମୁନା ।

ଏଣୁ ଯଥାର୍ଥରେ ଓଡ଼ିଶାର ସାହିତ୍ୟ ସଂସ୍କୃତି ଏକ ସମନ୍ୱିତ ଭାବଧାରାର ଅଭିବ୍ୟକ୍ତି । ପ୍ରାବନ୍ଧିକ ମିଶ୍ରଙ୍କ ମତରେ ସୃଷ୍ଟିର ରହସ୍ୟ ପ୍ରଣବ ହିଁ ଶ୍ରୀମନ୍ଦିର ବା ଜଗନ୍ନାଥଧାମ । ଅରୁଣ ସ୍ତମ୍ଭ ହିଁ ନାସିକା ବା ପୂର୍ବଦିଗ । ଆବାହମାନ କାଳରୁ ରାମ, କୃଷ୍ଣଙ୍କ ଚରିତ୍ରକୁ ନେଇ ରାମାୟଣ, ମହାଭାରତ, ଭାଗବତ ଓ ଗୀତାର ସୃଷ୍ଟି । ଭାରତୀୟତାର ଏହି ଆତ୍ମା ଉତ୍କଳର ବିଶୁଦ୍ଧ ଆତ୍ମାରେ ଏକାକାର ।

ଏହା ସତ୍ତ୍ୱେ ଧର୍ମକ୍ଷେତ୍ରରେ ଯେଉଁ ପରିବର୍ତ୍ତନ ଘଟିଚାଲିଛି ଓ ଧର୍ମକୁ ନେଇ ଯେଉଁ ଅନୀତି ଓ ଅନାସ୍ଥା ପ୍ରକଟିତ ହୋଇଛି ତାକୁ ଦର୍ଶାଇବାରୁ ବିରତ ହୋଇନାହାଁନ୍ତି । ଡଃ କାହ୍ନୁଚରଣ ମିଶ୍ର

ପୂଜ୍ୟ ଗୁରୁଙ୍କ ସ୍ମରଣରେ ଏତିକି ଟିପ୍ପଣୀ । ଗଂଗାଜଳରେ ଗଙ୍ଗାର ପୂଜା । ସେଥିପାଇଁ ଦୋଷ ସ୍ୱୀକାର କରୁଛି । ଗୀତାର ଆରମ୍ଭରୁ କୁହାଯାଇଛି । ସେଥିପାଇଁ ବୈଦିକ, ବୌଦ୍ଧ, ଜୈନ, ଖ୍ରୀଷ୍ଟ, ଇସଲାମ, ବୈଷ୍ଣବ, ଶୈବ, ଶାକ୍ତ ପ୍ରଭୃତି ଧର୍ମର ଉଦ୍‌ଭବ ହୋଇଛି ଓ ଆହୁରି ଅନେକ ସମ୍ପ୍ରଦାୟ ଧର୍ମକ୍ଷେତ୍ରରେ ମୁଣ୍ଡ ଟେକିଛି । ପ୍ରତ୍ୟେକ ଧାର୍ମିକ ଚେତନା ଭିତରେ ମୈତ୍ରୀ, ସାମ୍ୟ, ମୁକ୍ତିର ମହାନତା ପରିଲକ୍ଷିତ ହୁଏ ସତ କିନ୍ତୁ ଉତ୍କଳର ଜଗନ୍ନାଥ ଚେତନା ଏହି ଧାରାରେ ଅଗ୍ରଦୂତ ହୋଇ ରହିଛି । ତେଣୁ ଡଃ କାହ୍ନୁଚରଣ ମିଶ୍ର ଶ୍ରୀ ଜଗନ୍ନାଥ ସଂସ୍କୃତି ଉପରେ ତାଙ୍କର ନିବନ୍ଧ ରଚନା କରିଛନ୍ତି ଓ ସେ ଦୃଷ୍ଟିରୁ ତାଙ୍କର The Cult of Jagannath ବିଶେଷ ପ୍ରଣିଧାନଯୋଗ୍ୟ । ଶ୍ରୀ ଜଗନ୍ନାଥ ଚେତନାରେ ପ୍ରତ୍ୟେକଟି ଧର୍ମଧାରା ସମ୍ମିଳିତ ହୋଇଛି । ଏହା ସହିତ ମିଶି ରହିଛି ଶାବରୀ ତନ୍ତ୍ର ଓ ନାନାଦି ଆଗମିକ ଅଭିକ୍ରିୟା ।

ପୁଣ୍ୟଭୂମି ଭାରତବର୍ଷରେ କୌଣସି ଧର୍ମକୁ ହତାଦର କରାଯାଇନାହିଁ କି କୌଣସି ଧର୍ମଧାରା ଅବଜ୍ଞାର ଶୁଷ୍କ ବାଲୁକାରେ ନିଃଶେଷ ହୋଇନାହିଁ । ଯାହା ବେଦାନ୍ତବାଦର ସତ୍ୟ, ତାହା ହିଁ ଇସଲାମ ଧର୍ମରେ ପ୍ରଚାରିତ । ମହମ୍ମଦଙ୍କ ବାଣୀରେ ଆଲ୍ଲାଙ୍କ ନିକଟରେ ଆତ୍ମସମର୍ପଣ, ଲୋକଙ୍କ ପାଇଁ ଆତ୍ମୋତ୍ସର୍ଗ, ନାରୀ ପ୍ରତି ସମ୍ମାନ ଆଦି ମାନବୀୟ ଗୁଣାବଳୀ ପ୍ରକଟିତ ହୋଇଛି । ଖ୍ରୀଷ୍ଟଧର୍ମରେ ପତିତମାନଙ୍କ ପାଇଁ କରୁଣା ଓ ସେବା ପରାୟଣତାର ଆଦର୍ଶ ସହିତ ଭାରତୀୟ ଆଧ୍ୟାତ୍ମିକ ଚେତନାର ସଂଯମ, ସୁଚିନ୍ତା, ଅହିଂସା, ଧ୍ୟାନ, ଯୋଗାଦିର ଶୃଙ୍ଖଳା ସଭ୍ୟତା ବିସ୍ମୟକର ଅବଦାନ ହୋଇ ରହିଛି । ଏହି ପରିପ୍ରେକ୍ଷୀରେ ଉତ୍କଳୀୟ ଧର୍ମଧାରାର ବୈଶିଷ୍ଟ୍ୟ ଓ ବୈଚିତ୍ର୍ୟ ପ୍ରତିପାଦନ କରିଛନ୍ତି ଡଃ ମିଶ୍ର । ଏହି ଧର୍ମଧାରା କେବଳ ମନ୍ଦିର, ମଠ, ପ୍ରତ୍ନତତ୍ତ୍ୱ ଭିତରେ ସୀମିତ ହୋଇ ରହିନାହିଁ । ମାନବ ଚିନ୍ତାଧାରାର ଉତ୍କର୍ଷ ଓ ପ୍ରେମ, ମୈତ୍ରୀ, ସାମ୍ୟ, ମୁକ୍ତିର ଭାବଧାରା ଓଡ଼ିଆ ସାହିତ୍ୟରେ ଛତ୍ରେଛତ୍ରେ ପ୍ରକଟିତ ହୋଇଛି । ଚର୍ଯାଯୁଗରୁ, ସାରଳା ସାହିତ୍ୟ, ପଞ୍ଚସଖା ସାହିତ୍ୟରୁ ରୀତିଯୁଗ ଦେଇ ଭୀମଭୋଇଙ୍କ ପାଖରେ ଏହାର କ୍ରମ ବିକାଶ ସହିତ ଉତ୍କଳର ରାଷ୍ଟ୍ରଦେବତା ଶ୍ରୀ ଜଗନ୍ନାଥ ସଂସ୍କୃତିରେ ଏହା ସମନ୍ୱିତ ହୋଇଅଛି ।

■■

# ଶୁକ୍ଳାମ୍ବରଧରଂ ବିଷ୍ଣୁଂ

*- ପ୍ରଫେସର ଗୋପୀନାଥ ମହାପାତ୍ର*

ଏଣେ ନାଁ କାହ୍ନୁ; ବର୍ଣ୍ଣ କିନ୍ତୁ ଶ୍ୟାମ ନୁହେଁ; ଗୌର । ପରିଧାନ ପୀତବର୍ଣ୍ଣ ନୁହେଁ, ଶୁଭ୍ର । ସତେ ଅବା ଶୁକ୍ଳାମ୍ବରଧାରୀ ବିଷ୍ଣୁ କିଛିଦିନ ଲୀଳାଖେଳା କରିବାକୁ ଆମ ଭଳି ମଣିଷଙ୍କ ନିକଟକୁ ଚାଲି ଆସିଥିଲେ । ଆମେ ସବୁ ଦ୍ୱିଭୁଜ । ତେଣୁ ଆମେ ଯେତିକି ଲେଖୁ ବା କାମ କରୁ, ତାହା ଅତି ଅଳ୍ପ ଓ ସୀମିତ । ମାତ୍ର ବିଷ୍ଣୁ ଯଦି କାମ କରିବେ, ଚାରିଭୁଜରେ କରିବେ । ଅନେକ କାମ କରିଯିବେ, ଯାହା ଦେଖିଲେ ସାଧାରଣ ମଣିଷ ଚକିତ ହୋଇଯିବ । ସେହି ଦୃଷ୍ଟିରୁ ଭାବିଲେ, ବା ତାଙ୍କର ଯଶ ଓ କାର୍ଯ୍ୟକୃତି ଦେଖିଲେ, ସେ ମଧ୍ୟ ଚତୁର୍ଭୁଜ ବୋଲି ମନେ ହେବ । ତା' ନହେଲେ ସୀମିତ ଜୀବନକାଳ ମଧ୍ୟରେ ଏତେ ଗ୍ରନ୍ଥର ପ୍ରକାଶ ସମ୍ଭବ ହୁଅନ୍ତା କିପରି ? ପଠାଣି ସାମନ୍ତଙ୍କ ସିଦ୍ଧାନ୍ତ ଦର୍ପଣ ତଥା ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ଉପରେ ଏତେ ଗ୍ରନ୍ଥ ତାଙ୍କ ଦ୍ୱାରା ପ୍ରକାଶିତ ହୋଇ ସାରା ଜଗତର ଗବେଷକମାନଙ୍କର ଦୃଷ୍ଟିକୁ ଆସିଥାଆନ୍ତା କିପରି ? ବିଷ୍ଣୁ- କୃଷ୍ଣ ଜଗନ୍ନାଥ ନୀଳାଚଳାଧିପତି ସ୍ୱୟଂ ପରା କାନ୍ତ କମନୀୟ କାହ୍ନୁ । ସେ ଇଚ୍ଛା କଲେ, ଏ କାହ୍ନୁ ତାଙ୍କ ପାଇଁ କାମ କରିବେ । ସେହି ପାରମାର୍ଥିକ ଅବ୍ୟକ୍ତ ତତ୍ତ୍ୱକୁ ଲୋକଙ୍କୁ ବୁଝାଇଦେବେ । ସେଥିପାଇଁ ସିନା ସେ ପ୍ରଭୁଙ୍କ ବିଷୟରେ ଏତେ ପ୍ରାଞ୍ଜଳ ଭାବରେ The Cult of Jagannath ଗ୍ରନ୍ଥଟି ଲେଖିପାରିଲେ । ସର୍ବଦା କର୍ମମୁଖରେ ସେହି ଅମରାତ୍ମାଙ୍କ ଦର୍ଶନରେ ମନରେ ଅତ୍ୟନ୍ତ ସାତ୍ତ୍ୱିକ ଭାବ ଜାତ ହୁଏ । ଦୁଃଖର କାଳିମା ତାଙ୍କଠାରେ କେତେବେଳେ ହେଲେ ଦେଖାଯାଏ ନାହିଁ । ସଦା ପ୍ରସନ୍ନ ଓ ଅଳ୍ପ ଅଳ୍ପ ହସ ଭିତରେ ତାଙ୍କର ମୁଖମଣ୍ଡଳକୁ ଦେଖିଲେ ମନରେ ଅପୂର୍ବ ଉଲ୍ଲାସ ଜାତ ହୁଏ । ସେତେବେଳେ ମନେ ପଡ଼ିଯାଏ ଏଇ ପଦକ କଥା-

ଶୁକ୍ଳାମ୍ବରଧରରଂ ବିଷ୍ଣୁଂ ଶଶିବର୍ଣଂ ଚତୁର୍ଭୁଜମ୍ ।

ପ୍ରସନ୍ନବଦନଂ ଧ୍ୟାୟେତ୍ ସର୍ବବିଘ୍ନୋପଶାନ୍ତୟେ ॥

୧୯୬୬ ମସିହାର କଥା । ମୋର ଏମ୍.ଏ. (ସଂସ୍କୃତ) ସେତେବେଳକୁ ସରିଯାଇଥାଏ । ରେଭେନ୍ସା କଲେଜରେ ଆଇ.ଏ.ଏସ୍. ପରୀକ୍ଷା ଦେବା ପାଇଁ ସେଠାକୁ ଆମେ ସବୁ ବାଣୀବିହାର ପିଲାମାନେ ଯାଇଥାଉ । ଉପର ମହଲାରୁ ସିଡ଼ିରୁ ମୁଁ ଓହ୍ଲାଇ

ଆସୁଥାଏ । ସେତିକିବେଳେ କାହ୍ନୁ ବାବୁ ଧୋତି ପଞ୍ଜାବୀ ଉପରେ ଚଦର ଘୋଡ଼ାଇ ହୋଇ ତରତର ହୋଇ ସିଡି ଚଢ଼ିଯାଉଥାଆନ୍ତି । ତାଙ୍କ ଚେହେରା ଓ ପୋଷାକ ଦେଖି ଭାବିଲି, ଇଏ ବୋଧହୁଏ ଜଣେ ସଂସ୍କୃତ ପଣ୍ଡିତ । ସେତେବେଳକୁ ମୋର ତାଙ୍କ ସହିତ ପରିଚୟ ନଥାଏ । ମୁଁ ତାଙ୍କୁ ପ୍ରଣାମ ଜଣାଇଲି । ସେ ଟିକିଏ ହସିଦେଲେ ଓ ମୋ ପିଠି ଥାପୁଡ଼ାଇ ପଚାରିଲେ, ତୁମେ କଣ କରୁଛ ? ସେ ଯେତେବେଳେ ମୋ ଠାରୁ ଶୁଣିଲେ ମୁଁ ସଂସ୍କୃତ ଏମ୍.ଏ. ପରୀକ୍ଷା ଦେଇଛି; ସେତେବେଳେ ଅତି ଆନନ୍ଦରେ କୁରୁଳି ଉଠିଲେ କହିଲେ, ''ଭଲ କରିଛ । ସଂସ୍କୃତ ହେଉଛି ଭାରତର ମୁଖ୍ୟଭାଷା; ଆମ ସଂସ୍କୃତିର ପ୍ରାଣକେନ୍ଦ୍ର । ତୁମେ ଖାଲି ଏମ୍.ଏ. ପଢ଼ିଦେଲେ ହେବ ନାହିଁ । ସଂସ୍କୃତି ଉପରେ ଗବେଷଣା କର । ତାଙ୍କର ଏହି କଥା ପଦକ ମୋ ଉପରେ ପରମ ଆଶୀର୍ବାଦର କାମ କଲା । ମୁଁ ମଧ ପରେ ଶ୍ରୀ ଜଗନ୍ନାଥଙ୍କ ଉପରେ ଗ୍ରନ୍ଥମାନ ରଚନା କଲି । ତାଙ୍କର ବିଖ୍ୟାତ ନିବନ୍ଧ The Cult of Jagannath ମୋର ଗବେଷଣାରେ ଅନେକ ସାହାଯ୍ୟ କରିଥିଲା । ମୁଁ କ୍ରମଶଃ ଜଗନ୍ନାଥଙ୍କ ଉପରେ The Land of Vishnu; Jagannath in the history and religions traditions of Orissa; Sri Jagannath Tahttva; Jagannnath The Lord of the universe ଆଦି ପୁସ୍ତକମାନ ଲେଖି ଶ୍ରୀ ଜଗନ୍ନାଥଙ୍କ ତତ୍ତ୍ୱକୁ ବିଶ୍ୱର ବିଭିନ୍ନ ଦେଶରେ ପ୍ରଚାର କରିବାର ପ୍ରେରଣା ତାଙ୍କରିଠାରୁ ପାଇଥିଲି- ସେଥିପାଇଁ କଥାରେ ଅଛି-

''କାଚ କାଞ୍ଚନ ସଂସର୍ଗାତ ଧତ୍ତେ ମାରକତିଂ ଦ୍ୟୁତିମ୍
ତସ୍ମାତ୍ ସଦ୍ ସନ୍ନିଧାନେନ ମୂର୍ଖୋ ଯାତି ପ୍ରବୀଣତାମ୍ ।''

ସେ ଅନେକ ସମୟରେ ଆମ ଘରକୁ ଆସୁଥିଲେ । ମୋ ସହିତ ଆଲୋଚନା କରୁଥିଲେ । କହୁଥିଲେ, ତୁମେ ଆମ ସେମିନାର ପାଇଁ ଏହି ନିର୍ଦ୍ଦିଷ୍ଟ ବିଷୟରେ ପ୍ରବନ୍ଧ ଲେଖ । ମୁଁ ତୁମକୁ ଡାକିବି । କହିକରି ଯାଉଛି । ମାତ୍ର ମୁଁ ଯେତେବେଳେ ସେମିନାରର ନିମନ୍ତ୍ରଣ ପତ୍ରଟି ପାଏ ନାହିଁ, ସେତେବେଳେ ଚକିତ ହୋଇପଡ଼େ । ପରେ ଯେତେବେଳେ ମୋଠାରୁ ସେ ଏକଥା ଶୁଣନ୍ତି, କହନ୍ତି- ଆହେ, ମୁଁ କଣ ସବୁ କରୁଛି ? ତୁମକୁ ଡାକିବାକୁ ତ କହିଥିଲି; କଣ ହେଲା କେଜାଣି? ତାହା ଏବେ ମଧ ସେହି 'କେଜାଣି'ରେ ପ୍ରଶ୍ନବାଚୀ । ସେ ଥିଲେ ଏକ ଭିନ୍ନ ମଣିଷ । ଅତି ଉଚ୍ଚ ମିଜାଜର ମଣିଷ । ତାଙ୍କ ପାଖରେ କାମ କରି କିଏ କଣ ପ୍ରିୟାପ୍ରୀତି କଲା, ତାହା ଜାଣିବାକୁ ତାଙ୍କର ବେଳ ନଥିଲା । ଅବଶ୍ୟ ପରେ କିଛିଟା ଅନୁମାନ କରିହେଲା ସେ ଯାହା ହେଉ ସେ ବାସ୍ତବରେ ଥିଲେ ସ୍ଥିତପ୍ରଜ୍ଞ ।

ତାଙ୍କର ମୋ ପ୍ରତି ଯେଉଁ ସ୍ନେହ ଓ ବିଶ୍ୱାସ ଥିଲା ତାହା କଦାପି ଭୁଲିବାର ନୁହେଁ । ତାଙ୍କର ଅନୁରାଗ ଫଳରେ ସେ ମଧ ଆମ ଭିତରେ ପାରିବାରିକ ବନ୍ଧୁତା କରିପାରିଛନ୍ତି । ମୁଁ

ଯେଉଁଦଦିନ ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲି, ସେ ସଙ୍ଗେ ସଙ୍ଗେ ଅଭିନନ୍ଦନ ଜଣାଇବା ପାଇଁ ଅତି ଆନନ୍ଦରେ ଆମ ଘରେ ସପରିବାର ଉପସ୍ଥିତ ହୋଇଥିଲେ । ସେ ଦିନେ ସେ ମୋର ସେହି 'ଶ୍ରୀ ଜଗନ୍ନାଥ ତତ୍ତ୍ୱ' ବହିଟିକୁ ବହୁତ ପ୍ରଶଂସା କରିଥିଲେ । ସେ ଥିଲେ ଏକ କର୍ମଠ ଉଦାର ବ୍ୟକ୍ତିତ୍ୱ । ସେ ଇଂରାଜୀରେ ପୁସ୍ତକ ରଚନା କରିଥିବାରୁ ତାଙ୍କର ସୁନାମ ଅନେକ ଓଡ଼ିଶାରେ ସୀମିତ ନଥିଲା । ସାରା ଜଗତ ତାଙ୍କୁ ଜଣେ ପ୍ରଖ୍ୟାତ ଗବେଷକ ଭାବରେ ଚିହ୍ନିଥିଲା । ୨୦୦୦ ମସିହାରେ ଇଟାଲୀର ଟୋରିନୋ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ବିଶ୍ୱ ସଂସ୍କୃତ ସମ୍ମିଳନୀରେ ଯୋଗଦେବା ଅବକାଶରେ କଲିକତା ବିଶ୍ୱବିଦ୍ୟାଳୟର ପ୍ରସିଦ୍ଧ ପ୍ରଫେସର ବିଶ୍ୱନାଥ ବାନାର୍ଜୀ ମୋ ଆଗରେ କାହ୍ନୁବାବୁଙ୍କର ଅନେକ ପ୍ରଶଂସା କରିଥିଲେ । ଆଜି ସେ ଆମ ଭିତରେ ନାହାଁନ୍ତି ସତ; ମାତ୍ର ସେ ଯେଉଁ ଅନୁଷ୍ଠାନ ଗଢ଼ିଯାଇଛନ୍ତି ତଥା ଅମୂଲ୍ୟ ଗ୍ରନ୍ଥ ରଚନା କରି ଯାଇଛନ୍ତି, ତାହା କାଳେ କାଳେ ତାଙ୍କୁ ଅମର କରି ରଖିବ । ଜଗନ୍ନାଥେ ତାଙ୍କୁ ବୈକୁଣ୍ଠପୁରକୁ ନେଇ ପରାମାତ୍ମା ମହାବିଷ୍ଣୁଙ୍କ ଠାରେ ଲୀନ କରାଇ ସାରିଥିବେ । ସେହି ପୁଣ୍ୟାତ୍ମାଙ୍କର ପବିତ୍ର ସ୍ମୃତିରେ ଶ୍ରଦ୍ଧାଞ୍ଜଳି ନିବେଦନ କରୁଛି ।

■■

# ଓଡ଼ିଆ ସମାଲୋଚନାରେ କାହ୍ନୁଚରଣଙ୍କ ଦୃଷ୍ଟି ଓ ଦର୍ଶନ

*- ଅଧ୍ୟାପକ ବୈଷ୍ଣବଚରଣ ସାମଲ*

ଆଧୁନିକ ଓଡ଼ିଆ ସମାଲୋଚନାର କ୍ରମବିକାଶ ଊନବିଂଶ ଶତାବ୍ଦୀର ଶେଷ ତ୍ରିଦଶରୁ ଆରମ୍ଭ ହୋଇ ସଂପ୍ରତି ଏକ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଗ୍ରହଣ କରିଅଛି । ପରିମାଣାତ୍ମକ ଦୃଷ୍ଟିରୁ ଓଡ଼ିଆ ସମାଲୋଚନାର ବିକାଶ ହୋଇଥିଲେ ହେଁ ଗୁଣାତ୍ମକ ଦୃଷ୍ଟିରୁ ତଥାପି ସିଦ୍ଧିର ଗୌରବକୁ ଅପେକ୍ଷା ରଖିଛି । ତଥାପି ଓଡ଼ିଆ ସମାଲୋଚନାର ଦୀର୍ଘ ଏକଶତ ବର୍ଷର ଗତି ଓ ପ୍ରକୃତିକୁ ବିଶ୍ଳେଷଣ କଲେ ତାର ବୈଚିତ୍ରମୟ ରୂପ ଦୃଷ୍ଟିଗୋଚର ହୋଇଥାଏ । ବାର୍ତ୍ତାମୁଖୀ ସମାଲୋଚନାରୁ ଓଡ଼ିଆ ସମାଲୋଚନାର ଆରମ୍ଭ । ସେଥିରେ ସାହିତ୍ୟର ଦୃଷ୍ଟି ଓ ଦର୍ଶନ ପ୍ରତି ଇଙ୍ଗିତ ବିଦ୍ୟମାନ । ତଦ୍‌ପରେ ପ୍ରାଚୀନ ତଥା ରୀତିଯୁଗର କବିମାନଙ୍କର ଜନ୍ମ-ଜୀବନୀ- ସାହିତ୍ୟ ସାଧନା ସାହିତ୍ୟିକ ଆଦର୍ଶ ସମ୍ପର୍କରେ ଆଲୋଚନାମାନ ପ୍ରକାଶିତ ହେଲା । ପ୍ରଥମଥର ପାଇଁ ନୂତନ ଶିକ୍ଷିତ ଗୋଷ୍ଠୀ ବ୍ୟତିତ ଓଡ଼ିଶାର ସମୃଦ୍ଧ ରୀତି ସାହିତ୍ୟ ସମ୍ପର୍କରେ ଅବହିତ ହେଲା । ଫଳରେ ସେହି ସାହିତ୍ୟକୁ ନେଇ ଦୁଇ ଆଲୋଚନା ଶିବିରର ସୂତ୍ରପାତ ହେଲା । ଦଳେ ପ୍ରାଚୀନ ସାହିତ୍ୟର ଆଙ୍ଗିକ ଗୌରବ ଓ କାବ୍ୟିକ ରସବୋଧର ପ୍ରଶଂସା କଲାବେଳେ ଦଳେ ତାର ଶବ୍ଦ- ଅଳଙ୍କାର ଶୃଙ୍ଗାର ରସ ସମନ୍ୱିତ ରୂପ ବିଳାସକୁ କଠୋର ସମାଲୋଚନା କଲେ । ଏହି ଦ୍ୱନ୍ଦ୍ୱରୁ ପ୍ରାଚୀନ ସାହିତ୍ୟିକ ପ୍ରକୃତ ମୂଲ୍ୟାୟନ ପ୍ରତି ସ୍ୱତଃ ଏକ ଆଗ୍ରହ ପ୍ରକାଶିତ ହେଲା ଏବଂ ଅପରପକ୍ଷରେ ଆଧୁନିକ ସାହିତ୍ୟ ପ୍ରତି ଶ୍ରଦ୍ଧା ବୃଦ୍ଧି ପାଇଲା । ବିଂଶ ଶତାବ୍ଦୀର ଆରମ୍ଭରୁ ଏହି ଦିଗରେ ନିରବଚ୍ଛିନ୍ନ ଉଦ୍ୟମ ହୋଇଥିବା ସମାଲୋଚନାମାନଙ୍କରୁ ଲକ୍ଷ୍ୟ କରାଯାଇଥାଏ । ପତ୍ରପତ୍ରିକାର ବିକାଶ ଓ ନୂତନ ରୁଚିର ବିବର୍ତ୍ତନ ଫଳରେ ସମାଲୋଚନା ସାହିତ୍ୟରେ ଏକ ଗୌରବପୂର୍ଣ୍ଣ ସ୍ଥାନ ଗ୍ରହଣ କଲା । 'ଉତ୍କଳ ସାହିତ୍ୟ' 'ମୁକୁର' 'ସହକାର' ପ୍ରଭୃତି ପତ୍ରିକା ଓଡ଼ିଆ ସମାଲୋଚନାକୁ ଉତ୍ସାହିତ କଲେ । ଏହାରି ଫଳରେ ପ୍ରାଚୀନ କବିମାନଙ୍କ ସମ୍ପର୍କରେ ଅନ୍ଧକାରରେ ଥିବା ଓଡ଼ିଆ ପାଠକଗଣ ଆଲୋକର ସନ୍ଧାନ ପାଇଲେ ।

ପ୍ରାଚୀ ସମିତି ପ୍ରତିଷ୍ଠା ଓ ପ୍ରାଚୀ ପତ୍ରିକା ପ୍ରକାଶନ ଫଳରେ ପ୍ରାଚୀନ ସାହିତ୍ୟର

ପୋଥିରୂପିଣୀ ପାଷାଣୀ ଅହଲ୍ୟାଗଣ ନୂତନ ଜୀବନ୍ୟାସ ପାଇଲେ ଏହାଦ୍ୱାରା ପ୍ରାଚୀନ ସାହିତ୍ୟ ସମ୍ପର୍କରେ ଆଲୋଚନାର ଦ୍ୱାର ସୁଗମ ହେଲା । ଅପରପକ୍ଷରେ ନୂତନ ସାହିତ୍ୟ ସହିତ ଏକ ତୁଳନାତ୍ମକ ଆଲୋଚନା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ହେଲା । ଶ୍ୟାମସୁନ୍ଦର ରାଜଗୁରୁ, ଗୋପୀନାଥ ନନ୍ଦ ଶର୍ମା, ମୃତ୍ୟୁଞ୍ଜୟ ରଥ, ଜଗବନ୍ଧୁ ସିଂହ ପ୍ରମୁଖ ଯେଉଁ ଆଲୋଚନା ଧାରାଟି ଗଡ଼ାଇ ଆଣିଥିଲେ ପରବର୍ତ୍ତୀ କାଳରେ ପଣ୍ଡିତ ନୀଳକଣ୍ଠ, ଆର୍ତ୍ତବଲ୍ଲଭ ମହାନ୍ତି, ବିନାୟକ ମିଶ୍ର ପ୍ରମୁଖ ସେହି ଧାରାକୁ ଭିନ୍ନ ରୂପ ଦେଲେ । ନୀଳକଣ୍ଠଙ୍କ ସମାଲୋଚନାରେ ସାଂସ୍କୃତିକ ପଟ୍ଟଭୂମି ମଧ୍ୟରେ ଜାତୀୟତାର ସ୍ୱାଭିମାନ ଫୁଟିଉଠି ଏକ ତାତ୍ତ୍ୱିକ ତଥା ଗବେଷଣାତ୍ମକ ଦୃଷ୍ଟିକୋଣ ପ୍ରକାଶିତ ହୋଇଥିଲାବେଳେ ଆର୍ତ୍ତବଲ୍ଲଭଙ୍କ ସମାଲୋଚନାରେ ପ୍ରାଚୀନ କାବ୍ୟିକ ପରିବେଶ- ସାମାଜିକ ସ୍ଥିତି- ଅଳଙ୍କାରିକ ପୃଷ୍ଠଭୂମି ଓ ସର୍ବୋପରି ବୈଷ୍ଣବୀୟ ଭାବାଦର୍ଶର ସ୍ୱରୂପ ଦେଖିବାକୁ ମିଳିଲା । ପ୍ରାଚୀନ କବିମାନଙ୍କର କାବ୍ୟ- ଶାସ୍ତ୍ର ଅଧ୍ୟୟନ ପୂର୍ବକ ସେମାନଙ୍କର ଜନ୍ମ- ଜୀବନୀ- ଜୀବିକା ଓ ସାହିତ୍ୟ ସାଧନାର କାଳ ନିରୂପଣ ସମ୍ପର୍କରେ ସେ ପ୍ରାଧାନ୍ୟ ଦେଲେ । ବିନାୟକ ମିଶ୍ର ଇତିହାସର ପୃଷ୍ଠଭୂମି ଉପରେ ନାନ୍ଦନିକ ତଥା ସାଂସ୍କୃତିକ ବିଶ୍ଲେଷଣ କଲେ । ସ୍ୱାଧୀନତା ପର୍ଯ୍ୟନ୍ତ ଓଡ଼ିଆ ସମାଲୋଚନାରେ ପ୍ରାଚୀନ ସାହିତ୍ୟ ତଥା ଆଧୁନିକ ସାହିତ୍ୟ ସମ୍ପର୍କରେ ବିଭିନ୍ନ ଲେଖାମାନ ପ୍ରକାଶିତ ହେଲା । ଏସବୁ ସତ୍ତ୍ୱେ ଓଡ଼ିଆ ସମାଲୋଚନା ତଥ୍ୟ ଓ ତତ୍ତ୍ୱାଶ୍ରୟୀ ହୋଇପଡ଼ିବାରୁ ଏବଂ ପ୍ରାଚୀନତା ଓ ନବୀନତାର ଦ୍ୱନ୍ଦ୍ୱ ମଧ୍ୟରେ ସୀମାବଦ୍ଧ ହୋଇଯାଇଥିବାରୁ ମନେହୁଏ, ସତେ ଯେପରି ଏହା ପୂର୍ଣ୍ଣତା ପାଇଁ ଅପେକ୍ଷା କରି ରହିଥିଲା ।

ସ୍ୱାଧୀନତା ପରେ ଓଡ଼ିଆ ସମାଲୋଚନାର ଯେ କେବଳ ପରିମାଣାତ୍ମକ ଦୃଷ୍ଟିରୁ ବିକାଶ ସାଧିତ ହୋଇଛି ତାହା ନୁହେଁ । ଗୁଣାତ୍ମକ ଦୃଷ୍ଟିରୁ ମଧ୍ୟ ଏହାର ବିକାଶ ଦେଖିବାକୁ ମିଳେ । ୧୯୪୩ ମସିହାରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ଓଡ଼ିଶାରେ ବିଭିନ୍ନ ମହାବିଦ୍ୟାଳୟ ପ୍ରତିଷ୍ଠା ଏବଂ ଓଡ଼ିଆ ଭାଷା ଓ ସାହିତ୍ୟ ଅଧ୍ୟୟନ ପ୍ରତି ଆଗ୍ରହ ବୃଦ୍ଧି ଫଳରେ ଓଡ଼ିଆ ସାହିତ୍ୟର ବିକାଶ ହେବା ସଂଗେ ସଂଗେ ଓଡ଼ିଆ ସମାଲୋଚନାର ମଧ୍ୟ ବିକାଶ ହେବାକୁ ଲାଗିଲା । ଅବଶ୍ୟ ଅନେକ ସମୟରେ ସମାଲୋଚନା ପ୍ରୟୋଜନ ଭିତ୍ତିକ ଓ ଛାତ୍ର ପଠନାପଯୋଗୀ ହୋଇ ଯାଉଥିବା ଲକ୍ଷ୍ୟ କରାଯାଏ । ସେଥିରୁ ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ ନାହିଁ । ବିଶ୍ୱବିଦ୍ୟାଳୟ ତଥା ମହାବିଦ୍ୟାଳୟମାନଙ୍କୁ ଅବଲମ୍ବନ କରି ଯେଉଁ ଅଧ୍ୟାପକ ଗୋଷ୍ଠୀ ଅଧ୍ୟାପନା କରୁଅଛନ୍ତି ସେମାନେ ଓଡ଼ିଆ ସମାଲୋଚନା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିବା ଦେଖାଯାଏ । ସେହିମାନଙ୍କ ମଧ୍ୟରେ ଡକ୍ଟର କାହ୍ନୁଚରଣ ମିଶ୍ର ଜଣେ ତତ୍ତ୍ୱାନ୍ୱେଷୀ ବଳିଷ୍ଠ ସମାଲୋଚକ ଭାବରେ ଦୃଷ୍ଟି ଆକର୍ଷଣ କରନ୍ତି । ୧୯୫୦ ଉତ୍ତର କାଳରୁ ଏଯାବତ

ସେ ବିଭିନ୍ନ ସମାଲୋଚନା ଲେଖିଅଛନ୍ତି । ଆଧୁନିକ ସାହିତ୍ୟର ବିଭିନ୍ନ ଦିଗ ସମ୍ପର୍କରେ ମଧ୍ୟ ସମାଲୋଚନାତ୍ମକ ପ୍ରବନ୍ଧ ଲେଖିଛନ୍ତି । କିନ୍ତୁ ତାଙ୍କର ସମାଲୋଚନା ମୁଖ୍ୟତଃ ପ୍ରାଚୀନ ସାହିତ୍ୟ ସମ୍ପର୍କିତ ଓ ବିଶେଷତଃ ଧର୍ମ ଓ ଦର୍ଶନ ଭିତ୍ତିକ । ସାହିତ୍ୟର ମୂଲ୍ୟାୟନ କରୁଥିବାବେଳେ ତାଙ୍କର ସମାଲୋଚନାତ୍ମକ ପ୍ରଜ୍ଞାଦୃଷ୍ଟି ଧର୍ମର କେନ୍ଦ୍ରବିନ୍ଦୁକୁ ଅବଧାରଣ କରି ତାରି ଭିତରୁ ଜୀବନର ଶାସ୍ୱତ ଭାବବୋଧକୁ ଆକଳନ କରିଥିବା ଲକ୍ଷ୍ୟ କରାଯାଏ । ସମାଲୋଚିତ କାବ୍ୟ ବା ସାହିତ୍ୟର ଯେ କୌଣସି ବିଭବ ବା କାବ୍ୟ- ସ୍ରଷ୍ଟା ସମ୍ପର୍କରେ ତାଙ୍କର ସିଦ୍ଧାନ୍ତକୁ ସେ ସ୍ପଷ୍ଟ ଭାବରେ ପ୍ରକାଶ କରନ୍ତି । ଅବଶ୍ୟ ଏହି ସିଦ୍ଧାନ୍ତ ତାଙ୍କର ଅନେକ ସମୟରେ ଆବେଗିକ ଓ ଅତି କଥନଧର୍ମୀ ହୋଇଥିବା ମଧ୍ୟ ଅନୁଭୁତ ହୁଏ ।

ଡକ୍ଟର ମିଶ୍ର କହନ୍ତି- ''ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ କି ରତ୍ନରାଜି ନିହିତ ଓ କି ମୂଲ୍ୟବାନ ବିଭବ ରହିଛି, ତାହା ସାଧାରଣ ପାଠକକୁ ପରିବେଷଣ କରିବା ପାଇଁ ମୋର ବହୁଦିନରୁ ବାସନା ଥିଲା । ସେହି ବାସନାର ବଶବର୍ତ୍ତୀ ହୋଇ ମୁଁ ଆଲୋଚନାମୂଳକ କେତେକ ପ୍ରବନ୍ଧ ଲେଖିଥିଲି ।'' ଏହି ବାସନାର ପରିପ୍ରକାଶ ରୂପେ ସେ ବୌଦ୍ଧଧର୍ମ ଓ ଦର୍ଶନ, ଗୌଡୀୟ ବୈଷ୍ଣବ ଧର୍ମ ସାହିତ୍ୟ, କବି ସାରଳା ଦାସ, ଯୋଗୀ ଜଗନ୍ନାଥ ଦାସ, ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅଗମର ପ୍ରଭାବ, ସହଜିଆ ତତ୍ତ୍ୱ ଓ ପଞ୍ଚସଖା, ଦୀନକୃଷ୍ଣ ଓ ରସକଲ୍ଲୋଳ ଭଞ୍ଜ ସାହିତ୍ୟରେ ନାୟିକା ବର୍ଣ୍ଣନା, ଭଞ୍ଜ ସାହିତ୍ୟରେ ସନ୍ଧ୍ୟା ଓ ପ୍ରଭାତ ବର୍ଣ୍ଣନା, ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ବସନ୍ତ ବର୍ଣ୍ଣନା, ପାରଳାଖେମୁଣ୍ଡିରେ ସଙ୍ଗୀତ ଚର୍ଚ୍ଚା, କବି ଭକ୍ତଚରଣ ଓ ମଥୁରାମଙ୍ଗଳ, ବିଦଗ୍ଧ କବି ଅଭିମନ୍ୟୁ, କବି ଗୋପାଳକୃଷ୍ଣ, ରସ- ରୀତି ଓ ପୁଣ, ରହସ୍ୟମଞ୍ଜରୀ ଓ ଦେବଦୁର୍ଲ୍ଲଭ, ପ୍ରେମ ପଞ୍ଚାମୃତ ଆଦି ଅନେକ ସମାଲୋଚନାତ୍ମକ ପ୍ରବନ୍ଧ ଲେଖିଛନ୍ତି, ପ୍ରାଚୀନ ସାହିତ୍ୟ ସମ୍ପର୍କରେ ସେ ଯେଉଁସବୁ ଆଲୋଚନା ମାନ ଲେଖିଛନ୍ତି । ସେଥିରେ ଧର୍ମକୁ କେନ୍ଦ୍ରବିନ୍ଦୁ ଭାବରେ ଗ୍ରହଣ କରି ନେଇଛନ୍ତି । ତେଣୁ ସେ ରୀତିକାବ୍ୟ କବିତାର ନାନ୍ଦନିକ ବିଚାର କରିଥିଲେ ହେଁ ତାଙ୍କ ତତ୍ତ୍ୱାନ୍ୱେଷୀ ମନ ଧର୍ମକୁ ମୂଖ୍ୟ ଭାବରେ ଗ୍ରହଣ କରିନେଇଛି । ଏହି ବିଚାରବୋଧରୁ 'ଓଡ଼ିଶୀ ବୈଷ୍ଣବ ଧର୍ମ', 'ଓଡ଼ିଆ ସାହିତ୍ୟରେ ଧର୍ମଧାରା', The Cult of Jagannath 'ଓଡ଼ିଆ ସାହିତ୍ୟରେ ସଗୁଣ ଓ ନିର୍ଗୁଣ ଉପାସନା' ଆଦି ବିଭିନ୍ନ ପୁସ୍ତକ ଓ ପ୍ରବନ୍ଧଗୁଡ଼ିକ ସୃଷ୍ଟି ।

'ଓଡ଼ିଶୀ ବୈଷ୍ଣବ ଧର୍ମ' ତାଙ୍କର ଏକ କ୍ଷୁଦ୍ର ପୁସ୍ତକ । ଅଥଚ ପୁସ୍ତକର ସୀମିତ ପରିସର ମଧ୍ୟରେ ଓଡ଼ିଶୀ ବୈଷ୍ଣବ ଧର୍ମର ସେ ଯେପରି ତାତ୍ତ୍ୱିକ ବ୍ୟାଖ୍ୟା ଓ ବିଶ୍ଳେଷଣ କରି ତାର ସ୍ୱରୂପକୁ ପ୍ରକାଶ କରିଅଛନ୍ତି ତାହା ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ଗ୍ରନ୍ଥରେ ଶ୍ରୀ ଜଗନ୍ନାଥଙ୍କୁ ଓଡ଼ିଶୀ ବୈଷ୍ଣବ ଧର୍ମ କେନ୍ଦ୍ରରେ ଅବସ୍ଥାପନ କରିଛନ୍ତି । ଶ୍ରୀ ଜଗନ୍ନାଥଙ୍କର ଅଣାକାର ସ୍ୱରୂପ,

ତାଙ୍କ ନାମର ମାହାତ୍ମ୍ୟ ଓ ତତ୍ତ୍ୱ, ଜଗନ୍ନାଥ ଆମର ବୈଶିଷ୍ଟ୍ୟ, ଶ୍ରୀ ଜଗନ୍ନାଥଙ୍କର ଅବତାରିତ୍ୱ, ଶ୍ରୀକୃଷ୍ଣ ଓ ଶ୍ରୀ ଜଗନ୍ନାଥଙ୍କର ସମ୍ପର୍କ ସମନ୍ୱୟ ଅଭେଦିତ୍ୱ; ଶୂନ୍ୟ ଉପାସନା ଓଡ଼ିଶୀ ବୈଷ୍ଣବ ବିଧର୍ମରେ ଲୀଳା-ଲୟ-ରସ ଓ ଛାୟା, ଜ୍ୟୋତି, ଅବାଡ, ହଳ, ସମାଧି ଆଦି ଅଷ୍ଟ ସାଧନାର ତାତ୍ପର୍ଯ୍ୟ, ଷଡଚକ୍ର ସାଧନା, ବ୍ରହ୍ମପ୍ରାପ୍ତି ଓ ମୋକ୍ଷ, ଜ୍ଞାନମିଶ୍ରା ଭକ୍ତିର ବୈଶିଷ୍ଟ୍ୟ, ପଞ୍ଚସଖା ଓ ପଞ୍ଚଶାଖା ପରିକଳ୍ପନା ଆଦିକୁ ଯେପରି ସେ ଏହି କ୍ଷୁଦ୍ର ପୁସ୍ତକରେ ପ୍ରକାଶ କରିଅଛନ୍ତି, ପଞ୍ଚସଖା ସାହିତ୍ୟରେ ନିର୍ଗୁଣ ବ୍ରହ୍ମ ଉପାସନା ଭିତରେ ପ୍ରେମର ଦୀପ୍ତିକୁ ଯେପରି ଅନୁଭବ କରିଅଛନ୍ତି ସେଥିରୁ ତାଙ୍କର ପାଣ୍ଡିତ୍ୟ ଓ ତତ୍ତ୍ୱାନ୍ୱେଷୀ ଦୃଷ୍ଟିକୋଣର ପରିଚୟ ମିଳେ । ପଞ୍ଚସଖା ସାହିତ୍ୟ ଅନୁଶୀଳନ ପ୍ରସଙ୍ଗରେ ସେ ଧର୍ମବୋଧ ଓ ମୋକ୍ଷବାଦକୁ ସେଥିରେ ମୁଖ୍ୟ ଭାବରେ ଦେଖିଛନ୍ତି । ଏହି ଅନୁଶୀଳନ ହିଁ ତାଙ୍କୁ The Cult of Jagannath ଲେଖିବାକୁ ପ୍ରେରଣା ଦେଇଥିଲା । ଶ୍ରୀ ଜଗନ୍ନାଥ ଧର୍ମ ହିଁ ତାଙ୍କ ଧର୍ମ ଧାରଣାର ମୁଖ୍ୟ ଭାବ ବିଭବ । ସାହିତ୍ୟାଲୋଚନା ଅପେକ୍ଷା ସେ ଏହି କାରଣରୁ ଧର୍ମ ଉପରେ ଗୁରୁତ୍ୱ ଦେଇଛନ୍ତି । ସେ ତେଣୁ ଯୁଗ ସାହିତ୍ୟ ବିଶ୍ଳେଷଣ କରୁକରୁ ସେହି ଧର୍ମ କେନ୍ଦ୍ରକୁ ଆସି କହିଛନ୍ତି- 'ମାନବ ଧର୍ମବୋଧ ମୁକ୍ତିର ପରିକଳ୍ପନା- ମୁକ୍ତିଦାତା ରୂପେ ସେଠାରେ ଭଗବାନ ହିଁ ଲକ୍ଷ୍ୟବସ୍ତୁ । ଏହି ମୁକ୍ତି ପରିକଳ୍ପନା ମାନବକୁ ତାର ଧର୍ମବୋଧ ସୃଷ୍ଟିରେ ସାହାଯ୍ୟ କରିଛି । ସେ ଧର୍ମବୋଧ ପୁଣି ଆମ କଳା, ଜୀବନ ଓ ସାହିତ୍ୟକୁ ନିୟନ୍ତ୍ରଣ କରୁଛି । ତେଣୁ ଧର୍ମବୋଧକୁ ଜାଗ୍ରତ କରିବା ପାଇଁ ସକଳ ପ୍ରକାର ଶିଳ୍ପର ପ୍ରଚେଷ୍ଟା । ତେଣୁ ଓଡ଼ିଆ ସାହିତ୍ୟ ସେହି ଧର୍ମବୋଧ ଦ୍ୱାରା ବିଭିନ୍ନ ଯୁଗରେ ନିୟନ୍ତ୍ରିତ ଓ ତାର ବିକାଶର ସହାୟକ ହୋଇଅଛି ।'' ଡକ୍ଟର ମିଶ୍ରଙ୍କ ଆଲୋଚନାର ଧାରାରେ ଧର୍ମବୋଧ ପ୍ରାଧାନ୍ୟ ଲାଭ କରିଥିବାରୁ ସାହିତ୍ୟିକ ଶୈଳୀଗତ ବିଚାର ହ୍ରାସ ପାଇଥିବା ଲକ୍ଷ୍ୟ କରାଯାଏ । ଯେତେବେଳେ ସେ ଗୌଡୀୟ ବୈଷ୍ଣବ ସାହିତ୍ୟ ଅନୁଶୀଳନ କରିଛନ୍ତି ସେତେବେଳେ ସେ କହନ୍ତି- ''ଅପ୍ରାକୃତ ମଧୁର ରସର ଉପଲବ୍ଧି ହିଁ ଗୌଡୀୟ ବୈଷ୍ଣବ ସାହିତ୍ୟ ସମାଲୋଚନାର ମୂଳ ଲକ୍ଷ୍ୟ ।

ଗୌଡୀୟ ବୈଷ୍ଣବ ସାହିତ୍ୟ ଓ ପଞ୍ଚସଖା ସାହିତ୍ୟର ତୁଳନାତ୍ମକ ସାହିତ୍ୟର ବିଚାର କରି ସେ କହନ୍ତି ଗୌଡୀୟ ବୈଷ୍ଣବ ଧର୍ମରେ- ''ପ୍ରେମ ବା ପ୍ରୀତି ପରକୀୟା ରସର ଆଶ୍ରୟସ୍ଥଳ । ଏହି ପ୍ରେମ ସହଜିଆମାନଙ୍କର ପ୍ରଧାନ ଅବଲମ୍ବନ ।'' ସେ ପୁଣି କହନ୍ତି - ''ଉତ୍କଳର ସ୍ୱନାମଧନ୍ୟ ପଞ୍ଚସଖାଙ୍କୁ କେହି ସହଜିଆ ବୋଲି ଅନୁମାନ କରିଅଛନ୍ତି । ମାତ୍ର ଅଭିନିବେଶ ସହକାରେ ଅନୁଧ୍ୟାନ କଲେ ଏହା ପ୍ରତୀୟମାନ ହୁଏ ଯେ, ଓଡ଼ିଶାର ପଞ୍ଚସଖାମାନେ ସହଜିଆ ଧର୍ମର ପୋଷକ ନଥିଲେ । ଓଡ଼ିଶାରେ ପଞ୍ଚସଖାମାନେ କେବଳ ନିବୃତ୍ତି ମାର୍ଗର ଉପାସକ ଥିଲେ । ପ୍ରଥମତଃ ନିବୃତ୍ତି ମାର୍ଗରେ ସାଧନାପନ୍ଥା ଅବଲମ୍ବନ କରି

ପରେ ସାଧକ ଭାବରେ ପରମାତ୍ମା ରୂପେ କୃଷ୍ଣଙ୍କର ଲୀଳାସ୍ୱାଦନ କଲେ । ତାହା ପରେ ନିବୃତ୍ତି ମାର୍ଗରେ ଆଶ୍ରୟ ନେଲେ । ଉଭୟ ଗୋଷ୍ଠୀର ସାଧନ ପ୍ରକ୍ରିୟା ଓ ସାହିତ୍ୟ ସୃଷ୍ଟିକୁ ସେ ବିଚାର ମଧ୍ୟକୁ ନେଇ ମତବ୍ୟକ୍ତ କରିଛନ୍ତି- ''ଚୈତନ୍ୟଙ୍କର ଅପରିହାର୍ଯ୍ୟ ପ୍ରଭାବ ଓଡ଼ିଶାର ପଞ୍ଚସଖାମାନଙ୍କ ଉପରେ ପ୍ରତିଫଳିତ ହୋଇଅଛି । ସେମାନେ ଚୈତନ୍ୟଙ୍କୁ ଗୁରୁ ବୋଲି ଗ୍ରହଣ କରି ନିଜର ଜୀବନକୁ ଆଦର୍ଶ ଭାବରେ ପରିଚାଳିତ କରିଥିଲେ ମାତ୍ର ଗୌଡୀୟ ବୈଷ୍ଣବମାନେ ଚୈତନ୍ୟଙ୍କ ପରେ ସହଜିଆ ଧର୍ମକୁ ସମ୍ପୂର୍ଣ୍ଣ ରୂପେ ଆଲିଙ୍ଗନ କରିବାକୁ ଲାଗିଲେ । ଆସିଲା ଅସଂଯମର ଲୀଳା । କ୍ରମେ ଯୋଗକୁ ପରିହାର କରିବା ଦ୍ୱାରା ସେମାନଙ୍କର ଚିତ୍ତ- ସଂଯମ ଏକାବେଳକେ ନଷ୍ଟ ହୋଇଗଲା । ଆସିଲା ଧର୍ମର ବ୍ୟଭିଚାର । ଶୁଣାଯାଏ, ଯେ ଏକଦିନେ ଅନେକ ସହଜିଆ ବୈଷ୍ଣବୀ ଗୋଟିଏ ମେଳରେ ନେଡ଼ ନେଡୀରେ ପରିଣତ ହୋଇଗଲେ । ମାତ୍ର ଏହି ପ୍ରକାର ପରିବର୍ତ୍ତନ ଓ ପରିଣତି ଓଡ଼ିଶାର ବୈଷ୍ଣବମାନଙ୍କ ଆଚରଣରେ କଦାପି ପରିଦୃଷ୍ଟ ହୁଏ ନାହିଁ । ପଞ୍ଚସଖାମାନଙ୍କର ଆଚରଣ ଦେଖିଲେ ମନେହୁଏ ସେମାନେ ଗୋଟିଏ ଗୋଟିଏ ଦେବୋପମ ବ୍ୟକ୍ତି ଥିଲେ । ସେମାନେ ପରମାତ୍ମାଙ୍କର ଆଶୀର୍ବାଦ ଲାଭ କରିପାରିଥିଲେ । ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ଡକ୍ଟର ମିଶ୍ରଙ୍କର ପଞ୍ଚସଖା ସାହିତ୍ୟାଦର୍ଶ ଓ ଧର୍ମଦର୍ଶନ ପ୍ରତି ଗଭୀର ଅନୁରକ୍ତି ଅଛି । 'ଓଡ଼ିଶୀ ବୈଷ୍ଣବ ଧର୍ମ' ପୁସ୍ତକରେ ସେ ଏହି ଅନୁରକ୍ତିକୁ ପ୍ରକାଶ କରିଅଛନ୍ତି । ସେ ପୁଣି 'ଓଡ଼ିଆ ସାହିତ୍ୟରେ ସଗୁଣ ଓ ନିର୍ଗୁଣ ଉପାସନା' ପ୍ରବନ୍ଧରେ ଉତ୍କଳୀୟ ବୈଷ୍ଣବ ସାଧକମାନଙ୍କ ସମ୍ପର୍କରେ ଆଲୋଚନା କରି କହିଛନ୍ତି ୪୦୦''ଉତ୍କଳର ସାଧକମାନେ ସଗୁଣ ଓ ନିର୍ଗୁଣ ଉଭୟର ଉପାସକ ଥିଲେ ମଧ୍ୟ ନିର୍ଗୁଣ ହିଁ ସେମାନଙ୍କର ଲକ୍ଷ୍ୟ । ଅବଶ୍ୟ ନିଳାଦ୍ରି ବିହାରୀ ଜଗନ୍ନାଥଙ୍କୁ ସାକାର, ନିରାକାର, ରୂପ ଅରୂପ, ସଗୁଣ ଓ ନିର୍ଗୁଣ ଭାବରେ ପରିକଳ୍ପନା କରାଯାଇଥିବାରୁ ଉତ୍କଳୀୟ ବୈଷ୍ଣବ ଧର୍ମ ଗ୍ରନ୍ଥର ରଚୟିତାମାନେ ଏହି ଉଭୟ ଉପାସନାକୁ ଗ୍ରହଣ କରିଅଛନ୍ତି । ଫଳରେ ସାହିତ୍ୟ ଜଗତରେ ଓ ଉପାସନା କ୍ଷେତ୍ରରେ ଧର୍ମବୋଧର ସୃଷ୍ଟି ହୋଇଅଛି । ଭାରତୀୟ ସାହିତ୍ୟ ଓ ସଂସ୍କୃତିର ଆଲୋଚନାରୁ ପରିଜ୍ଞାତ ହୁଏ ଯେ ଧର୍ମ ହିଁ ଏ ଦେଶର ସଭ୍ୟତା ଓ ସଂସ୍କୃତିର ମୂଳଭିତ୍ତି । ଭାରତୀୟ ଜୀବନ, ଆଚାର ବ୍ୟବହାର ଏବଂ ସାମାଜିକ ବିଧିବିଧାନର ପରିକଳ୍ପନା ଧର୍ମଧାରାର ସମ୍ପର୍କ ବିହୀନତାରେ ଅସମ୍ଭବ । ଏ କ୍ଷେତ୍ରରେ ଉତ୍କଳ ସ୍ୱତନ୍ତ୍ର ସମ୍ମାନ ଦାବି କରେ । ପୁରାଣର ବା ଉତ୍କଳଖଣ୍ଡର ଅନ୍ତର୍ଭାବ ଯେପରି ଏ ଦେଶର ଧାର୍ମିକ ଗୌରବର ଦ୍ୟୋତକ, ଜଗନ୍ନାଥଙ୍କ ପରି ବିଶ୍ୱବନ୍ଦ୍ୟ ଗଣଦେବତାର ପ୍ରତିଷ୍ଠା ସେହିପରି ଏ ଦେଶର ନୈତିକ ଓ ଆଧ୍ୟାତ୍ମିକ ଉତ୍କର୍ଷର ବ୍ୟଞ୍ଜକ ।'' ଏହି ପ୍ରସଙ୍ଗରୁ ତାଙ୍କର ଉତ୍କଳୀୟ ସ୍ୱାଭିମାନତା ଓ ଜଗନ୍ନାଥ ଅନୁରକ୍ତିର ପରିଚୟ ମିଳେ । ଜଗନ୍ନାଥଙ୍କୁ ସେ ଗଣଦେବତା ସ୍ତରକୁ ନେଇ ଆସିଛନ୍ତି ।

ଏକ ପ୍ରଚଣ୍ଡ ଜାତୀୟ ସ୍ୱାଭିମାନବୋଧ ତାଙ୍କର ଆଲୋଚନାମାନଙ୍କରେ ସ୍ପଷ୍ଟ । ମାଟିର ମହାକବି ସାରଳା ଦାସଙ୍କର ସାହିତ୍ୟିକ ବୈଶିଷ୍ଟ୍ୟକୁ ଆଲୋଚନା କରିବା ସଂଗେ ସଂଗେ ତାଙ୍କୁ ଗଣସାହିତ୍ୟିକ ଭାବରେ ସମ୍ମାନ ଦେଇଛନ୍ତି । ସାରଳା ଦାସଙ୍କ ସମ୍ପର୍କରେ ସେ କହନ୍ତି- ''ଓଡ଼ିଆ ଜାତିକୁ ସେ ଠିକ୍ ପଥରେ ଚଳିବାକୁ ଆହ୍ୱାନ କରି ଯାଇଅଛନ୍ତି । ଆମ ଜାତୀୟ ଜୀବନର କୌଣସି ଚିତ୍ର ତାଙ୍କର ଦୃଷ୍ଟିକୁ ଏଡାଇପାରିନାହିଁ । ତାଙ୍କର ମହାଭାରତ ଏ ଜାତିର ଅମୂଲ୍ୟ ସଂପଦ- ଜାତିର କୋଟିନିଧି ! ନାନା ପ୍ରକାର ବିଷୟ ବସ୍ତୁରେ ଏ ଗ୍ରନ୍ଥ ଅଜୀବ ରମଣୀୟ ହୋଇଅଛି । ଜାତିର ନାନାବିଧ ବିକାଶ ଓ ଅଗ୍ରଗତିରେ ଏ ଗ୍ରନ୍ଥ ଯଥେଷ୍ଟ ସହାୟତା କରିଅଛି । ଏଥିରେ ସନ୍ଦେହ ନାହିଁ । xxx ସାରଳା ଦାସ ପ୍ରକୃତ ଗଣସାହିତ୍ୟ ସୃଷ୍ଟି କରିଯାଇଅଛନ୍ତି ।'' ଶ୍ରୀ ଜଗନ୍ନାଥଙ୍କୁ ସେ ପରମତତ୍ତ୍ୱ- ଦେବତା ରୂପେ ଆଲୋଚନା କରିଥିଲେ ମଧ, ତାଙ୍କୁ ସଗୁଣ ଓ ନିର୍ଗୁଣ ଲୀଳାର ପ୍ରତୀକ ଭାବରେ ଗ୍ରହଣ କରିଥିଲେ ମଧ ତାଙ୍କୁ ଗଣଦେବତା ଭାବରେ ପ୍ରତିପାଦନ କରିବା ଓ ତାଙ୍କୁ କେନ୍ଦ୍ରକରି ରଚିତ ବୈଷ୍ଣବ ସାଧକମାନଙ୍କ ସାହିତ୍ୟକୁ ଗଣ ସାହିତ୍ୟ ରୂପେ ବିଚାର କରିବା ଦ୍ୱାରା ତାଙ୍କର ଗଣଧର୍ମୀ ଆଭିମୁଖ୍ୟ ସ୍ପଷ୍ଟ ହୋଇଉଠେ । ଅଧିକନ୍ତୁ ଏଥିରୁ ତାଙ୍କର ଜାତୀୟ ସ୍ୱାଭିମାନ ଦୃଷ୍ଟିକୋଣ ପ୍ରକାଶିତ ହୁଏ । ଜଗନ୍ନାଥ ଦାସଙ୍କ ଭାଗବତ ଆଲୋଚନା ପ୍ରସଙ୍ଗରେ ତାଙ୍କର ଅଭିମତ ପ୍ରଣିଧାନଯୋଗ୍ୟ- ''ବର୍ତ୍ତମାନ ଜାତିର ଯେ ଅବସ୍ଥା, ତାହା ଦେଖିଲେ ମନେହୁଏ, ଆଜି ଜାତି ମୃତପ୍ରାୟ । ଜାତିର ଧମନୀରେ ସେ ପବିତ୍ର ରକ୍ତ ସତେ କି ଆଉ ପ୍ରବାହିତ ହେଉନାହିଁ । ଜାତିର ପ୍ରାଣରେ ମୃତ୍ୟୁ ସଞ୍ଜିବନୀ ସେଚନ କରି ତାକୁ ଠିକ୍ ପଥରେ ଚାଳିତ କରିବାକୁ ଜାତି ଆଜି ବ୍ୟାକୁଳତା ପ୍ରାଣରେ ସେହି ଜଗନ୍ନାଥଙ୍କୁ ଡାକୁଛି । ଜଗନ୍ନାଥ ! ତୁମେ ଧନ୍ୟ, ତୁମେ ବର୍ତ୍ତମାନ ପୁନର୍ବାର ଏ ଜାତିର ପ୍ରାଣରେ ନବଜୀବନ ସଂଚାର କରି ଜାତିକୁ ବଳିଷ୍ଠ ଧର୍ମପରାୟଣ କର । ଏହାହିଁ ଏ ଜାତିର କାମନା ।'' କେବଳ ଏହି ପ୍ରସଙ୍ଗ ନୁହେଁ; ଡକ୍ଟର ମିଶ୍ର ଯେତେବେଳେ ଯେଉଁ କବିଙ୍କୁ ବା ସାହିତ୍ୟକୃତିକୁ ଆଲୋଚନା କରିଅଛନ୍ତି ସେତେବେଳେ ତାଙ୍କର ସେହି ଜାତୀୟ ସ୍ୱାଭିମାନ ଦୃଷ୍ଟିକୋଣଟି ଅତ୍ୟନ୍ତ ପ୍ରତିପନ୍ନ ହୋଇଥିବା ଲକ୍ଷ୍ୟ କରାଯାଏ । ସନ୍ଥ କବିଙ୍କ ସାହିତ୍ୟ ବା ଭକ୍ତି ସାହିତ୍ୟକୁ ଆଲୋଚନା କଲାବେଳେ ତାଙ୍କର ଗଣ ଆଭିମୁଖ୍ୟ ଓ ଜାତୀୟ ସ୍ୱାଭିମାନତା ପରିଦୃଷ୍ଟ । ଯେତେବେଳେ ସେ ରୀତିବାକ୍ୟ ଆଲୋଚନା କରିଅଛନ୍ତି ସେତେବେଳେ ତାଙ୍କର ରସ- ଦୃଷ୍ଟି ପ୍ରକାଶିତ ।

ଡକ୍ଟର ମିଶ୍ର ପୁନଶ୍ଚ କହନ୍ତି- ''ଓଡ଼ିଶା ଧର୍ମର ଦେଶ ଏବଂ ଜଗତର ନାଥ ଜଗନ୍ନାଥ ଏ ଦେଶର ପ୍ରାଣପୁରୁଷ । ବିଶ୍ୱବିଶ୍ରୁତ ଜଗନ୍ନାଥ ମନ୍ଦିର ନିର୍ମାଣ ଯୋଗୁ ଭାରତର ବିଭିନ୍ନ ଧର୍ମର ଆଚାର୍ଯ୍ୟ ତଥା ପ୍ରଚାରକମାନେ ପବିତ୍ର ପୁରୁଷୋତ୍ତମ ଧାମକୁ ଆସି ଯେଉଁ

ପରିମାଣରେ ଜଗନ୍ନାଥ ଧର୍ମକୁ ପରିପୁଷ୍ଟ କରିଅଛନ୍ତି ସେହି ପରିମାଣରେ ପ୍ରଭାବିତ ହୋଇଛନ୍ତି ମଧ୍ୟ । ବୌଦ୍ଧ, ଜୈନ, ଶୈବ, ସୌର, ଶାକ୍ତ, ଗାଣପତ୍ୟ ଓ ନାରାୟଣୀୟ ଧର୍ମମତ ତଥା ଧର୍ମାଦର୍ଶର ସମନ୍ୱୟରେ ଜଗନ୍ନାଥ ଧର୍ମ ମହିମାନ୍ୱିତ ହୋଇଅଛି ଏବଂ ଓଡ଼ିଆ ସାହିତ୍ୟ ଏହାର ସ୍ୱାକ୍ଷର ଯେ ବହନ ନକରିଛି ଏପରି ନୁହେଁ ।'' ଓଡ଼ିଆ ସାହିତ୍ୟରେ ଧର୍ମଧାରାକୁ ବିଶ୍ଳେଷଣ କରିବାକୁ ଯାଇ ସେ ଯେପରି ଧର୍ମର ସ୍ୱରୂପ, ଧର୍ମ ଉତ୍ପତ୍ତିର କାରଣ, ଧର୍ମର ସାମାଜିକ ମୂଲ୍ୟବୋଧ, ସମ୍ପର୍କରେ ଆଲୋଚନା କରି ସନାତନ ହିନ୍ଦୁ ଧର୍ମଠାରୁ ଆରମ୍ଭ କରି ପରବର୍ତ୍ତୀ ବୌଦ୍ଧ- ଜୈନ ଇସଲାମ- ଖ୍ରୀଷ୍ଟିୟାନ ଆଦି ଧର୍ମଦର୍ଶନରେ ବ୍ୟାଖ୍ୟା କରି ସାହିତ୍ୟରେ ସେ ସବୁର ପ୍ରତିଫଳନକୁ ଦର୍ଶାଇ ଅଛନ୍ତି ତାହା ଅତ୍ୟନ୍ତ ପ୍ରଣିଧାନ ଯୋଗ୍ୟ । ପ୍ରାଚୀନ ସାହିତ୍ୟଠାରୁ ଆରମ୍ଭ କରି ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ସେ ଧର୍ମର ଏକ ଅପ୍ରତିହତ ପ୍ରବାହ ଲକ୍ଷ୍ୟ କରିଅଛନ୍ତି । ଯୁଦ୍ଧୋତ୍ତର ତଥା ସ୍ୱାଧିନୋତ୍ତର ଓଡ଼ିଆ ସାହିତ୍ୟରେ ମଧ୍ୟ ଧର୍ମଭାବ କିପରି ରହିଛି ସେ ଦିଗକୁ ସେ ଦୃଷ୍ଟିପାତ କରିଛନ୍ତି । ସେ କହନ୍ତି- ''ଅବଶ୍ୟ ଯୁଦ୍ଧୋତ୍ତର ତଥା ସ୍ୱାଧିନୋତ୍ତର ଓଡ଼ିଆ ସାହିତ୍ୟରେ ଧର୍ମପ୍ରତି ଦେଖାଦେଇଛି ଚରମ ଉଦାସୀନତା । ତା ବୋଲି ଭକ୍ତିଧର୍ମର ଧାରା ଉପେକ୍ଷାର ବାଲୁଚରରେ ଏକାବେଳକେ ନିଶ୍ଚିହ୍ନ ହୋଇଯାଇ ନାହିଁ । ନିର୍ଦ୍ଦିଷ୍ଟ ଧର୍ମବୋଧକୁ ପାଥେୟ କରି ସାହିତ୍ୟ ସୃଷ୍ଟି ଆଧୁନିକ ଯୁଗରେ ବିରଳ ହେଲେ ମଧ୍ୟ ଭକ୍ତି ସାହିତ୍ୟ ଜରିଆରେ ବିଭିନ୍ନ ଦେବାଦେବୀଙ୍କ ପାଇଁ ଭକ୍ତିର ନୈବେଦ୍ୟ ବାଢ଼ିବା ଅଭ୍ୟାସ ସମ୍ପୂର୍ଣ୍ଣ ବିଲୁପ୍ତ ହୋଇନାହିଁ । ସ୍ୱାଧୀନୋତ୍ତର ସାହିତ୍ୟରେ ଧର୍ମ କିପରି ଅଫିମ ନିଶାରେ ପରିଣତ ହୋଇ ସ୍ୱକୀୟ ମର୍ଯ୍ୟାଦା ବୁଡ଼ାଇ ଏବଂ କେଉଁ ମାନସିକତା ତଥା ପୃଷ୍ଠଭୂମିରେ ଏହି ଚିନ୍ତାର ଅଙ୍କୁରୋଦ୍‌ଗମ ହୋଇଛି, ତାହାର ଆଲୋଚନା ଏକ ସ୍ୱତନ୍ତ୍ର ପରିଚ୍ଛେଦରେ କରାଯାଇଛି । ଏ ଯୁଗ ମୁଖ୍ୟତଃ ଧର୍ମ ତଥା ଈଶ୍ୱର ବିଶ୍ୱାସ ପ୍ରତି ସନ୍ଦେହ ପୋଷଣ କରି ଏକ ଭିନ୍ନ ପ୍ରବୃତ୍ତିରେ ପରିଚାଳିତ ହୋଇଥିବାରୁ ଏ ଯୁଗର ସାହିତ୍ୟର ସ୍ୱାତନ୍ତ୍ର୍ୟ ଧର୍ମଭିତ୍ତିକ ନ ହୋଇପାରେ, ତା ବୋଲି ଭକ୍ତି ଚେତନା ତଥା ଧାର୍ମିକ ଚିନ୍ତାର ପ୍ରଭାବ ଏ ଯୁଗର କୌଣସି ସାହିତ୍ୟରେ ନାହିଁ, ଏହା କହିହେବ ନାହିଁ । ଏ ଅତ୍ୟାଧୁନିକ ଯୁଗରେ ମଧ୍ୟ ଯାନ୍ତ୍ରିକ ଜୀବନରେ ଭୀଷଣତା ଓ ମାନସିକ ଦୋଳନରୁ ରକ୍ଷା ପାଇବା ପାଇଁ ମୁକ୍ତି ପିପାସୁ ମଣିଷ ତାର ଆଖି ଲୁହରେ ଦେବତାର ପଦ ଅର୍ଚ୍ଚନା କରୁଛି ।''

ଅତଏବ ଡକ୍ଟର ମିଶ୍ରଙ୍କ ସମାଲୋଚନା ପଦ୍ଧତିରେ ମୁଖ୍ୟତଃ ଜାତୀୟ ସ୍ୱାଭିମାନ ପ୍ରବୃତ୍ତି, ଧର୍ମଗତ ପ୍ରବୃତ୍ତି, ସାମାଜିକ ନୈତିକ ମୂଲ୍ୟବୋଧ ପ୍ରବୃତ୍ତି, ସାହିତ୍ୟିକ ରସଗତ ପ୍ରବୃତ୍ତିକୁ ଦେଖିବାକୁ ମିଳିଥାଏ । ଏହି ସମସ୍ତ ବିଚାରବୋଧ ଦ୍ୱାରା ଅନୁପ୍ରାଣୀତ ହୋଇ ସେ ସମାଲୋଚନା ଐତିହାସିକ ତଥ୍ୟ ଭିତ୍ତିକ ହୋଇଅଛି । ତାଙ୍କର ପ୍ରତ୍ୟେକ ଗ୍ରନ୍ଥ ଓ

ସମାଲୋଚନାତ୍ମକ ପ୍ରବନ୍ଧରୁ ଏହି ଦୃଷ୍ଟିକୋଣ ଦେଖିବାକୁ ମିଳେ । ସମାଲୋଚନାଗୁଡ଼ିକ ତାଙ୍କର ନିଜସ୍ୱ କଳା- ଶିଳ୍ପରେ ବୁଦ୍ଧିମନ୍ତ । ତାଙ୍କର ସମାଲୋଚନା ପରିମାଣାଧିକ ଦୃଷ୍ଟିରୁ ବ୍ୟାପକ ନୁହେଁ । ଆଜି ସେ ଯେଉଁ କେତୋଟି ସମାଲୋଚନାତ୍ମକ ଗ୍ରନ୍ଥ ଓ ପ୍ରବନ୍ଧ ରଚନା କରିଅଛନ୍ତି ସେଥିରୁ ତାଙ୍କର ପ୍ରଜ୍ଞା ଓ ପ୍ରତିଭାର ପରିଚୟ ମିଳିଥାଏ । ସାହିତ୍ୟିକ ରସବୋଧ ଓ ସାମାଜିକ ମୂଲ୍ୟବୋଧ ଦୃଷ୍ଟିରୁ ତାଙ୍କର ସମାଲୋଚନାଗୁଡ଼ିକ ସେପରି କୌଣସି ନିର୍ଦ୍ଦିଷ୍ଟ ଦିଗରେ ପ୍ରଚୋଦକ ନହେଲେ ହେଁ ଧର୍ମୀୟ ବିଚାରଧାରା ଓ ସେଥିରେ ଉତ୍କଳୀୟ ସ୍ୱାଭିମାନ ବୋଧର ପ୍ରୟୋଗ ପ୍ରକ୍ରିୟା ମଧ୍ୟ ଦେଇ ଯେଉଁ ତାତ୍ତ୍ୱିକ ସିଦ୍ଧାନ୍ତ ପ୍ରଦାନ କରିଅଛନ୍ତି ତାହା ହିଁ ତାଙ୍କ ସମାଲୋଚନା- ସାହିତ୍ୟର ସର୍ବଶ୍ରେଷ୍ଠ ମାନଦଣ୍ଡ ।

■■

# ମହାନୁଭବ କାହ୍ନୁଚରଣ

*- ଡାକ୍ତର ବିକ୍ରମ ଦାସ*

ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେଉଁ ଓଡ଼ିଆ ଅଧ୍ୟାପକମାନେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଗବେଷଣାରେ ଖ୍ୟାତି ଲାଭ କରିଥିଲେ ସେମାନଙ୍କ ଭିତରେ କାହ୍ନୁଚରଣଙ୍କ ନାମ ଜାଜ୍ୱଲ୍ୟମାନ ହୋଇ ରହିଛି । ସେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଜଗନ୍ନାଥ ସଂସ୍କୃତିର ଗବେଷଣାରେ ନିମଗ୍ନ ରହି ବହୁ ଉପାଦେୟ ନିବନ୍ଧ ପ୍ରସ୍ତୁତ କରି ଯାଇଛନ୍ତି ।

କଟକ ଜିଲ୍ଲାର ପଟ୍ଟାମୁଣ୍ଡାଇରେ ପଣ୍ଡିତ ବଳରାମ ମିଶ୍ରଙ୍କ ଜ୍ୟେଷ୍ଠ ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତୃବ୍ୟ ଦେଶପ୍ରେମୀ ସାହିତ୍ୟିକ ଆକୁଳି ମିଶ୍ରଙ୍କ ପ୍ରଭାବ ମଧ୍ୟ ତାଙ୍କ ଉପରେ ପଡ଼ିଥିଲା ।

ପିଲାଦିନେ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନର ଧାସ ମଧ୍ୟ ତାଙ୍କ ଦେହରେ ବାଜିଥିଲା ଓ ଶେଷ ପର୍ଯ୍ୟନ୍ତ ସେ ମହାତ୍ମା ଗାନ୍ଧିଙ୍କ ମୋଟା ଖାଏ ଓ ମୋଟା ପିନ୍ଧିବା ବା Simple living, high thinking ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ସେହି କାଳର ସାଧାରଣ ଧୋତି ଚାଦର ପିନ୍ଧିବା ଓ ସାଧାରଣ ଲୋକଙ୍କ ପରି ଚଳିବା ତାଙ୍କ ଅଭ୍ୟାସରେ ପଡ଼ି ଯାଇଥିଲା ଓ ଦେଶ ଭାବନା ତାଙ୍କୁ ଆକୃଷ୍ଟ କରିଥିଲା ।

ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରୀତି ଯୋଗୁ ସେ ଓଡ଼ିଆ ଜାତିର ପୁରାତନ ଐତିହ୍ୟ ଉଦ୍‌ଘାଟନ କରି ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକାଠି କରିବା ପାଇଁ ବିଚ୍ଛିନ୍ନ ଉତ୍କଳ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଥିଲେ । ସେ ଉତ୍କଳ ଅବକାଶ ବାହିନୀ ନାମକ ଏକ ଛାତ୍ର ସଂଗଠନରେ ଯୋଗଦେଇ ଅନ୍ୟ ପ୍ରଦେଶରେ ଥିବା ବିଶେଷରେ କଲିକତାର ଓଡ଼ିଆମାନଙ୍କର ସ୍ୱାଭିମାନ ଫେରାଇ ଆଣିବାକୁ ସେମାନଙ୍କୁ ସଂଗଠିତ କରିଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆରେ ଏମ୍.ଏ. ପଢୁଥିବାବେଳେ ପ୍ରଥମଥର ପାଇଁ ତାଙ୍କ ସଙ୍ଗେ ମୋର କଟକ ନବ ଭାରତ ପ୍ରେସ୍‌ରେ ଦେଖା ହୋଇଥିଲା । ସେହି ଅମାୟିକ ବିଦ୍ୱାନ ବ୍ୟକ୍ତିଙ୍କ ସହିତ ମୋର ସେହିକାଳୁ ବନ୍ଧୁତ୍ୱ ସ୍ଥାପିତ ହୋଇଥିଲା । ସେତେବେଳେ ନବଭାରତ ପ୍ରେସ ଗୋଟିଏ ଶିକ୍ଷା କେନ୍ଦ୍ରରେ ପରିଣତ ହୋଇଥିଲା । ନାନାଆଡୁ ବହୁ ମେଧାବୀ ଛାତ୍ର ସେଠାକୁ ଆସି ବିଶିଷ୍ଟ ବିଦ୍ୱାନ ଉତ୍କଳଗୁରୁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ନିକଟରେ ବସି ବିଦ୍ୟାଚର୍ଚ୍ଚା କରୁଥିଲେ ।

କାହ୍ନୁଚରଣ କଲିକତାରେ ପଢୁଥିଲେ ମଧ୍ୟ ଛୁଟି ମିଳିବାକ୍ଷଣି ପଣ୍ଡିତଜୀଙ୍କ ନିକଟକୁ ଚାଲି ଆସୁଥିଲେ । ପଣ୍ଡିତ ନୀଳକଣ୍ଠ ଓଡ଼ିଆ ସ୍ୱାଭିମାନ ଓ ଜଗନ୍ନାଥ ସଂସ୍କୃତିର ଏକ ପ୍ରଧାନ ପୁରୋଧା ଓ ପ୍ରଚାରକ ଥିଲେ । କାହ୍ନୁଚରଣ ଜଗନ୍ନାଥ ସଂସ୍କୃତିର ଗବେଷଣା ପ୍ରତି ଆକୃଷ୍ଟ ହୋଇ ପଣ୍ଡିତଜୀଙ୍କର ଏକ ପ୍ରଧାନ ଶିଷ୍ୟରେ ପରିଣତ ହୋଇଥିଲେ ।

କାହ୍ନୁବାବୁଙ୍କ ସଂଗେ ସେହିକାଳୁ ମୋର ସମ୍ପର୍କ ଥିଲେ ମଧ୍ୟ ପରବର୍ତ୍ତୀ କାଳରେ ବିବାହ ସମ୍ପର୍କ ନେଇ ତାହା ଘନିଷ୍ଠତର ହୋଇଥିଲା । ତାଙ୍କର କନ୍ୟା ଜ୍ୟୋତି ମୋର ସହଧର୍ମିଣୀଙ୍କ କନିଷ୍ଠଭ୍ରାତା ପ୍ରଖ୍ୟାତ ଇଞ୍ଜିନିୟର ସଚିଦାନନ୍ଦ ମିଶ୍ରଙ୍କୁ ବିବାହ କରିଥିଲେ ।

କାହ୍ନୁଚରଣ ଜଣେ ଛାତ୍ରବତ୍ସଳ ଉଚ୍ଚକୋଟିର ଶିକ୍ଷକ ଓ ଗବେଷକଥିଲେ । ଶତ ଶତ ଛାତ୍ର ତାଙ୍କର ମହାନୁଭବତା ପ୍ରତି ଆକୃଷ୍ଟ ଥିଲେ । ତାଙ୍କର ମିଷ୍ଟ ସ୍ୱଭାବ ଯୋଗୁ ସେ ଏକ ପ୍ରକାର ଅଜାତଶତ୍ରୁ ଥିଲେ ।

ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ମୁଖ୍ୟ ଓଡ଼ିଆ ଅଧ୍ୟାପକ ଓ ସିନେଟ୍ ସଦସ୍ୟ ଥିବାବେଳେ ମୁଁ ବ୍ରହ୍ମପୁର ମେଡିକାଲ କଲେଜର ରୋଗ ନିର୍ଣ୍ଣୟ ବିଭାଗର ମୁଖ୍ୟ ଅଧ୍ୟାପକ ଓ ବିଶ୍ୱବିଦ୍ୟାଳୟର ସିନେଟର ଥିଲି । ସେତେବେଳେ ବିଶ୍ୱବିଦ୍ୟାଳୟର ନାନା ସମସ୍ୟାର ସମାଧାନ ପାଇଁ ଆମକୁ ଏକାଠି କାର୍ଯ୍ୟ କରିବାକୁ ପଡୁଥିଲା । ସେହି ବିଶ୍ୱବିଦ୍ୟାଳୟର ଅନ୍ୟ ଶିକ୍ଷକମାନଙ୍କର ତାଙ୍କ ପ୍ରତି ସ୍ନେହ ଓ ଭକ୍ତି ଥିବାରୁ ତାଙ୍କ କଥାକୁ ସେମାନେ ଅକାତରରେ ସମାଧାନ କରୁଥିଲେ । ଗୋଟିଏ ନିର୍ବାଚନରେ ସେହି ବିଶ୍ୱବିଦ୍ୟାଳୟର ପ୍ରତିନିଧି ଭାବରେ ମୁଁ ସର୍ବଭାରତୀୟ ମେଡିକାଲ କାଉନସିଲକୁ ସଦସ୍ୟ ହୋଇଯିବା ପାଇଁ ସେ ପ୍ରସ୍ତାବ ଆଣିବାରେ ମୁଁ ସମସ୍ତଙ୍କ ସମର୍ଥନ ପାଇଁ ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ନିର୍ବାଚିତ ହୋଇଥିଲି ।

ମୋର ସାହିତ୍ୟ ଚର୍ଚ୍ଚା ପାଇଁ ସେ ମୋତେ ନାନା ଭାବରେ ଉତ୍ସାହିତ କରୁଥିଲେ । ଶେଷ ପର୍ଯ୍ୟନ୍ତ ସେ ସୁସ୍ଥ ଥାଇ ସେ ଜଗନ୍ନାଥ ସଂସ୍କୃତିର ଗବେଷଣାରେ ପୂର୍ଣ୍ଣପ୍ରାଣରେ ଲାଗିଥିବାବେଳେ ଗତବର୍ଷ ହଠାତ ସେ ଆମ ସମସ୍ତଙ୍କୁ ଛାଡ଼ି ସ୍ୱର୍ଗ ଗମନ କଲେ । ଚାହୁଁ ଚାହୁଁ ବର୍ଷଟିଏ ବିତିଗଲାଣି କିନ୍ତୁ ସେ ଆମ ଗହଣରେ ଆଉ ନାହାନ୍ତି ବୋଲି ଏବେ ବି ବିଶ୍ୱାସ କରିହେଉନାହିଁ ।

ତାଙ୍କ ପରି ଜଣେ ମେଳାପି ମହାନୁଭବ ବ୍ୟକ୍ତିଙ୍କର ଆତ୍ମାର ଯେ ସଦ୍‌ଗତି ପ୍ରାପ୍ତି ହୋଇଥିବ ସେଥିରେ ସନ୍ଦେହ କରିବାର ଅବକାଶ ନାହିଁ । ଜୟ ଜଗନ୍ନାଥ

■■

# କାହ୍ନୁବାବୁଙ୍କର ଆମେରିକାରେ କିଛିଦିନ

*- ବିଜୟମୋହନ ମିଶ୍ର*

୧୯୯୩ ମସିହା ଜୁନ୍ ୧୭ ତାରିଖ ରାତି ସାଢ଼େ ଏଗାରଟା । ମୁଁ ଏବଂ ଶ୍ରୀମାନ ପ୍ରଶାନ୍ତ ଯୋଶୀ ଆମେରିକାର ନାସ୍‌ଭିଲ ଏୟାରପୋର୍ଟରେ ପ୍ରଶାନ୍ତଙ୍କର ପିତାମାତା ଭାରତବର୍ଷରୁ ଫେରିବା ଉପଲକ୍ଷେ ଅପେକ୍ଷା କରିଛୁ । ଉଡ଼ାଜାହାଜ ଆସି ପହଞ୍ଚିଲା । ଡକ୍ଟର ବିଷ୍ଣୁଚରଣ ଯୋଶୀ ଓ ଶ୍ରୀମତୀ ପ୍ରଭା ଯୋଶୀ ଆସି ପହଞ୍ଚିଲେ । ବିଷ୍ଣୁବାବୁଙ୍କୁ ମୁଁ ପ୍ରଣାମ ଜଣାନ୍ତେ ସେ ମୋତେ କହିଲେ ଓଡ଼ିଶାରୁ ଜଣେ ପ୍ରଖ୍ୟାତନାମା ଶିକ୍ଷକ ତାଙ୍କ ସହ ନାସ୍‌ଭିଲ ରଥଯାତ୍ରା ନିମିତ୍ତ ଓଡ଼ିଶାରୁ ଆସିଛନ୍ତି । ଟିକିଏ ଆଖି ଫେରାଇଲାବେଳକୁ ଶୁକ୍ଳବସନ ପରିହିତ ଆମ ସାର କାହ୍ନୁବାବୁ ତାଙ୍କର ସୁଲଭ କ୍ଷିପ୍ରଗତିରେ ଆଗେଇ ଆସୁଛନ୍ତି । ହଠାତ ମୋ ମନରେ ଆନନ୍ଦ ଉଦ୍‌ବେଗ । ଏତେ ବର୍ଷ ପରେ ଏ ଅହେତୁକ ସାକ୍ଷାତ । ତାଙ୍କର ମଧ ଖୁସିର ସୀମା ନାହିଁ ।

ଆମେରିକାରେ ଆସି ରହିବା ସେତେବେଳକୁ ମୋର ଉଣେଇଶ ବର୍ଷ ହେଲାଣି । ଆମେରିକାର ସମାଜର ଚାଲିଚଳନ ସାଂଗେ ତଥାପି ଖାପ ହୋଇନାହିଁ । ଭାରତବର୍ଷ ସବୁବେଳେ ଆସକ୍ତି ଆଣେ । କଟକର ପିଲାଦିନ ଅଲିଭା ସ୍ମୃତି, କେହି କେହି ପୁରୁଣା ବନ୍ଧୁ ଦେଖାହୁଅନ୍ତି । ଅନେକ କଥା ମନେ ପକାଉ । ଖୁସି ଗପ କରୁ । କିନ୍ତୁ ଶିକ୍ଷକଙ୍କୁ ଆମେରିକା ଭୂଇଁରେ ଭେଟିବା ଦୁଷ୍କର । ହାଇସ୍କୁଲ ଶିକ୍ଷକ ଶ୍ରୀ ନନ୍ଦକିଶୋର ରଥ ୧୯୮୨ ମସିହାରେ ଆସିଥିଲେ । ତାପରେ ମୋର ଏ ଦ୍ୱିତୀୟ ମିଳନୀ ।

ରାତିରେ ଆମର ନିଦ ନାହିଁ, ବିମାନର ପଶ୍ଚିମ ଗତି ପୃଥିବୀର ଗତିଠାରୁ ଓଲଟା । ଆମେରିକାରେ ରାତିକୁ ଭାରତବର୍ଷରେ ଦିନ, ମଣିଷ ଦେହ ଏ ସବୁକୁ ବୁଝିପାରେ ନାହିଁ । ଦେହ ଅସଜ ହୁଏ । କାହ୍ନୁବାବୁ ତାଙ୍କର ଗବେଷଣା କଥା କହିଲେ । ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଓଡ଼ିଶା କଲଚର ଓ ତାର କାର୍ଯ୍ୟାବଳି ଅତ୍ୟନ୍ତ ଉଲ୍ଲସିତ ଭାବରେ କହି ଲାଗିଲେ । ଇନ୍‌ଷ୍ଟିଚ୍ୟୁଟ୍‌ର ପ୍ରକାଶିତ କିଛି ପୁସ୍ତକ ମୋତେ ଦେଖାଇଲେ, ତାଙ୍କର ପତ୍ନୀଙ୍କ ସ୍ୱାସ୍ଥ୍ୟ କଥା ଚିନ୍ତା କରି ତାଙ୍କ ସହ ଟେଲିଫୋନରେ କଥା ହେଲେ । ପ୍ରାୟ ସକାଳ ଚାରିଟା ବେଳକୁ ଆମେ ଶୋଇବାକୁ ଗଲୁ ।

୧୮ ତାରିଖ ବିଶ୍ରାମ ନେଇ ୧୯ ତାରିଖ ରଥଯାତ୍ରା । ସକାଳ ୫ଟାରେ ହୋମ ବିଷ୍ଣୁବାବୁ

ଅର୍ଚ୍ଚକ ଓ ଯୋଗୀ । ଜଗନ୍ନାଥ ସାଧନାରେ ସେ ସର୍ବଦା ନିରତ । ତାଙ୍କ ସାଙ୍ଗକୁ ଜଗନ୍ନାଥ ଶାସ୍ତ୍ର ପଣ୍ଡିତ କାହ୍ନୁବାବୁ । ଏମାନଙ୍କର ସାନ୍ନିଧରେ ମୁଁ ଆମୋଦିତ । ଯାହା କିଛି ନିଜକୁ ପ୍ରଶ୍ନ ଆସିଲେ ବେଦ ଶାସ୍ତ୍ର ବା ତନ୍ତ୍ରର ଆଲୋଚନା, ଭାରତୀୟ ସଂସ୍କୃତିର ଏ ଅନର୍ଗଳ ପ୍ରଚାରରେ ମୁଁ ଅନୁପ୍ରାଣିତ ।

ହୋମ ସାରିଲୁ, ଅନେକ ଭକ୍ତ ଓ ପଥିକ ଆସି ପହଞ୍ଚିଲେ । ନ'ଟାବେଳେ ଦିଅଁ ପୂଜା ହେଲା । ତାପରେ ପହଣ୍ଡି ଓ ରଥବିଜେ । ପ୍ରାୟ ପାଞ୍ଚ ଶହ ଓଡ଼ିଆ ଲୋକ ଏକତ୍ରିତ । ଅନ୍ୟାନ୍ୟ ପ୍ରଦେଶର କି ଯାତ୍ରୀ ଆସିଛନ୍ତି, କାହ୍ନୁବାବୁ ଆନନ୍ଦରେ ବିଭୋର । ସମସ୍ତେ ରଥ ଟାଣିଲୁ । ସାହିତ୍ୟିକ ଶାନ୍ତନୁ ଆଚାର୍ଯ୍ୟ ମଧ ଆସିଥାନ୍ତି । ସଂକୀର୍ତ୍ତନ ହେଲା । ଦିଅଁଙ୍କ ଆଗରେ ନାଚ କଲୁ । ହରିବୋଲରେ ସେ ଅଞ୍ଚଳ ଉଚ୍ଛୁଳିଲା, କାହ୍ନୁବାବୁ ମୋତେ ଅଡ଼ାଇ ନେଇ କହିଲେ- 'ବହୁତ ଖୁସି ଲାଗୁଛି' । ଉପର ଓଳି ସଭା, କାହ୍ନୁବାବୁଙ୍କର ଭାଷଣ । ଦି କଲ୍ଟ ଅଫ୍ ଜଗନ୍ନାଥ ତାଙ୍କର ଥେସିସ । ଜଗନ୍ନାଥ ନିରାକାରର ଆକାର । ବ୍ରହ୍ମର ସ୍ୱରୂପ । ଚକା ଆଖିରେ ସହସ୍ରାକ୍ଷ, ପାଦ ନଥାଇ ସହସ୍ରପାଦ । ଅସମ୍ଭବ ମୂର୍ତ୍ତି, ତାର ବୈଜ୍ଞାନିକ ବିଶ୍ଳେଷଣ । ଜୀବ, ପ୍ରକୃତି, କାଳ ଓ ବୁଦ୍ଧି- ଚତୁର୍ଦ୍ଧା ମୂର୍ତ୍ତି ସମୟ ନିର୍ଲିପ୍ତ, ଜଗନ୍ନାଥ ସମଭାବ, କାଳର ବିଚାରରେ ଉଚ୍ଚନୀଚ ନାହିଁ । ରାଜା ରଙ୍କ ସମସ୍ତେ ପ୍ରସାଦଗ୍ରାହୀ, ମୁକ୍ତି ଅଭିଳାଷୀ । କାହ୍ନୁବାବୁଙ୍କର ଲିଖିତ ଭାଷଣ, ସେ ଏହାକୁ ପେପର ବୋଲି କହନ୍ତି, ପ୍ରତ୍ୟେକ ଭାଷଣରେ କିଛିଟା ନୂଆ କଥା । ଆଜିକାର ଭାଷଣର ନୂଆ କଥା ହେଲା ଜଗନ୍ନାଥଙ୍କର ମୂର୍ତ୍ତିଗଠନ ଓ ବର୍ଣ୍ଣ । ପ୍ରତ୍ୟେକ କାଳ ଭାବରେ ପରିପୂର୍ଣ୍ଣ । କଳା ଅନନ୍ତବର୍ଣ୍ଣ । ହରିଦ୍ ପ୍ରକୃତି ବର୍ଣ୍ଣ, ଶୁଭ୍ର ସତ୍ତ୍ୱପୂର୍ଣ୍ଣ ଜୀବରବର୍ଣ୍ଣ ଓ ପାଣ୍ଡୁର ରଜପୂର୍ଣ୍ଣ ବୁଦ୍ଧିର ବର୍ଣ୍ଣ ଜଗନ୍ନାଥ ତତ୍ତ୍ୱରେ ତାମସିକତାର ସ୍ଥାନ ନାହିଁ ।

ତାପରେ ଶ୍ରୀ ଶାନ୍ତନୁ ଆଚାର୍ଯ୍ୟଙ୍କର ଅନୁଭୂତି ସମ୍ପନ୍ନ ଭାଷଣ ଓ ଶ୍ରୀମତୀ ସୁନନ୍ଦା ପଟ୍ଟନାୟକଙ୍କର ଭକ୍ତିପୂର୍ଣ୍ଣ ସଂଗୀତ, ନାସ୍‌ଭିଲ ସହରରେ ଶ୍ରୀ ଜଗନ୍ନାଥଙ୍କର ପ୍ରବେଶ ହେଲା ।

ନାସ୍‌ଭିଲରୁ କାହ୍ନୁବାବୁଙ୍କୁ ବୋଷ୍ଟନ ଆସିବାକୁ ଅନୁରୋଧ କଲି । ସେ ତତ୍‌କ୍ଷଣାତ ରାଜି ହେଲେ । ଆମର ବିଶ୍ୱବିଦ୍ୟାଳୟରେ ଭାରତୀୟ ସଂସ୍କୃତି ଓ ତଥ୍ୟର ଆଲୋଚନା ନିମନ୍ତେ ସୁଯୋଗ ଥିଲେ ମଧ ଗୁଣୀ ଓ ବିଜ୍ଞାନୀଙ୍କର ଅଭାବ । କାହ୍ନୁବାବୁ ଡେଟ୍ରଏଟରୁ ବୋଷ୍ଟନ ଆସିବେ ।

ଜୁଲାଇ ମାସ ପ୍ରଥମ ସପ୍ତାହରେ ଆମେରିକାସ୍ଥ ଓଡ଼ିଆ ବାସିନ୍ଦାଙ୍କର ବାର୍ଷିକ ସମ୍ମିଳନୀ । ସେ ବର୍ଷ ଏହା ଡେଟ୍ରଏଟରେ କାହ୍ନୁବାବୁ ନାସ୍‌ଭିଲରୁ ଆସି ପହଞ୍ଚିଲେ । ମୋର ପତ୍ନୀ ସୁବର୍ଣ୍ଣଲତା ଓ ଆମ ପିଲାମାନଙ୍କ ସହ କାହ୍ନୁବାବୁଙ୍କର ପରିଚୟ, ବନ୍ଧୁ ଶ୍ରୀ ଉମାବଲ୍ଲଭ ମିଶ୍ର

ଓ ତାଙ୍କ ପତ୍ନୀ ଶାନ୍ତିଲତା ଆମ ସହ ଉପସ୍ଥିତ, ପିଲାମାନଙ୍କ ପାଇଁ ସେ ଅଜା । ଚପଳ, ସ୍ନେହୀ ଓ ଭାବରତ, ପିଲାଙ୍କ ସହ ଓଡ଼ିଆରେ ମେଳାପ ।

ଡେଟ୍ରଏଟ୍ ସଭାରେ କାହ୍ନୁବାବୁ ମୁଖ୍ୟ ଅତିଥି ଓଡ଼ିଆ ସଭାରେ ରାଜନୈତିକ ଲୋକଙ୍କୁ ଦେଖିବାକୁ ମିଳିଥାଏ । କେହି ଶିକ୍ଷକ ବା ସାହିତ୍ୟିକ ପ୍ରଧାନ ଅତିଥି ହେବା ଏହା ପ୍ରଥମ । ଆମେରିକାର ଡାକ୍ତର ଇଞ୍ଜିନିଅର ବ୍ୟବସାୟରେ ଓଡ଼ିଆ ସାହିତ୍ୟର ସ୍ଥାନ ଟିକିଏ ପଛକୁ କାହ୍ନୁବାବୁ ସମସ୍ତଙ୍କର ଜୀବନ ସ୍ପର୍ଶ କରିନାହାନ୍ତି । ମୋତେ ଅନୁରୋଧ କରାଗଲା କାହ୍ନୁବାବୁଙ୍କର ପରିଚୟ ଦେବାକୁ । ତାଙ୍କୁ ପଚାରିଲି, ଦାରିଦ୍ର୍ୟରୁ ଯେ ପାଠ ପଢ଼ିହୁଏ, ଏହା ତାଙ୍କ ଜୀବନ କାହାଣୀ । ମୁଁ କିଛିଟା ବିଶ୍ଳେଷଣ କଲି, ଜଗନ୍ନାଥ ତତ୍ତ୍ୱ ଗବେଷଣା କଥା କହିଲି । କାହ୍ନୁବାବୁଙ୍କୁ ଭାଷଣ ଦେବାକୁ ଅନୁରୋଧ କଲି । ତାଙ୍କ ହାତରେ ଆଉ ଗୋଟିଏ ପେପର । ସବୁ ଭାଷଣ ପୂର୍ବ ପ୍ରସ୍ତୁତ । ଶବ୍ଦର ମାପଚୁପ ଅଛି । ଯାହା ତାହା କହିବା ଭାଷଣ ହୁଏ ନାହିଁ । ଏ ଭାଷଣ ଓଡ଼ିଶା ସାଂସ୍କୃତିକ ଇତିହାସ ସମ୍ପର୍କରେ । ସମସ୍ତ କଥା ସମ୍ପୂର୍ଣ୍ଣ ଭାବେ ପରିବେଷଣ କରିବାକୁ ହେବ, ପ୍ରତ୍ୟେକ ଶ୍ରୋତାଙ୍କୁ ଗୁଣଗ୍ରାହୀ ଭାବରେ ଗ୍ରହଣ କରିବାକୁ ହେବ । ଏ ପ୍ରକାର ଭାଷଣ ପ୍ରସ୍ତୁତି ଓ ଉପସ୍ଥାପନାରେ ମୁଁ ମୁଗ୍ଧ । ଏ ଭାଷଣ ବାକ୍ଚାତୁରୀ ପାଇଁ ପ୍ରଯୁଜ୍ୟ ନୁହେଁ । ଏହାକୁ ଶୁଣିବାକୁ ହୁଏ ।

ଓଡ଼ିଶାରେ ସର୍ବଧର୍ମ ଅବସ୍ଥାନ, ବେଦ, ଶାକ୍ତ, ଶୈବ, ବ୍ରାହ୍ମଣ, ବୌଦ୍ଧ, ଜୈନ, ଶଙ୍କର, ରାମାନୁଜ, କବିର, ଚୈତନ୍ୟ, ସବୁ ପନ୍ଥା ଓଡ଼ିଶାରେ ପ୍ରଚଳିତ । ସବୁଥିର ଅଂଶାବଶେଷ ଓଡ଼ିଆ ମାଟିରେ ନିହିତ । ସବୁଧର୍ମର ସମନ୍ୱୟ ଶ୍ରୀ ଜଗନ୍ନାଥ । ଅନ୍ୟପକ୍ଷରେ ସବୁଧର୍ମର ସୃଷ୍ଟି ଶ୍ରୀ ଜଗନ୍ନାଥ ତତ୍ତ୍ୱରୁ, ସାଧକ, ଗୁଣୀ, ସାହିତ୍ୟିକ, କବି ନିଜ ଗୁଣରେ ଶ୍ରୀ ଜଗନ୍ନାଥଙ୍କୁ କଳ୍ପନା କରିଛନ୍ତି, ପନ୍ଥା ଗଢ଼ିଛନ୍ତି । ଏଥିରୁ ମାଟିର ସଂସ୍କୃତି ଉଦ୍ଭୂତ । ଗବେଷଣା ଆବଶ୍ୟକ, ଓଡ଼ିଆ ସଂସ୍କୃତିର ପରିପ୍ରକାଶ ବର୍ତ୍ତମାନ ହୀନପ୍ରଭ, ପ୍ରସାର ଆବଶ୍ୟକ, ପ୍ରତ୍ୟେକ ଓଡ଼ିଆ ଭାଗବତପ୍ରେମୀ ହେବା ଆବଶ୍ୟକ । ଓଡ଼ିଶାର ପ୍ରତି ଗାଁରେ ଭାଗବତ ଟୁଙ୍ଗୀର ପୁନରୁତ୍ଥାନ ହେବା ଆବଶ୍ୟକ ।

ଭାଷଣ ଶ୍ରୋତାମଣ୍ଡଳୀର ମନକୁ ଛୁଇଁଲା । ଘନ ଘନ କରତାଳି, ଓଡ଼ିଆ ସମ୍ମିଳନୀରେ ସାହିତ୍ୟିକର ଭାଷଣ । ଏଥିରେ ମୁଁ ଖୁସି । ଜାତିର ଉନ୍ନତି ସହିତ ଭାଷାର ଉନ୍ନତି ଆବଶ୍ୟକ । ଭାଷା ସମ୍ପର୍କରେ ଓଡ଼ିଆ କିଛି ପରିମାଣରେ ନିସ୍ପୃହ । ଶୁଣିବାକୁ ଭଲ ଲାଗିଲେ ବି କହିବାକୁ ଓଡ଼ିଆର ସାହସ ଊଣା । ଭାଷାର ଉନ୍ନତିରେ ହିଁ ଜାତିର ଉନ୍ନତି କାହ୍ନୁବାବୁଙ୍କର ମତ ।

ଡେଟ୍ରଏଟରୁ ଆମର ଯାତ୍ରା ବୋଷ୍ଟନ । କାହ୍ନୁବାବୁ ଦୁଇ ସପ୍ତାହ ବୋଷ୍ଟନ୍‌ରେ ରହିବେ ।

ହାଭାର୍ଡ ବିଶ୍ୱବିଦ୍ୟାଳୟରେ ସଂସ୍କୃତ ବିଭାଗରେ ଭାଷଣର ଆୟୋଜନ କରାହୋଇଛି । ପୁଣି ଭାଷାର ଲେଖା ଆରମ୍ଭ ହୋଇଗଲାଣି । ଆମର ଏ ଅଞ୍ଚଳକୁ ଆମେରିକାର ନିଉ ଇଂଲାଣ୍ଡ କୁହାଯାଏ । ସପ୍ତଦଶ ଶତାବ୍ଦୀର ଇଂରେଜ ଲୋକମାନେ ବିଲାତରେ ଧର୍ମତାଡ଼ନା ସହିନପାରି ସ୍ୱାଧୀନ ଭାବରେ ଚଳିବାକୁ ପାଲଟଣା ଜାହାଜରେ ଆମେରିକା ଆସିଥିଲେ । ପରେ ଏଇ ଅଞ୍ଚଳରୁ ଆମେରିକାର ସାହିତ୍ୟର ସୃଷ୍ଟି । ଭାରତର ଦର୍ଶନ ଏଠାର ଲୋକମାନଙ୍କୁ ସ୍ପର୍ଶ କରିଛି । ଆମେରିକାର ଯତି ହେନ୍‌ରି ଡେଭିଡ ଥରୋ ଏହିଠାରୁ ହିଁ ଦାସତ୍ୱ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ସ୍ୱାଧୀନବାଦୀ ମାର୍ଟିନ ଲୁଥରକିଙ୍ଗ ଏଠାରୁ ହିଁ ଆମେରିକାରେ ଗାନ୍ଧୀବାଦର ବୀଜରୋପଣ କରି ସବୁ ନାଗରିକଙ୍କୁ ସମାନ ଅଧିକାରର ଡାକରା ଦେଇଥିଲେ । ସିଂହଳ ଗବେଷକ ଶ୍ରୀ ଆନନ୍ଦ କୁମାର ସ୍ୱାମୀ ଏଠାରେ ହିଁ ଭାରତୀୟ କଳା ଓ ଭାସ୍କର୍ଯ୍ୟର ପରିଚୟ ପୃଥିବୀ ଆଗରେ ଉପସ୍ଥାପନ କରିଥିଲେ ।

କାହ୍ନୁବାବୁ ପ୍ରତିଦିନ କୌଣସି ମ୍ୟୁଜିୟମ ବା ଲାଇବ୍ରେରୀ ବା ସାହିତ୍ୟକ୍ଷେତ୍ର ଭ୍ରମଣ କରନ୍ତି । ପାଶ୍ଚାତ୍ୟ ଶିକ୍ଷା ଓ ଗବେଷଣା ହୃଦୟଙ୍ଗମ କରିବାକୁ ତାଙ୍କର ପ୍ରଗାଢ଼ ଉଦ୍ୟମ । ଗବେଷଣାର ଶୈଳୀ ଅଛି । ସେଥିଲାଗି ମନୋଭାବ ଲୋଡା । ରାତିରେ ଫେରି ବିଭିନ୍ନ ତଥ୍ୟ ଉପରେ ଆଲୋଚନା ହୁଏ ।

ସତ୍ୟ ଓ ବିଶ୍ୱାସ ଉପରେ ଆମର ସଂଳାପ ସତ୍ୟ ମନର ଭାବ, ବିଶ୍ୱାସ ମନର ପ୍ରେରଣା । ପ୍ରେରଣା ନଥିଲେ ସତ୍ୟ ନାହିଁ । ସତ୍ୟ ବିନା ପ୍ରେରଣାର ଉଦ୍ରେକ ନାହିଁ । ସତ୍ୟ ଓ ବିଶ୍ୱାସ ହିଁ ମନୁଷ୍ୟର ସଭ୍ୟତା । ସବୁ ପନ୍ଥାରେ ସତ୍ୟରେ ବିଶ୍ୱାସ । ସତ୍ୟର ଅନୁଭୂତି ବିଭିନ୍ନ ପନ୍ଥାରେ ଅଲଗା । ଏ ପ୍ରକାରର ଅସମାନତା ଅଳିକ ହେଲେ ବି ସତ୍ୟ । ଏ ଅସମାନତା ନେଇ ମଣିଷର ବିଦ୍ରୋହ ଭାବ ଓ ସଂସ୍କୃତିର ସୃଷ୍ଟି । ଆପଣାର ସତ୍ୟକୁ ଅନ୍ୟ ଉପରେ ଆକ୍ଷେପ କରିବାର ପ୍ରୟାସ । ଭାରତବର୍ଷ ଭିତରେ ଏହା ମଧ ପ୍ରବଳ । କୌଣସି ଭାଷା ବା ଜାତିକୁ ନିଶ୍ଚିହ୍ନ କରିବାକୁ ଅନ୍ୟ ଭାଷା ଓ ଜାତିର ସଂଗଠିତ ଚେଷ୍ଟା । ଅନ୍ୟ ଉପରେ ଚାପ ପକାଇବା ମନୁଷ୍ୟର ଜନ୍ମଗତ ସ୍ୱଭାବ । ପ୍ରତ୍ୟେକ ମଣିଷର ବଞ୍ଚି ରହିବାର ଅଧିକାର ଅଛି । ଏହା ଜଗନ୍ନାଥ ସତ୍ୟ ।

ଜୁଲାଇ ୧୪ ତାରିଖ ବୁଧବାର, ଅପରାହ୍ନ ସାଢ଼େ ଚାରିଟାରେ ବିଶ୍ୱବିଦ୍ୟାଳୟ ଭାଷଣ । ସକାଳେ କହିଲେ ଆଜିର ଭାଷଣ ଲାଗି ଶ୍ରୀ ଜଗନ୍ନାଥଙ୍କୁ ସାଥିରେ ନେଇକରି ଯିବି । ଶବ୍ଦ ବାହାଦୁରିରେ ଶିକ୍ଷା ହୁଏ ନାହିଁ । ଶିକ୍ଷାକୁ ଅନୁଭବ କରିବାକୁ ହେବ । ଛୋଟ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପ୍ରତିମୂର୍ତ୍ତି ତାଙ୍କୁ ମୁଁ ଦେଲି, ତାଙ୍କୁ ଭକ୍ତ ଭାବରେ ବ୍ଲାକବୋର୍ଡ ଉପରେ

ସ୍ଥାପନା କଲେ । ବିଶ୍ୱବିଦ୍ୟାଳୟ ଅଧ୍ୟାପକ ମାଇକେଲ ଓ୍ୱିଟ୍‌ଜେଲ ତାଙ୍କର ପରିଚୟ ଦେଲେ । ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଓ ଛାତ୍ର ସମେତ ୧ ୨ ଜଣ ଉପସ୍ଥିତ । ଆମେରିକା ଜ୍ଞାନମଣ୍ଡଳର ଭିଟାମାଟିରେ ଏ ପ୍ରଥମ ଜଗନ୍ନାଥ ଆଲୋଚନା, ପ୍ରଥମେ ଦାରୁ ଶବ୍ଦର ପର୍ଯ୍ୟାଲୋଚନା ତାପରେ ବେଦସୂକ୍ତ ଗାୟନ । ତାପରେ ପୁରୁଷୋତ୍ତମ ଶବ୍ଦର ବିଶ୍ଳେଷଣ । ତତ୍ପରେ ବିଗ୍ରହ ଗଠନ ଓ ପୂଜାଶୈଳୀ । ଏ ସମସ୍ତ ଲିଖିତ ଭାଷଣ କୌଣସି ଶବ୍ଦର ଦ୍ୱିଧା ନାହିଁ । ଜଗନ୍ନାଥଙ୍କର ପରିଚାରରେ ବିଶୃଙ୍ଖଳା ନାହିଁ । ଭାବର ଧାରା ସାବଲୀଳ । ପ୍ରତ୍ୟେକ ଶବ୍ଦ ମର୍ମସ୍ପର୍ଶୀ । କାହ୍ନୁବାବୁଙ୍କର ଧ୍ୱନିରେ ଶକ୍ତିର ଉଚ୍ଛ୍ୱାସ । ଜଗନ୍ନାଥ ଚାହିଁଛନ୍ତି ।

ସଂଧ୍ୟାବେଳେ ଘରକୁ ଫେରିଲୁ । ବାଟରେ ପଚାରିଲେ ବିଜୟ, ଭାଷଣ କିପରି ହେଲା ? ମୁଁ କହିଲି ବହୁତ ଭଲ କହିଲେ । ପୁଣି ପଚାରିଲି- କିଛି ଭୁଲ କହିଲି କି ? ମୁଁ କହିଲି ଭୁଲ ନୁହେଁ, କିନ୍ତୁ ଜଗନ୍ନାଥଙ୍କର ମୂର୍ତ୍ତିକୁ ସଭିଙ୍କୁ ପରିଚୟ କରାହେଲା ନାହିଁ । ସେ କହିଲେ ଆମର କାନ ଓ ଆଖିରେ ଆମେ ତଥ୍ୟ ଗ୍ରହଣ କରୁ । ଭାଷଣ କାନ ପାଇଁ । ସମସ୍ତେ କାନ ଦିଅନ୍ତି ନାହିଁ, ସେଥିପାଇଁ କିଛି ଦୃଶ୍ୟ ଥିଲେ ଭଲ । ମୁଁ ଶୁଣିଲି, ଏ ପ୍ରକାର ଉପସ୍ଥାପନା ଶୈଳୀ ଲାଗି ମନେ ମନେ ଧନ୍ୟବାଦ ଦେଲି, କିଛି ଶିକ୍ଷା ବି ନେଲି ।

ସେହି ସପ୍ତାହ ଶନିବାର ଦିନ ଆମେ କାନାଡ଼ା ଗଲୁ । ସେଠାରେ ତିନିଦିନ ରହି କାହ୍ନୁବାବୁ ମିନିଆପଲିସ୍ ଗଲେ । ତାର ତିନି ସପ୍ତାହ ପରେ ସେ ଓଡ଼ିଶା ଫେରିଗଲେ ।

ଆମ ଘରେ ରହିବା ସମୟରେ ଆମର ଚୁଡ଼ାପର୍ବ ଆରମ୍ଭ ହୋଇଥିଲା । ସକାଳୁ କିଛି ଚୁଡ଼ା ଧୋଇ ସେଥିରେ କଦଳୀ, ଦହି, ଗୁଡ଼ ଓ ସାମାନ୍ୟ ଲୁଣ ପକାଇ ଖାଇବା ଗୋଟିଏ ପ୍ରକାରର ବିଧି, ଚୁଡ଼ା ସବୁବେଳେ ମିଳେ ନାହିଁ- ଯେବେ ମିଳେ ମୁଁ ଏ ପର୍ବ କରେ । ଚୁଡ଼ା ପର୍ବ କାହ୍ନୁବାବୁଙ୍କର ବିଶ୍ୱାସ ଏହା ଯେ ଆମର ପଥି ତା ସତ୍ୟ ।

■■

# ଡଃ କାହ୍ନୁଚରଣ ମିଶ୍ରଃ ଶ୍ରୀଗୁରୁ ପ୍ରଣାମ

*- ଦାଶରଥି ଦାସ*

ଡକ୍ଟର କାହ୍ନୁଚରଣ ମିଶ୍ର । ଆମ୍ଭମାନଙ୍କର ସମ୍ମାନାସ୍ପଦ କାହ୍ନୁବାବୁ । ସେ ଆଉ ଇହଧାମରେ ନାହାନ୍ତି । ଯେଉଁମାନେ ତାଙ୍କୁ ଦୁଇମାସ ତଳେ ଦେଖିଥିବେ ସେମାନେ କଥାଟାକୁ ବିଶ୍ୱାସ କରିବେ ନାହିଁ । ସେଦିନ ତାଙ୍କର ଶରୀରର ଗତିଥିଲା ଅଶ୍ଲଥ ଏବଂ ମନଥିଲା ବେଶ ସଜାଗ ସଞ୍ଚରଣଶୀଳ । ଆଜି ସେ ଅନୁପସ୍ଥିତ । କଥାଟା ଅବିଶ୍ୱାସ ହେଲେ ହେଁ ସତ୍ୟ । ଏଇ ମାସ ୫ ତାରିଖ ରାତିରେ ସେ ଚାଲିଗଲେ । ତାଙ୍କର ସାନ୍ନିଧ ଓଡ଼ିଆ ସଂସ୍କୃତି ଓ ଭାରତୀୟ ମୂଲ୍ୟବୋଧକୁ ଆମ ଚେତନାରେ ପ୍ରତ୍ୟକ୍ଷ ରଖୁଥିଲା । ଦିବ୍ୟକାନ୍ତି, ଶୁଭ୍ର ଖଦଡ଼ଧୋତି ପଞ୍ଜାବୀ ଚାଦର ପରିଧାନ, ବ୍ରାହ୍ମଣ୍ୟ ଆଭିଜାତ୍ୟ, ଗୁଣଗ୍ରାହୀତା, ଆଚରଣର ଶାଳୀନତା, ଅନ୍ୟର ପ୍ରଶଂସା ମୁଖରତା, ନୈତିକ ଦାର୍ଢ୍ୟ, କଲ୍ୟାଣକାମୀ ଔଦାର୍ଯ୍ୟ, ଅନୁଭବର ସୌକୁମାର୍ଯ୍ୟ, କର୍ମତତ୍ପରତା ଏବଂ ସର୍ବୋପରି ଐତିହ୍ୟବୋଧ ଓ ଜଗନ୍ନାଥ ଚେତନା- ଏସବୁ ମିଶି ଗଢ଼ାଯାଇଥିବା ତାଙ୍କର ଅସାମାନ୍ୟ ବ୍ୟକ୍ତିତ୍ୱ ଆମକୁ ଭରସା ଦେଉଥିଲା ଯେ ଓଡ଼ିଆ ସଂସ୍କୃତି ଓ ଭାରତୀୟ ମୂଲ୍ୟବୋଧ ବିଗତ ସ୍ମୃତି ମାତ୍ର ନୁହେଁ, ଆମ ସମୟରେ ବି ତାହା ସବୁ ଜୀବନ୍ତ ଓ ଫଳପ୍ରସୂ ଅଛି । ଆଜି ଯେତେବେଳେ ଅଶ୍ଳୀଳ ଗ୍ରାମ୍ୟତା, ଉଦ୍ଧତ ଅପସଂସ୍କୃତି, ଅପଚୀୟମାନ ପ୍ରାତିସ୍ୱିକତା ଓ ଧର୍ମୀୟ ଅପହ୍ନୁତି ବଳବତ୍ତର ସେତେବେଳେ କାହ୍ନୁବାବୁଙ୍କ ତିରୋଧାନ ଆମ ମନରେ ଏକ ପ୍ରାୟ ଅପୂରଣୀୟ ଶୂନ୍ୟତା ଆଣୁଛି । ସେଦିନ ଏମିତି ଶୂନ୍ୟତା ସୃଷ୍ଟି କରି ଚାଲିଯାଇଥିଲେ ଡଃ କୁଞ୍ଜବିହାରୀ ତ୍ରିପାଠୀ- ଏବେ ଗଲେ ଡଃ ମିଶ୍ର ।

ଡକ୍ଟର ମିଶ୍ର ଜନ୍ମଲାଭ କରନ୍ତି ୧୯୨୨ରେ । ଜନ୍ମସ୍ଥାନ ଅବିଭକ୍ତ କଟକ ଜିଲ୍ଲାର ପଚାମୁଣ୍ଡାଇ । ସେ ଶିକ୍ଷା ଲାଭ କରନ୍ତି କଲକାତାରେ । ମାଟ୍ରିକଠାରୁ ସ୍ନାତକୋତ୍ତର ଡିଗ୍ରୀ ପର୍ଯ୍ୟନ୍ତ । ୧୯୪୩ରେ ସେ କୃତିତ୍ୱର ସହିତ ଓଡ଼ିଆରେ ଏମ୍.ଏ. ପାସ୍ କରନ୍ତି କଲକାତା ବିଶ୍ୱବିଦ୍ୟାଳୟରୁ ଓ ସ୍ୱର୍ଣ୍ଣପଦକ ଲାଭ କରନ୍ତି । ବୃତ୍ତି ଭାବରେ ଗ୍ରହଣ କରନ୍ତି ଅଧାପନା । ୧୯୪୪ରୁ ୧୯୮୨ ତାଙ୍କର ଅଧାପକ ଜୀବନ । ସାର୍‌ଙ୍କ ପଢ଼ାଇବାର ଧରଣ ଭୁଲିବାର ନୁହେଁ । ପ୍ରଧାନଗୁଣ ସ୍ପଷ୍ଟତା ଓ ପରିମିତି । ଆଉ ତାହା ସହିତ କାନ୍ଧରୁ ଚାଦର କାଢ଼ି ଆଉଥରେ ପକାଇବାର ଭଙ୍ଗୀଟି ସର୍ବଦା ଯୁକ୍ତଥିଲା । ଯେଉଁଠି ଯୁକ୍ତିର ବଳିଷ୍ଠତା ସେଠି କାନ୍ଧରୁ ଅବଶ୍ୟ

ଚାଦର ଉଠିବ ଓ ପଡ଼ିବ । ଆଉ ମୁହଁରେ ଫୁଟିବ ଈଷଦ୍ ଗର୍ବ ଓ ପ୍ରସନ୍ନତା । ଦୀର୍ଘ ୩୯ ବର୍ଷ ସେ ଏମିତି ପଢ଼ାଇଛନ୍ତି । ଶେଷରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ପ୍ରଧାନ ଓ ପ୍ରଫେସର ପଦରୁ ସେ ଅବସର ଗ୍ରହଣ କରନ୍ତି; କିନ୍ତୁ ଅଧ୍ୟୟନ ଓ ଗବେଷଣା କାର୍ଯ୍ୟ ଅବ୍ୟାହତ ରହେ । ଏବେ ସେ ଗୋଟିଏ ଗବେଷଣା ପ୍ରତିଷ୍ଠାନ ଗଢ଼ନ୍ତି । ନାମ Institute of Orissan Culture । ମୃତ୍ୟୁ ପର୍ଯ୍ୟନ୍ତ ସେ ଥିଲେ ଏହି ପ୍ରତିଷ୍ଠାନର ପ୍ରତିଷ୍ଠାତା ଡିରେକ୍ଟର । ସଂଗଠନ କ୍ଷେତ୍ରରେ ତାଙ୍କର ନିଷ୍ଠା ଓ କୁଶଳତା ଅବିସମ୍ବାଦିତ । ପ୍ରତିବର୍ଷ ସେ ଏହି ପ୍ରତିଷ୍ଠାନ ଆନୁକୂଲ୍ୟରେ ସର୍ବଭାରତୀୟ ସ୍ତରର ସେମିନାର ଆୟୋଜନ କରନ୍ତି, ଭାରତବର୍ଷର ବିଭିନ୍ନ ପ୍ରାନ୍ତରରୁ ବହୁ ବିଦ୍ୱାନଙ୍କୁ ନିମନ୍ତ୍ରଣ କରି ଆଣନ୍ତି । ଏତଭିନ୍ନ ଅନ୍ୟାନ୍ୟ ଅନେକ ଜନହିତକର ଅନୁଷ୍ଠାନ ସହିତ ସେ ଯୁକ୍ତଥିଲେ । ତାଙ୍କ ବନ୍ଧୁତ୍ୱର ଜଗତ ମଧ ଥିଲା ବଡ଼ ବ୍ୟାପକ । ବହୁ ବିଶିଷ୍ଟ ବ୍ୟକ୍ତି ତାଙ୍କର ବନ୍ଧୁ ଥିଲେ । ପାରିବାରିକ ଜୀବନ ପରିପୂର୍ଣ୍ଣ । ଜୀବନ ସାର୍ଥକ । ଏତେ ସାର୍ଥକତା ପରେ ମୃତ୍ୟୁ ଆସିଲେ ତାହା ଆଶୀର୍ବାଦ ହୋଇଉଠେ ।

ଡଃ ମିଶ୍ରଙ୍କ ସାରସ୍ୱତ ସାଧନା ମୁଖ୍ୟତଃ ଛାତ୍ରଙ୍କ ଉଦ୍ଦେଶ୍ୟରେ ନିବେଦିତ ହୋଇ ବି ଓଡ଼ିଆ ସାହିତ୍ୟ ସମାଲୋଚନାକୁ ବେଶ ସମୃଦ୍ଧ କରିଛି । ତାଙ୍କର ସାହିତ୍ୟ ସମୀକ୍ଷା, ଆଲୋଚନା ମାଳା ଓ ବିଦଗ୍ଧ କବି ଅଭିମନ୍ୟୁ ଆଦି ଗ୍ରନ୍ଥ ଉଲ୍ଲେଖଯୋଗ୍ୟ । ଶେଷୋକ୍ତ ଗ୍ରନ୍ଥ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛନ୍ତି । ଓଡ଼ିଆ ଭାଷା ସାହିତ୍ୟ ବିଭାଗର ପ୍ରଫେସର ସେ; କିନ୍ତୁ ତାଙ୍କ ଲେଖନୀ ସେହି ବିଶେଷ ଗଣ୍ଡିରେ ସୀମିତ ରହିନାହିଁ । ତାହା ହିଁ ଆମ ପାଇଁ ସୌଭାଗ୍ୟର କଥା । ସେ ଅଧିକାଂଶ ସମୟରେ ଧର୍ମ, ସଂସ୍କୃତି ଓ ଇତିହାସ ସମ୍ବନ୍ଧରେ ଅନୁଭାବିତ ରହିଛନ୍ତି । ତାଙ୍କ ଚିନ୍ତାରେ ଧର୍ମ, ସଂସ୍କୃତି ଓ ଇତିହାସ ଅବଶ୍ୟ ସାହିତ୍ୟର ହାତଧରି ଆସିଛନ୍ତି । ତେଣୁ ସର୍ବତ୍ର ଧର୍ମ ଓ ସଂସ୍କୃତିର ସମସ୍ୟାବଳୀ ସାହିତ୍ୟିକ ପ୍ରେକ୍ଷାପଟରେ ଆଲୋଚିତ ହୋଇଛି । ତାଙ୍କର ଗବେଷଣାତ୍ମକ ନିବନ୍ଧ "The Cult of Jagannath" ଇଂରାଜୀ ଭାଷାରେ ପ୍ରସ୍ତୁତ । ସେ ଏହି ନିବନ୍ଧ ରଚନା କରି କୋଲକାତା ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡିଗ୍ରୀ ଲାଭ କରିଛନ୍ତି । ଗାଇଡ୍ ହେଉଛନ୍ତି ପ୍ରାଚୀନ ଭାରତର ଇତିହାସ କ୍ଷେତ୍ରରେ କୃତବିଦ୍ୟ ପ୍ରଫେସର ଜିତେନ୍ଦ୍ରନାଥ ବାନାର୍ଜୀ । ଗବେଷଣା କମିଟି ଗତାନୁଗତିକତାର ସୀମା ଅତିକ୍ରମ କରି ସୁନିପୁଣ ଏକ ପ୍ରମାଣିକ ସନ୍ଦର୍ଭରେ ପରିଣତ ହୋଇଛି । ଯେ କୌଣସି ଉଚ୍ଚକୋଟିର ଗବେଷଣା କମ ପକ୍ଷରେ ଏହି ସିଦ୍ଧି ତ କାଙ୍କ୍ଷିତ । ପ୍ରଖ୍ୟାତ ପ୍ରଫେସର ସୁନୀତି କୁମାର ଚାଟାର୍ଜୀ ଗ୍ରନ୍ଥଟିର ପ୍ରଶଂସା କରିଛନ୍ତି ଯଥେଷ୍ଟ । "This book is a unique production, and the first one of its kind in English language.. He (Dr. Mishra) has illustrated it with a number of photographs as well as special paintings which he got executed to indicate

various aspects of temple worship. Within the limits of one volume he has given everything that is worth knowing about the temple and its history and ritual and its place in Hindu life" ସୁନୀତି ବାବୁଙ୍କ ଭବିଷ୍ୟତ ବାଣୀ ସଫଳ । ଭାରତ ଓ ଭାରତ ବାହାରେ ଗ୍ରନ୍ଥଟି ବେଶ ଆଦୃତ ହୋଇଛି । ଉଭୟ ପଣ୍ଡିତ ଓ ସାଧାରଣ ଲୋକ ଗ୍ରନ୍ଥଟିକୁ ଆଗ୍ରହରେ ପଢ଼ିଛନ୍ତି । ବାର୍ଦ୍ଧକ୍ୟର ପ୍ରାନ୍ତ ଅବଧି ଡଃ ମିଶ୍ର "The Institute of Orissan Culture" ଅନୁଷ୍ଠାନ ଆନୁକୂଲ୍ୟରେ ଜାତୀୟ ସ୍ତରର ସେମିନାର ଆୟୋଜନ କରିଛନ୍ତି । ପ୍ରତିବର୍ଷ ବିଭିନ୍ନ ପ୍ରାନ୍ତରୁ ଆସିଛନ୍ତି ଅନେକ ବିଦ୍ୱାନ । ଅନୁଷ୍ଠାନଟି ଓଡ଼ିଆଙ୍କ ଚିରପ୍ରସାରର ପ୍ରଚାରଚନା କ୍ଷେତ୍ରରେ ପରିଣତ ହୋଇଛି । ଧର୍ମ, ସଂସ୍କୃତି ଓ ଇତିହାସ କ୍ଷେତ୍ରରେ ତାହା ଯଥେଷ୍ଟ ଆଲୋକପାତ କରିଥାଏ । ସମ୍ଭ୍ରାନ୍ତ ଓ ସ୍ୱମହିମ ସେହିସବୁ ସେମିନାରରେ ପଠିତ ପ୍ରବନ୍ଧଗୁଡ଼ିକର ସମ୍ପାଦନା କରିଛନ୍ତି ଡଃ ମିଶ୍ର ପ୍ରଗାଢ଼ ନିଷ୍ଠା ଓ ପ୍ରଭୂତ ପରିଶ୍ରମରେ । ଏଯାବତ ଧର୍ମ, ସଂସ୍କୃତି ଓ ଇତିହାସ କ୍ଷେତ୍ରର ଜୟଦେବ, ଓଡ୍ର ରାଜବଂଶାବଳୀ, ଭାଗବତ, ରାମାୟଣ, ମହାଭାରତ, ଓଡ଼ିଶୀ, ବୈଷ୍ଣବଧର୍ମ, ଜୈନ ଧର୍ମ, ମହିମାଧର୍ମ, ଓଡ଼ିଶାର ବରପୁତ୍ର, ଧର୍ମଶାସ୍ତ୍ର ଓ ବୌଦ୍ଧ ଧର୍ମ ଆଦି ବିଷୟ ମଧ୍ୟରୁ Ramayan in Eastern India, ଓଡ୍ର ରାଜବଂଶାବଳୀ Studies in Mahabharat ଓ 'ଭାଗବତ ପରିଚୟ' ଗ୍ରନ୍ଥ ପ୍ରକାଶିତ । ଏଗୁଡ଼ିକର ମୂଲ୍ୟ ସ୍ୱୀକୃତ ଭାବେ ପ୍ରଚୁର ଓ ସୁସ୍ଥାୟୀ । ପ୍ରତିବର୍ଷ ଅକ୍ଷୟ ତୃତୀୟା ବେଳକୁ ବିଦ୍ୱାନମାନେ ଡଃ ମିଶ୍ରଙ୍କୁ ମନେ ପକେଇବେ ନିଶ୍ଚୟ । ବନ୍ଧୁମାନେ ଭୁଲିବେ ନାହିଁ । ଉତ୍ତରକାଳ ଯେବେ ତାଙ୍କୁ ବିସ୍ମୃତ ହୁଏ, ସଂସ୍କୃତିର କ୍ଷତି ହେବ ଯଥେଷ୍ଟ ।

ଡଃ ମିଶ୍ର ଲେଖକର ଅଧ୍ୟାପକ ଥିଲେ । ବଡ଼ ସ୍ନେହଶୀଳ ଓ ସହୃଦୟ ଅଧ୍ୟାପକ । ଜୀବନକୁ ଓ ସାହିତ୍ୟକୁ ବୁଝିବା କ୍ଷେତ୍ରରେ ସେ ଅନେକ କଥା ଶିଖାଇଛନ୍ତି । ତାଙ୍କୁ ପ୍ରଣାମ ।

■■

# ଅଜାତଶତ୍ରୁ ଡକ୍ଟର ମିଶ୍ର

*- ଡକ୍ଟର ଧନେଶ୍ୱର ମହାପାତ୍ର*

ଓଡ଼ିଶାର ଶିକ୍ଷିତ ସମାଜରେ, ବିଶେଷତଃ ଅଧାପକ ସମାଜରେ ପ୍ରଫେସର ଡକ୍ଟର କାହ୍ନୁଚରଣ ମିଶ୍ରଙ୍କ ନାମ ନ ଜାଣନ୍ତି କିଏ ? କେବଳ ଓଡ଼ିଶାରେ ନୁହେଁ, ଅନ୍ୟାନ୍ୟ ରାଜ୍ୟର ବିଦ୍ୱାନ ଗୋଷ୍ଠୀରେ ମଧ୍ୟ ତାଙ୍କ ନାମ ସୁପରିଚିତ । ଶ୍ରୀ ଜଗନ୍ନାଥଙ୍କ ସମ୍ପର୍କରେ ବିଶଦ ଗବେଷଣା କରି ଏବଂ ଓଡ଼ିଆ ତଥା ସଂସ୍କୃତ ସାହିତ୍ୟ ସମ୍ବନ୍ଧରେ ଗବେଷଣାତ୍ମକ ନିବନ୍ଧମାନ ଲେଖି ସେ ଅନନ୍ୟ ସାଧାରଣ ଖ୍ୟାତିର ଅଧିକାରୀ ହୋଇପାରିଥିଲେ ।

ଡକ୍ଟର କାହ୍ନୁଚରଣ ମିଶ୍ର ଥିଲେ ଅଜାତଶତ୍ରୁ । ସେ ସ୍ୱଭାବତଃ ଧୀରଶାନ୍ତ ଓ ଉଦାର ପ୍ରକୃତିର ଲୋକ ଥିଲେ । କେହି ଜଣେ କହିପାରିବେ ନାହିଁ ଯେ କାହ୍ନୁବାବୁଙ୍କ ସହିତ ତାଙ୍କର ଶତ୍ରୁତା ଲାଗିଥିଲା । ଅବଶ୍ୟ ଚାକିରି କାର୍ଯ୍ୟକାଳ ଭିତରେ ତାଙ୍କୁ ଏକ ପ୍ରତିଦ୍ୱନ୍ଦ୍ୱିତା ଓ ମୋକଦ୍ଦମାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମୁଁ ସେତେବେଳେ ରେଭେନ୍ସା କଲେଜରେ ଓଡ଼ିଆ ଓ ସଂସ୍କୃତ ଯୁଗ୍ମ ବିଭାଗରେ ଅଧାପକ (ଲେକଚରର) ଥିଲି । କାହ୍ନୁବାବୁ ଉକ୍ତ ବିଭାଗରେ ଓଡ଼ିଆ ପ୍ରାଧାପକ (ରିଡର) ଥିଲେ । ସଂସ୍କୃତ ରିଡର ଗୋଲକବିହାରୀ ଧଳ ମଧ୍ୟ ଓଡ଼ିଆ ସଂସ୍କୃତ ଯୁଗ୍ମ ବିଭାଗର ଅନ୍ତର୍ଗତ ଥିଲେ । ଯୁଗ୍ମ ବିଭାଗର ପ୍ରଫେସର ତଥା ମୁଖ୍ୟ କିଏ ହେବେ, ସେଥିନେଇ ଆଇନଗତ ପ୍ରଶ୍ନ ଉଠିଥିଲା । ପ୍ରଶ୍ନଟି ମୋକଦ୍ଦମା ରୂପେ ଉଚ୍ଚ ନ୍ୟାୟାଳୟରେ ଉପସ୍ଥାପିତ ହୋଇଥିଲା ଏବଂ ଧଳ ବାବୁ ପ୍ରଫେସର ତଥା ମୁଖ୍ୟ ହେବା ପାଇଁ ନ୍ୟାୟାଳୟର ରାୟ ପାଇଥିଲେ । ଏହି ପ୍ରସଙ୍ଗରେ ଯୁଗ୍ମ ବିଭାଗରେ ଟିକିଏ ବିବାଦାତ୍ମକ ପରିସ୍ଥିତି ସୃଷ୍ଟି ହୋଇଥିଲା ସତ, କିନ୍ତୁ କାହ୍ନୁବାବୁ ଓ ଧଳବାବୁ ପରସ୍ପର ବିରୁଦ୍ଧରେ ଲେଶମାତ୍ର ବିଦ୍ୱେଷ ପ୍ରକଟ କରିନଥିଲେ । କାହ୍ନୁବାବୁ ଥିଲେ ବିଦ୍ୱେଷର ସମ୍ପୂର୍ଣ୍ଣ ଉର୍ଦ୍ଧ୍ୱରେ । ଧଳ ବାବୁ ପ୍ରଫେସର ତଥା ବିଭାଗୀୟ ମୁଖ୍ୟ ହେବା ପରେ କାହ୍ନୁବାବୁ ରେଭେନ୍ସା କଲେଜରୁ ବଦଳି ହୋଇଥିଲେ । ଯାହା ହେଉ, କିଛି ସମୟ ପରେ ସେ ନିଜ ଗୁଣରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଫେସର ତଥା ମୁଖ୍ୟ ପଦ ମଣ୍ଡନ କରିପାରିଥିଲେ ।

ଡକ୍ଟର କାହ୍ନୁଚରଣ ମିଶ୍ର ଅଧାପକ ଭାବେ ଯେତିକି ସୁନାମ ଅର୍ଜନ କରିଯାଇଛନ୍ତି, ତାଠାରୁ ଅଧିକ ସୁନାମ ଅର୍ଜନ କରିଯାଇଛନ୍ତି ଲେଖକ ଓ ସମାଲୋଚକ ଭାବରେ ।

ସେତେବେଳେ ଓଡ଼ିଆ ସାହିତ୍ୟର ସମାଲୋଚକ ଭାବେ ମୁଖ୍ୟତଃ ନଟବର ସାମନ୍ତରାୟ ଓ କାହ୍ନୁଚରଣ ମିଶ୍ର ପ୍ରସିଦ୍ଧ ଥିଲେ । ଓଡ଼ିଆ ସାହିତ୍ୟ ସମାଲୋଚନାର ଧାରା ସେ ଦୁହେଁ ଯାହା ପକାଇ ଯାଇଛନ୍ତି, ତାହା ହିଁ ପରବର୍ତ୍ତୀ ସମାଲୋଚକମାନଙ୍କ ଦ୍ୱାରା ଅନୁସୃତ ହୋଇଛି । ସଂସ୍କୃତ ସାହିତ୍ୟ ପ୍ରତି ଡକ୍ଟର ମିଶ୍ରଙ୍କର ପ୍ରଗାଢ଼ ଅନୁରାଗ ଥିଲା । ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ ଠାରୁ ଏବଂ ମୋ ଠାରୁ ସେ ଅନେକ ସମୟରେ ସଂସ୍କୃତ ଶ୍ଳୋକର ଅର୍ଥ ପଚାରି ବୁଝୁଥିଲେ ।

ଓଡ଼ିଶା ପ୍ରତି ଡକ୍ଟର କାହ୍ନୁଚରଣ ମିଶ୍ରଙ୍କର ପ୍ରଧାନ ଦାନ ହେଉଛି ଶ୍ରୀ ଜଗନ୍ନାଥ ସଂସ୍କୃତି ସମ୍ବନ୍ଧୀୟ ଗବେଷଣା ନିବନ୍ଧ ଏବଂ ତତ୍‌ସମ୍ବନ୍ଧୀୟ ଅନେକ ଲେଖା । ଉକ୍ତ ନିବନ୍ଧଟି ଇଂରାଜୀ ଭାଷାରେ ଲେଖା ହୋଇଥିବାରୁ ତାହା ଦେଶ ବିଦେଶର ବହୁ ବିଜ୍ଞ ଲୋକଙ୍କର ଦୃଷ୍ଟି ଆକର୍ଷଣ କରିପାରିଲା ଏବଂ ଓଡ଼ିଶାର ଜଗନ୍ନାଥ ସଂସ୍କୃତି ସମ୍ବନ୍ଧରେ ବାହାରର ବହୁ ଲୋକ ଜାଣିବାକୁ ପାଇଥିଲେ । ତାଙ୍କୁ ଅନୁସରଣ କରି ପରେ ଅନେକ ଲେଖକ ଓ ଗବେଷକ ଜଗନ୍ନାଥ ସଂସ୍କୃତି ସମ୍ବନ୍ଧରେ ଲେଖିଲେ । ଓଡ଼ିଶାରେ ଅତୀତରେ ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ ଆଦି ବିଭିନ୍ନ ମତବାଦର ଯେତେ ଉପାସନା ପଦ୍ଧତି ପ୍ରଚଳିତ ଥିଲା, ଡକ୍ଟର ମିଶ୍ର ସେସବୁ ବିଷୟରେ ଗଭୀର ଅଧ୍ୟୟନ କରିଥିଲେ ଏବଂ ପୁସ୍ତକ ପ୍ରଣୟନ କରିଥିଲେ । ତେଣୁ ସେ ଧର୍ମଧାରା ବିଶେଷଜ୍ଞ ଭାବରେ ଖ୍ୟାତି ଅର୍ଜନ କରିଥିଲେ ।

ଛାତ୍ରଛାତ୍ରୀଙ୍କ ପ୍ରତି ସ୍ନେହାଦର ଓ ସେମାନଙ୍କୁ ସାହାଯ୍ୟ କରିବା ଥିଲା ଡକ୍ଟର ମିଶ୍ରଙ୍କର ଏକ ସ୍ୱତଃପ୍ରବୃତ୍ତ ଗୁଣ । ବହୁ ଛାତ୍ରଛାତ୍ରୀ ପାଠପଢ଼ାରେ ଏବଂ ଚାକିରି ବାକିରି କ୍ଷେତ୍ରରେ ତାଙ୍କ ଦ୍ୱାରା ଉପକୃତ ହୋଇଛନ୍ତି । କାହାରି ଠାରୁ ତିଳେମାତ୍ର ପ୍ରତିଦାନ ସେ ଆଶା କରୁନଥିଲେ । ଯାହାକୁ ଦେଖୁଥିଲେ, ସହସ ମୁଖରେ ତା ସହିତ ଆଳାପ କରୁଥିଲେ । ତାଙ୍କର ଆଉ ଏକ ବୈଶିଷ୍ଟ୍ୟ ଥିଲା ସାମାଜିକ ସଚେତନତା । ତରୁଣ ସମୟରେ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ନିଜ ଗ୍ରାମାଞ୍ଚଳରେ ବିଭିନ୍ନ ଗଠନମୂଳକ କାର୍ଯ୍ୟ କରିଥିଲେ । ଚାକିରିରୁ ଅବସର ନେଇ । ପରେ ଓଡ଼ିଶାର ପୁରପଲ୍ଲୀରେ ଭାଗବତ ଟୁଙ୍ଗୀଗୁଡ଼ିକର ପୁନରୁଦ୍ଧାର ନିମନ୍ତେ ମନ ବଳାଇଥିଲେ । କେତେକ ଗ୍ରାମକୁ ଯାଇ ସଭା କରି ପୂର୍ବରୁ ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ଥିବା ଭାଗବତ ଟୁଙ୍ଗୀ ଘରଗୁଡ଼ିକର ମରାମତି କରିବାକୁ ଏବଂ ପ୍ରତିଦିନ ସଂଜବେଳେ ଜଗନ୍ନାଥ ଦାସଙ୍କ ଭାଗବତ ଶୁଣିବାକୁ ଲୋକଙ୍କୁ ବୁଝାଇଥିଲେ ।

ଜୀବନର ଅନ୍ତିମ ପର୍ଯ୍ୟାୟ ପର୍ଯ୍ୟନ୍ତ ଅଧ୍ୟୟନ ଓ ଗବେଷଣାରୁ ଡକ୍ଟର ମିଶ୍ର ନିବୃତ୍ତ ହୋଇନଥିଲେ । ଏକ ଗବେଷଣା ସଂସ୍ଥା ପ୍ରତିଷ୍ଠା କରି, ଜ୍ଞାନୀଗୁଣୀ ଲୋକମାନଙ୍କୁ ଆମନ୍ତ୍ରଣ କରି ଆଲୋଚନା ଓ ଗବେଷଣା ତଥ୍ୟ ଉପସ୍ଥାପନର ବ୍ୟବସ୍ଥା କରିଥିଲେ । ତାଙ୍କ ପ୍ରଚେଷ୍ଟାରେ

କେତେକ ମହତ୍ତ୍ୱପୂର୍ଣ୍ଣ ପାଣ୍ଡୁଲିପି (ପୋଥି ଗବେଷଣାତ୍ମକ ଲେଖା ପ୍ରଭୃତି) ପ୍ରକାଶିତ ହୋଇଛି । ବୟୋବୃଦ୍ଧ ଅବସ୍ଥାରେ ମଧ୍ୟ ସେ କର୍ତ୍ତବ୍ୟବୋଧରେ ଜ୍ଞାନାର୍ଜନ ଓ ଜ୍ଞାନବିତରଣ କାର୍ଯ୍ୟ କରିଯାଇଛନ୍ତି ।

ମୁଁ କାହ୍ନୁବାବୁଙ୍କ ଭଳି ଜଣେ ଉଦାର, ମିଷ୍ଟଭାଷୀ, ଜ୍ଞାନୀ, ଗୁଣୀ, ଛାତ୍ରବତ୍ସଳ, ବନ୍ଧୁପ୍ରିୟ ଅଧ୍ୟାପକଙ୍କ ସଂଗେ ସହକର୍ମୀ ଭାବେ ବହୁଦିନ କାର୍ଯ୍ୟ କରି ଧନ୍ୟ ହୋଇଅଛି ଏବଂ ଏ ସଂସାରରେ ଆଉ ଯେତେ ଦିନ ଅଛି, ତାଙ୍କର ଗୁଣ ସ୍ମରଣ କରି ଧନ୍ୟ ହେଉଥିବି ।

କଲ୍ୟାଣୀନଗର, କଟକ-୧୩

■■

# ସ୍ମୃତିରୁ କିଂଚିତ

*- ଡକ୍ଟର ବନମାଳୀ ବାରିକ*

୧୯୭୪-୭୫ ମସିହାର କଥା । ଆଖି ଆଗରେ ସବୁ ନାଚି ଉଠୁଛି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ପ୍ରଫେସର କିଏ ହେବେ ସେଥିପାଇଁ ସମସ୍ତଙ୍କର ଉତ୍କଣ୍ଠା । ଡଃ କୁଂଜବିହାରୀ ଦାଶ ମନୋନୟନ କମିଟିରୁ ଫେରି ମ୍ୟୁନିସିପାଲ ଗେଷ୍ଟ ହାଉସକୁ ଆସିଲେ । ଆମେ ତାଙ୍କୁ ଘେରିଗଲୁ । ଫଳାଫଳ ଜାଣିବା ପାଇଁ । ମୁଁ ସେତେବେଳେ ସାଂଧ୍ୟ ମହାବିଦ୍ୟାଳୟର ଅଧ୍ୟାପକ । ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରଫେସର ଡଃ ଗୋପାଳ ଚନ୍ଦ୍ର ମିଶ୍ର, ଡଃ ବେଣୀମାଧବ ପାଢ଼ୀ, ଡଃ କାହ୍ନୁଚରଣ ମିଶ୍ର- ତିନିଜଣଙ୍କ ମଧ୍ୟରେ ପ୍ରମୁଖ ପ୍ରତିଦ୍ୱନ୍ଦ୍ୱିତା । ଶୁଣାଯାଏ- ମନୋନୟନ କମିଟିର ଜଣେ ସଭ୍ୟ କହିଲେ:- ଗୋପାଳ ବାବୁ - ଡିଲିଟ- ବର୍ତ୍ତମାନ ଜଣେ ପ୍ରଫେସର । ଅନ୍ୟ ଜଣେ ସଭ୍ୟ ବେଣୀ ବାବୁଙ୍କ ସପକ୍ଷରେ କହିଲେ । ଗୋଟିଏ ପଟେ ସରକାରଙ୍କ ଇଚ୍ଛା ଓ ଅନ୍ୟ ପଟେ ବିଶ୍ୱବିଦ୍ୟାଳୟ କୁଳପତିଙ୍କ ଇଚ୍ଛା । ବହୁତ ଟଣାଓଟରା ହେଲା ଶେଷରେ କଥା ଛିଡ଼ିଲା । କାହ୍ନୁବାବୁଙ୍କ ମୁଣ୍ଡରେ କଳସ ଢ଼ଳାଗଲା ।

ସେଇଠି ଡଃ ମିଶ୍ରଙ୍କୁ ଚିହ୍ନିଲି । ତା ପୂର୍ବରୁ ତାଙ୍କୁ ଜାଣିଥିଲି ଦି କଲ୍ଟ ଅଫ୍ ଜଗନ୍ନାଥ ଗ୍ରନ୍ଥର ଗବେଷକ ପ୍ରଣେତା ରୂପେ । ତାଙ୍କୁ ଜାଣିଥିଲି 'ଓଡ଼ିଆ ନାଟକ ଓ କବିତା' ପୁସ୍ତକର ରଚୟିତା ରୂପେ । 'ଓଡ଼ିଶା ବୈଷ୍ଣବ ଧର୍ମ' ପୁସ୍ତକର ଲେଖକ ରୂପେ । ଏମ୍.ଏ. ଶ୍ରେଣୀର ଛାତ୍ର ଥିବାବେଳେ ଏସବୁ ବହି ପଢ଼ିବାର ସୁଯୋଗ ମିଳିଥିଲା ।

ଡଃ ମିଶ୍ର ଥିଲେ କଲିକତା ବିଶ୍ୱବିଦ୍ୟାଳୟର ପ୍ରଖ୍ୟାତ ଭାଷା ବିଜ୍ଞାନୀ । ପରେ ଜାତୀୟ ପ୍ରଫେସର ଡଃ ସୁନୀତି କୁମାର ଚାଟାର୍ଜୀଙ୍କର ପ୍ରିୟ ଛାତ୍ର । ସେହି ବିଶ୍ୱବିଦ୍ୟାଳୟର ଖ୍ୟାତନାମା ସଂସ୍କୃତଜ୍ଞ ଧର୍ମଶାସ୍ତ୍ରବିଦ୍ ଡଃ ଜେ.ଏନ୍. ବାନାର୍ଜିଙ୍କ ଅଧୀନରେ କାର୍ଯ୍ୟ କରିଥିବା ପ୍ରିୟ ଗବେଷକ ଡଃ କାହ୍ନୁଚରଣ ମିଶ୍ର । ଏଭଳି ସୌଭାଗ୍ୟ କେତେଜଣଙ୍କ ଭାଗ୍ୟରେ ଜୁଟେ ?

ବିଶ୍ୱବିଦ୍ୟାଳୟରେ ଯୋଗ ଦେଲାପରେ ମୁଁ ସାହସ ବାନ୍ଧି ତାଙ୍କ ଘରକୁ ଗଲି । କମାପଲ୍ଲୀ ପାଖ ଗୋଇଲୁଣ୍ଡି ସାହିରେ ସେ ଘର ଭଡ଼ା ନେଇ ରହୁଥିଲେ । ମନରେ ଆଶଙ୍କା ଥିଲା ଗାଇଡ ହେବା ପାଇଁ ରାଜି ହେବେ କି ନାହିଁ । ପ୍ରଥମ ସାକ୍ଷାତରେ ସମ୍ମତି ମିଳିଲା ।

ସେହିଦିନଠାରୁ ଅତୁଟ ସମ୍ପର୍କ । ତାଙ୍କର କଥା ମୁଁ ଟାଳି ପାରିନାହିଁ କି ସେ ମୋ କଥାରେ କେବେ ଅରାଜି ହୋଇନାହାନ୍ତି । ପରେ ପରେ ବଦଳି । ବାରିପଦା ମହିଳା କଲେଜ ଓ ରେଭେନ୍ସା କଲେଜ । ୧୯୭୭ ଜୁଲାଇ ୨୧ରୁ ତିନିବର୍ଷ ପାଇଁ ଶିକ୍ଷକ- ଗବେଷକ ରୂପେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଯୋଗଦେଲି । ତାଙ୍କ ପାଖେ ପାଖେ ରହି ଗବେଷଣା କରିବାର ସୁଯୋଗ ମିଳିଲା ।

ଗବେଷକ ଜୀବନର କଥା । ଦେଖିଲି- ମୋର ଶିକ୍ଷକ ବିଶିଷ୍ଟ ସମାଲୋଚକ ଅଧ୍ୟାପକ ଚିନ୍ତାମଣି ବେହେରା ଗବେଷଣା ପାଇଁ ତାଙ୍କ ନିକଟକୁ ଆସିଲେ । ମୋର ଆଉ ଜଣେ ଶିକ୍ଷକ ଅଧ୍ୟାପକ ଗଙ୍ଗାଧର ବଳ ମଧ ତାଙ୍କର ଶରଣାପନ୍ନ । ଅଧ୍ୟାପକ ଶରତଚନ୍ଦ୍ର ପ୍ରଧାନ, ଅଧ୍ୟାପକ ଦାଶରଥି ଦାସ, ଅଧ୍ୟାପକ ବୃନ୍ଦାବନ ଆଚାର୍ଯ୍ୟ- ସମସ୍ତେ ସେଇ ଲକ୍ଷ୍ୟରେ । ବନ୍ଧୁ ସତ୍ୟ ଆଚାର୍ଯ୍ୟ ଶିକ୍ଷକତା ଛାଡ଼ି ଛାତ୍ର- ଗବେଷକ ରୂପେ ସେଠାରେ ଯୋଗ ଦେଇଥାନ୍ତି । ପରେ ଆସିଲେ ଛାତ୍ର ଗବେଷକ ରୂପେ ଶ୍ରୀମାନ ବ୍ରଜ । ମୁଁ ଥେସିସ୍ ଦାଖଲ କରିବାର ୨ ବର୍ଷ ପରେ ବନ୍ଧୁ ଡଃ ମଧୁରେନ୍ଦ୍ର ପୃଷ୍ଟିଙ୍କର ଡି.ଲିଟ୍ ପାଇଁ ଗବେଷଣା କାର୍ଯ୍ୟ ସରିଲା । ଶ୍ରୀମତୀ ସୁଧା ମିଶ୍ର ସଂଗୀତ ସଂପର୍କରେ ଗବେଷଣା କରି ସଫଳ ହେଲେ । ଭଂଜ ସାହିତ୍ୟ, ଓଡ଼ିଶାର ଧାର୍ମିକ ବିଚାର, ସଂଗୀତ ପରମ୍ପରା, ପ୍ରାଚୀନ କାବ୍ୟ ଓ ଜଗନ୍ନାଥ ସଂସ୍କୃତି ଉପରେ ଥିଲା ତାଙ୍କର ଅଶେଷ ଦକ୍ଷତା । ସାହିତ୍ୟ ସଂସ୍କୃତି ଉପରେ ତାଙ୍କର ଅନର୍ଗଳ ଭାଷଣ ଯିଏ ଶୁଣିଛି, ସିଏ ଭୁଲିପାରି ନାହିଁ, ଭୁଲିପାରିବ ନାହିଁ ।

ସାରଙ୍କ ବ୍ୟକ୍ତିତ୍ୱର ଆକର୍ଷଣ ଅନନ୍ୟ । କାହା ପ୍ରତି ରାଗ ନାହିଁ, ଦ୍ୱେଷ ନାହିଁ । ସମସ୍ତଙ୍କର ଉନ୍ନତି/ଅଗ୍ରଗତି ପାଇଁ ସେ ସର୍ବଦା ବ୍ୟଗ୍ର ଥିଲେ । ସବୁଠୁଁ ଦୁଷ୍ଟ ବ୍ୟକ୍ତି ତାଙ୍କର ଆଶୀର୍ବାଦ ପାଇଛି । ସବୁଠୁଁ ଶିଷ୍ଟ ବ୍ୟକ୍ତି ତାଙ୍କର ସାହଚର୍ଯ୍ୟ ପାଇ ଧନ୍ୟ ହୋଇଛି । ଆଜିର ଅନୁଗତ ବ୍ୟକ୍ତି କାର୍ଯ୍ୟ ସିଦ୍ଧି ପରେ ତାଙ୍କର ଆନୁଗତ୍ୟ ଅସ୍ୱୀକାର କରି ବାଟ ଭାଙ୍ଗି ଚାଲିଯାଇଛି । ବହୁ ଧୂର୍ତ୍ତ ବ୍ୟକ୍ତି ମଧ ତାଙ୍କର ଅନୁକମ୍ପା ପାଇଛନ୍ତି । ବିଚିତ୍ର ମଣିଷ । ସମସ୍ତଙ୍କୁ ବାନ୍ଧି ରଖିବାର ଅପୂର୍ବ କ୍ଷମତା ତାଙ୍କଠାରେ ଥିଲା ।

ମାଉସୀ (ସାର୍‌ଙ୍କ ଧର୍ମପତ୍ନୀ) ଥିଲେ ସେହି ପରିବାରର ଆକର୍ଷଣର ଅନ୍ୟତମ କେନ୍ଦ୍ରବିନ୍ଦୁ । ସ୍ନେହ, ଶ୍ରଦ୍ଧା ଆଦର ଅଭ୍ୟର୍ଥନାରେ ତାଙ୍କର ଅକୃପଣ ହାତ ସବୁବେଳେ ଲମ୍ବି ଆସୁଥିଲା । କ୍ଷୀରି, ପୁରି, ଦହି ମିଠା, ଯେତେବେଳେ ଯାହାଥିବ ନଖୁଆଇ ଛାଡିବେ ନାହିଁ । ଗପ ଲମ୍ବିଥିବ । ମୋ ଶଳା-ଶାଳୀ, ପୁଅ-ଝିଅ, ପାଠପଢ଼ା, ଚାକିରୀ, ବାହାଘର, ଘର ତିଆରି ସବୁର ହିସାବ ସେ ନିଅନ୍ତି । ସେ ଭେଡା ଜମିଦାର ପରିବାରର ଝିଅ । କିନ୍ତୁ ତାଙ୍କଠାରେ ସାମାନ୍ୟ ବଡ଼ପଣିଆ ନାହିଁ ।

ହଁ, କହିରଖେ । ମୋ ଥେସିସର ଅନ୍ୟ ଦୁଇଜଣ ପରୀକ୍ଷକ ଥିଲେ ଡଃ କୁଞ୍ଜବିହାରୀ ତ୍ରିପାଠୀ, ଡଃ କୁଞ୍ଜବିହାରୀ ଦାଶ । ମୋତେ ଥରେ କହିଲେ- ''ଓଡ଼ିଶାର ଦୁଇ ଜଣ ବରପୁତ୍ର, ସୁନାମଧନ୍ୟ ପ୍ରଫେସର ତମ କାର୍ଯ୍ୟର ସମୀକ୍ଷା କରିବେ । ସେଥିରୁ ଆମ ତ୍ରୁଟିର ପରିଚୟ ମିଳିବ । ଡରିବାର କିଛି ନାହିଁ । ମୋର ବିଶ୍ୱାସ- ଖୁବ୍ ଶୀଘ୍ର ରିପୋର୍ଟ ଆସିଯିବ'' । ଯାହାହେଉ ଯଥା ସମୟରେ ସାକ୍ଷାତକାର (Viva) ହେଲା । ଡଃ ତ୍ରିପାଠୀ ଥେସିସର ବିଭିନ୍ନ ପୃଷ୍ଠାରେ ନାଲିଗାର ପକାଇ ଆଣିଥିଲେ । ସବୁ ଚର୍ଚ୍ଚା ହେଲା । ବହି ଛପା ବେଳକୁ ସେଇ ତ୍ରୁଟିଗୁଡ଼ିକୁ ସୁଧାରି ଦେଇଥିଲି । ଆଜି ମୁଁ ପ୍ରକୃତରେ ଖୁସି ଯେ ଡଃ କାହ୍ନୁଚରଣ ମିଶ୍ର, ଡଃ କୁଞ୍ଜବିହାରୀ ତ୍ରିପାଠୀ, ଡଃ କୁଞ୍ଜବିହାରୀ ଦାଶ- ତିନିଜଣ ମହାନ ବ୍ୟକ୍ତିଙ୍କ ସାନ୍ନିଧ ମୋତେ ମିଳିଛି ।

ସାର୍ ଥିଲେ ଭାରି ଅମାୟିକ ଲୋକ । କେତେବେଳେ କୁଆଡୁ ଆସି ଘରେ ହାଜର ହୋଇ ଯାଉଥିଲେ । ସେ କାଳର ବିଶ୍ୱବିଦ୍ୟାଳୟର ପ୍ରଫେସର । ଟିକିଏ ବୋଲି ଅହଂକାର ନଥିଲା । ତାଙ୍କ ପିଲାମାନଙ୍କ ବାହାଘର/ଭୋଜିଭାତ ବେଳକୁ ଡାକରା । ନିଜେ ଆସି କହିଦେଇ ଯାଉଥିଲେ । ବେଲ ପାଚିଲା ବେଳେ- ବେଲ ପଠାଇବାକୁ ପଡୁଥିଲା- ନହେଲେ ନିଜେ ପହଞ୍ଚିଯାଉଥିଲେ । ବିଭିନ୍ନ ସଭାସମିତି /ସେମିନାରକୁ ନିମନ୍ତ୍ରଣ ମିଳୁଥିଲା ।

ସାହିତ୍ୟ, ଶିକ୍ଷା, ରାଜନୀତି, ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ତାଙ୍କର ବହୁ ଛାତ୍ର ଉଚ୍ଚ ପଦ ପଦବୀରେ ଥିଲେ । ତେଣୁ କାହାର କିଛି ଅସୁବିଧା ହେଲେ ସେ ସ୍ୱତଃପ୍ରବୃତ୍ତ ହୋଇ ସାହାଯ୍ୟ କରିବାକୁ ଆଗଭର ହୋଇ ବାହାରି ପଡୁଥିଲେ । ସବୁବେଳେ ଯେ ସବୁ କାର୍ଯ୍ୟ ହେବ- ସେକଥା ଭାବୁନଥିଲେ । ତଥାପି ସାହାଯ୍ୟ କରିବା ନୀତିରେ ସାହାଯ୍ୟ କରୁଥିଲେ ।

ଅନେକ ଘଟଣା । ମାତ୍ର ଦୁଇଟିର ଉଲ୍ଲେଖ କରିବି । କଟକ 'ଉତ୍କଳ ସାହିତ୍ୟ ସମାଜ' ହଲରେ ତାଙ୍କର ଷଷ୍ଠୀ ପୂର୍ତ୍ତି ଉତ୍ସବ ପାଳିତ ହେଉଥାଏ । ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି ଥିଲେ ମୁଖ୍ୟବକ୍ତା । ସେଦିନ ସେ ତାଙ୍କର ଯେଭଳି ପ୍ରଶଂସା କଲେ ବିଶେଷତଃ 'ଦି କଲ୍ଟ ଅଫ୍ ଜଗନ୍ନାଥ' ବହିକୁ ନେଇ । ତାହା ଶୁଣି ଆମ୍ଭମାନଙ୍କ ଛାତି କୁଣ୍ଢେମୋଟ ହୋଇଗଲା । ସାର୍ ମଧ ତାଙ୍କ ଗବେଷଣା ଜୀବନର ଅନେକ ଅନୁଭୂତି କଥା କହିଥିଲେ । ଗୋଟିଏ କଥା ମନେ ପଡୁଛି- ଏକ ସମସ୍ୟାର ସମାଧାନ ପାଇଁ ସେ ଲକ୍ଷେ ମନ୍ତ୍ର ଜପିବାର ଶପଥ କରିଥିଲେ । ପ୍ରାୟ ପାଞ୍ଚହଜାର ଜପି ସରିଲା ପରେ କିଏ ଯେପରି କହିହେଲା- 'ହେଇ ଏଇଠି ଦେଖ ! ଦେଖିଲା ବେଳକୁ ବହିର ପୃଷ୍ଠା ଖୋଲି ହୋଇପଡ଼ିଛି ।' ସେ ତାଙ୍କର ଖୋଜିବା ବିଷୟ ପାଇଗଲେ ।

ଥରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସରକାରୀ ବାସଭବନରେ

ଗୋଟିଏ ସଭା ହୋଇଥିଲା- 'ସିଦ୍ଧାନ୍ତ ଦର୍ପଣ'ର ଉନ୍ମୋଚନ ଉତ୍ସବ । ବିଶ୍ୱବିଦ୍ୟାଳୟର ବହୁ ଅଧ୍ୟାପକ, କିଛି ରାଜନୀତିଜ୍ଞ, କେତେଜଣ ପ୍ରଶାସକ, ବହୁ ସାହିତ୍ୟ ସଂସ୍କୃତି ପ୍ରେମୀ ବ୍ୟକ୍ତି ସେଠାରେ ଉପସ୍ଥିତ ଥିଲେ । ସେଦିନ ମୁଖ୍ୟମନ୍ତ୍ରୀ ଅବଶ୍ୟ ବହୁ ଉପାଦେୟ କଥା କହିଥିଲେ । ମୂଳକଥା ହେଲା- ଡଃ ମିଶ୍ର ଓଡ଼ିଶାର ଗୌରବ 'ସିଦ୍ଧାର୍ଥ ଦର୍ପଣ'ର ବହୁ ବର୍ଷ ପରେ ପୁନଃ ମୁଦ୍ରଣ କରିପାରିଥିବାରୁ ତାଙ୍କର ଭୂୟସୀ ପ୍ରଶଂସା । ଏଭଳି ପ୍ରାଚୀନ ଗ୍ରନ୍ଥର ଉଦ୍ଧାର ପାଇଁ ସେ ମୁକ୍ତ ହସ୍ତରେ ସାହାଯ୍ୟ କରିବେ ବୋଲି ଘୋଷଣା କରିଥିଲେ । ସାର୍‌ଙ୍କ ମୁହଁରୁ ମୁଁ ଶୁଣିଛି- ଯେ, ମୁଖ୍ୟମନ୍ତ୍ରୀ ଉଦାର ଭାବରେ ଆର୍ଥିକ ଓ ଅନ୍ୟାନ୍ୟ ସାହାଯ୍ୟ ଯୋଗାଇ ଦେଇଛନ୍ତି ।

ସାର୍ 'ଓଡ଼ିଶା ସଂସ୍କୃତି ପରିଷଦ'ର ଥିଲେ ପ୍ରତିଷ୍ଠାତା । ସଭା/ ସମ୍ମିଳନୀ ଜରିଆରେ ବହୁ ପଣ୍ଡିତ, ଜ୍ଞାନୀ ଓ ଗୁଣୀ ବ୍ୟକ୍ତିଙ୍କୁ ଏକତ୍ର କରି ପାରିଥିଲେ । ତାଙ୍କ ଉଦ୍ୟମରେ ବହୁ ଗ୍ରନ୍ଥର ସମ୍ପାଦନା, ଶୁଦ୍ଧପାଠ ଓ ପୁନଃମୁଦ୍ରଣ ସମ୍ଭବ ହୋଇଛି । ଓଡ଼ିଶାର ଧର୍ମ ସାହିତ୍ୟ ସଂସ୍କୃତି ସମ୍ପର୍କରେ ବହୁ ନୂତନ ତଥ୍ୟ ଲୋକଲୋଚନକୁ ଆସିଛି । ଓଡ଼ିଶାରେ ତାଙ୍କ ପ୍ରତିଭାର ଯଥାର୍ଥ ମୂଲ୍ୟାୟନ ହୋଇପାରି ନାହିଁ । ମୋର ବିଶ୍ୱାସ- ଆଗାମୀ ଦିନର ଗବେଷକମାନେ ତାଙ୍କ ସମ୍ପର୍କରେ ବ୍ୟାପକ ଚର୍ଚ୍ଚା କରିବେ ।

ଆଜି ତାଙ୍କର ପବିତ୍ର ସ୍ମୃତି ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳି ମାତ୍ର ।

(ଡଃ କାହ୍ନୁଚରଣ ମିଶ୍ରଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଉପଲକ୍ଷେ)

■■

# ଅସୀମ ପ୍ରେରଣାର ଉତ୍ସ ପ୍ରଫେସର କାହ୍ନୁଚରଣ ମିଶ୍ର

*- ଡକ୍ଟର କୈଳାସଚନ୍ଦ୍ର ଦାଶ*

ପ୍ରଫେସର କାହ୍ନୁଚରଣ ମିଶ୍ର ଅବିସ୍ମରଣୀୟ ସାହିତ୍ୟ ସମାଲୋଚକ, ସଂସ୍କୃତି ଉଦ୍‌ଗାତା ଏବଂ ତରୁଣ ଲେଖକ ଲେଖିକାମାନଙ୍କର ପ୍ରେରଣାର ଉତ୍ସ । ତାଙ୍କୁ ବ୍ୟକ୍ତିଗତ ଭାବେ ମୁଁ ଜାଣିଲି ୧୯୯୨ ମସିହାରେ; କିନ୍ତୁ ତାଙ୍କ ପରିଚୟ ମୋ ପାଇଁ ଥିଲା ବହୁ ପୁରୁଣା ପ୍ରସଙ୍ଗ । କାହ୍ନୁବାବୁଙ୍କର ସାହିତ୍ୟ ସଂସ୍କୃତି ଚର୍ଚ୍ଚା ସମୟରେ ସେ ଅପରିସୀମ ଆଗ୍ରହ ଦେଖାଇଛନ୍ତି । ତାଙ୍କ ସହିତ ତାଙ୍କ ଘରେ ଉଚ୍ଚକୋଟିର ଚା'ପାନ ବିନିମୟରେ ଜଗନ୍ନାଥ ସଂସ୍କୃତି ଚର୍ଚ୍ଚା ବହୁବାର ମୁଁ କରିଛି । ଏକଦା ତାଙ୍କ କଲ୍ଟ ଅଫ୍ ଜଗନ୍ନାଥକୁ ସଂଶୋଧିତ ଏବଂ ପରିବର୍ଦ୍ଧିତ କରିବା ପାଇଁ ମୋତେ ଆଗ୍ରହର ସହିତ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ସମୟର ଅଭାବ ତଥା ଅନ୍ୟ କେତେକ ଅସୁବିଧା ପାଇଁ ଏ କାର୍ଯ୍ୟଟି ମୋ ଦ୍ୱାରା ହୋଇପାରିନଥିଲା ।

ଅଧ୍ୟାପନା ଆରମ୍ଭରେ କାହ୍ନୁବାବୁ ପ୍ରାଚୀନ ଓ ଆଧୁନିକ ସାହିତ୍ୟ ଉପରେ ବହୁ ପ୍ରବନ୍ଧ ପୁରାତନ ପତ୍ରପତ୍ରିକା ମାନଙ୍କରେ ପ୍ରକାଶ କରିଥିଲେ । କଲିକତାରେ ମଧ୍ୟ ଓଡ଼ିଆ ଶ୍ରମଜୀବୀ ସ୍କୁଲ ସଂଗଠନ ପର୍ଯ୍ୟାୟରେ ଲେଖାଲେଖି କରୁଥିଲେ । ସେ ବହୁ ସଂଗଠନ ଓ ସଂସ୍କାରବାଦୀ ଅନୁଷ୍ଠାନ ସହିତ ଜଡ଼ିତ ଥିଲେ । ତାଙ୍କୁ ଜଣେ ଉତ୍ସାହୀ ସାହିତ୍ୟ ସେବୀ ଓ ସଂସ୍କାର ପ୍ରୟାସୀ ବ୍ୟକ୍ତି ହିସାବରେ ମୁଁ ନବୀନ ସମ୍ବାଦପତ୍ରର ଫେବୃୟାରୀ ୨୪ ସଂଖ୍ୟାରେ ଆବିଷ୍କାର କରେ । ସେତେବେଳେ ବ୍ରହ୍ମପୁରରୁ ମହୁରୀ ରାଜପୁତ୍ର କୃପାସିନ୍ଧୁ ପଟ୍ଟଦେବଙ୍କ ସଂପାଦନାରେ ନବୀନ ସମ୍ବାଦପତ୍ର ପ୍ରକାଶ ପାଉଥିଲା । ସେଥିରେ ପାରଳାଖେମୁଣ୍ଡି କଲେଜର ଅଧ୍ୟାପକ, ମେମ୍ବର, ବୋର୍ଡ ଅଫ୍ ଷ୍ଟଡିଜ୍ ଓ ଅଖିଳ ଉତ୍କଳ ରିଲିଫ୍ କମିଟି ହିସାବରେ ଗୋଟିଏ ଛୋଟିଆ ପତ୍ର ପ୍ରକାଶ କରିଥିଲେ । ଏହା ନିମ୍ନରେ ଉଦ୍ଧୃତ ହେଲା:

ଉଦୀୟମାନ କବି ମହାଦେବ ମହାପାତ୍ରଙ୍କ ରଚିତ 'ନଶ୍ୱରା' (ପାଣ୍ଡୁଲିପି) ପାଠ କରି ପ୍ରୀତିଲାଭ କଲି । ହିନ୍ଦୁ ବିଧବାର ମର୍ମନ୍ତୁଦ କାହାଣୀର ଗୋଟିଏ ପୂର୍ଣ୍ଣାଙ୍ଗ ଚିତ୍ର ଏଥିରେ ସନ୍ନିବେଶିତ ହୋଇଛି । ଆମ ସମାଜରେ ଅସହାୟ ବାଲ୍ୟ ବିଧବାମାନେ କିପରି ନାନା

ପ୍ରକାର ଦୁଃଖ ଓ ନିର୍ଯାତନା ଭୋଗ କରୁଛନ୍ତି; ଏହି ଅନୁଭୂତି ଯୁବକ ଲେଖକଙ୍କୁ ଅଭିଭୂତ କରିଛି । ତେଣୁ ସେ ଗୋଟିଏ ଦୁଃଖିତ ବାସ୍ତବ ସାମାଜିକ ଚିତ୍ର ଦେଇପାରିଛନ୍ତି । କବିଙ୍କର ଲେଖନୀରେ ପୁଷ୍ପବୃଷ୍ଟି ହେଉ, ଏହାହିଁ କାମନା । ଏଥିରୁ କାହ୍ନୁଚରଣଙ୍କର ଉଚ୍ଚକୋଟିର ସଂସ୍କାରକ ମନକୁ ଆବିଷ୍କାର କରାଯାଇପାରେ । ତାଙ୍କ ପରି ଉତ୍ସାହୀ ଗବେଷକ ଓଡ଼ିଶାରେ ଖୁବ୍ କମ ଦେଖାଯାନ୍ତି । କାହ୍ନୁବାବୁଙ୍କ ଜୀବନ ଚର୍ଚ୍ଚା ଓ ସାହିତ୍ୟ ସଂସ୍କୃତି ଚର୍ଚ୍ଚା କରିବସିଲେ ଏକ ବିରାଟ ଗ୍ରନ୍ଥ ହେବ । ତାହା ହେବା ମଧ୍ୟ ଉଚିତ । ତେଣୁ ତାଙ୍କ ମୃତ୍ୟୁର ଏକବର୍ଷ ପରେ ଏ ମୋର କ୍ଷୁଦ୍ର ରଚନାଟି ତାଙ୍କ ସ୍ମୃତିଚାରଣ ପାଇଁ ଉଦ୍ଦିଷ୍ଟ । ଆଜି ତାଙ୍କୁ ସ୍ମରଣ କଲାବେଳେ ଅତୀତର ବହୁ ଆଲୋଚନା ତାଙ୍କ ସହିତ ମୋର ସ୍ମୃତିପଥରେ ଆସୁଛି । ସେ ଥିଲେ ମୋ ପାଇଁ ପ୍ରେରଣାର ଏକ ତୁଙ୍ଗ ମାଇଲ ଖୁଣ୍ଟ ।

■■

# ପ୍ରାଜ୍ଞ ପୁରୁଷ

*- ଡଃ ବାବାଜୀଚରଣ ସେଠୀ*

ସର୍ବତ୍ରରମତେ ପ୍ରାଜ୍ଞଃ ସର୍ବତ୍ର ଚ ବିରାଜତେ
ନା ବିଭୀଷୟତେ କଶ୍ଚିଦ ଭୀଷିତୋ ନ ବିଭେତି ଚ ।

ଅର୍ଥାତ୍, ବିଦ୍ୱାନ ବ୍ୟକ୍ତି ସର୍ବତ୍ର ଆନନ୍ଦରେ ବିହାର କରନ୍ତି ଏବଂ ସବୁଠାରେ ନିଜ ଗୁଣରେ ଶୋଭା ପାଉଥାନ୍ତି । ସେ ଅକୁତୋଭୟ କୌଣସି ପ୍ରକାର ବିପଦ ପ୍ରତି ତାଙ୍କର ଭ୍ରୂକ୍ଷେପ ନଥାଏ । (ମହାଭାରତ ଶାନ୍ତି ପର୍ବ ୧୩୯/୮୭) ପ୍ରଫେସର ଡଃ କାହ୍ନୁଚରଣ ମିଶ୍ର ଥିଲେ ଏହି ଧରଣର ଜଣେ ପ୍ରାଜ୍ଞ ପୁରୁଷ ।

ଗୁରୁଦେବ ମିଶ୍ର ମହାଶୟଙ୍କ କଥା ଚିନ୍ତା କଲେ ଆଖି ଆଗରେ ଭାସିଉଠେ ତାଙ୍କର ହସ ହସ ମୁଖ । ଦେଖିଲା ମାତ୍ରେ ପଚାରି ବସିବେ, ବାବାଜି କେମିତି ଅଛ ? ତର ତର କରି କହୁଥିବେ ପାଟିରେ ବାଟୁଳି ବାଜୁନଥିବ । ଏତେ ଆତ୍ମୀୟତା ଭରା କୁଶଳ ଜିଜ୍ଞାସା, ଆପଣାର ପରି ମଣୁଥିବା ଆଦର୍ଶ ଗୁରୁ ମୋ ଜୀବନରେ ମୁଁ ଖୁବ୍ କମ୍ ଦେଖିଛି । ୧୯୫୯ ମସିହାର ଗୋଟିଏ ଅଙ୍ଗେଲିଭା ଅନୁଭୂତି ଜୀବନରେ ଅପାସୋରା ହୋଇ ରହିଯାଇଛି । ରେଭେନ୍ସା କଲେଜରେ ଓଡ଼ିଆ ଅନର୍ସରେ ଛାତ୍ର ଥିଲାବେଳେ ବସନ୍ତ ରୋଗରେ ପୀଡିତ ହୋଇ କଟକ ବଡ଼ ମେଡିକାଲରେ ଭର୍ତ୍ତି ହୋଇଥାଏ । ସେ କ୍ଲାସରେ ପଢ଼ାଉଥିଲାବେଳେ ଜାଣିବାକୁ ପାଇଲେ ମୋ ଅନୁପସ୍ଥିତିର କାରଣ । କଲେଜ କାମ ସାରି ସିଧା ଚାଲିଲେ କଟକ ମେଡିକାଲ । ବସନ୍ତ ୱାର୍ଡରେ ମୋତେ ଦେଖିଲେ । ବହୁତ ଦୁଃଖ କଲେ, ଆଶ୍ୱାସନା ଦେଇ କହିଲେ- ବାପା କିଛି ଚିନ୍ତା କରନା, ଭଲ ହୋଇଯିବୁ । ଏତିକି କହି ଚାଲିଗଲେ । ଠିକ୍ ୧୦/୧୫ ମିନିଟ୍ ପରେ ପ୍ରଫେସର ଡଃ ଶରଚନ୍ଦ୍ର ମିଶ୍ରଙ୍କୁ ଧରି ମୋ ପାଖରେ ପହଞ୍ଚିଲେ । ଅତି ତରତରରେ କହୁଥିବା ତାଙ୍କର କଥା ଏବେବି ମୋର ମନେ ପଡ଼ିଯାଏ । ଦେଖନ୍ତୁ ଶରତ ବାବୁ, ଏ ବାବାଜୀ, ମୋ ଛାତ୍ର, ତା ଭାର ଆପଣଙ୍କୁ ଲାଗିଲା । ମେଡିକାଲରେ ମାସଟିଏ ରହିଲି । ଡକ୍ଟର ଶରତ ଚନ୍ଦ୍ର ମିଶ୍ର ସବୁଦିନ ମୋତେ ଦେଖିବାକୁ ଆସୁଥିଲେ । ମୋ ହେପାଜତ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିଥିଲେ । ରୋଗମୁକ୍ତ ହେଲି । ମାସକ ପରେ କଲେଜ ଗଲି । ଦେଖି ଖୁସି ହୋଇଗଲେ, କହିଲେ, ତୁମେ ଜାଣିଛ ! ଶରତ ବାବୁ ମୋର ସଡୁ ହେବେ, ଖୁବ ଭଲ ଲୋକ । ତୁମେ ତ ଖୁବ୍ ଦୁର୍ବଳ ହୋଇଯାଇଛ, ଦେହ ଜଗିଚଳ, ପରସେଣ୍ଟେଜ ପାଇଁ ଚିନ୍ତା

କରନା । ପଢ଼ାପଢ଼ି କରୁଥାଅ ।

''କିଂ କିଂ ନ ସାଧୟତି କଳ୍ପଲତେବ ବିଦ୍ୟା'' ବିଦ୍ୟା କଳ୍ପଲତା ବାପା ।

ଦିନ ଗଡ଼ି ଚାଲିଲା । ମୁଁ ବିଶ୍ୱଭାରତୀରେ ଓଡ଼ିଆରେ ଏମ୍.ଏ. କରି ଅଧ୍ୟାପକ ହେଲି । ଦିନେ ପୁରୀରୁ ଆସିଲା ବେଳେ ସାରଙ୍କ ସହିତ ବସ୍‌ରେ ପାଖାପାଖି ବସିବାର ସୁଯୋଗ ମିଳିଗଲା । ଆଲୋଚନା ପ୍ରସଙ୍ଗରେ ମୁଁ କହିଲି ସାର ଦେବୀ ସୁଭଦ୍ରାଙ୍କୁ ବଳଦେବଙ୍କ ପତ୍ନୀ ଭବାନୀ ଭାବରେ ସମ୍ବଲପୁର ଡାଲଖାଇ ଗୀତରେ ଚିତ୍ରଣ କରାଯାଇଅଛି ଯଥା-

ଶ୍ରାବନ ମାସରେ ଗୁନିଚା ଯାତ,<br>
ରଥେ ବିଜେକଲେ ଜଗତର ନାଥ<br>
ଆଗେ ବଳଭଦ୍ର  ମଧେ ଭବାନୀ<br>
ପଛେ କୁନ୍ଦାଇଲେ ସାରଙ୍ଗପାନି କି ଡାଲଖାଇରେ

ସେ ସାଙ୍ଗେ ସାଙ୍ଗେ କହିଲେ ତୁମେ ମୋତେ  ଲେଖିକରି ଦେବତ ! ଜଗନ୍ନାଥ ପରମ୍ପରା ଓ ସଂସ୍କୃତି ପ୍ରତି ସାରଙ୍କର ଏକ ଅହେତୁକ ଆକର୍ଷଣ ଥିଲା । ଶ୍ରୀ ଜଗନ୍ନାଥଙ୍କ ଅପାର କରୁଣାରେ ବିଶ୍ୱାସ ରଖିଥିଲେ ମଧ୍ୟ ନିଜଠାରେ ଏବଂ ନିଜ ଲେଖନୀ ଉପରେ ତାଙ୍କର ବିଶ୍ୱାସ କମ୍ ନଥିଲା । ସାହିତ୍ୟ ରଚନା କ୍ଷେତ୍ରରେ ସେ ଆତ୍ମବିସ୍ମୃତ ସାଧକ ନଥିଲେ । ସଂଗୃହୀତ ତଥ୍ୟରାଜିର ବିଶ୍ଳେଷଣ ଓ ଯଥାଯଥ ଉପସ୍ଥାପନାରେ ତାଙ୍କର ମୌଳିକତା ରହିଥିଲା । ଆଧ୍ୟାତ୍ମିକ ଚିନ୍ତନରେ ଓ ନୈତିକ ଆଦର୍ଶରେ ଏ ଜାତି ଉଦ୍‌ବୁଦ୍ଧ ହେଉ, ସର୍ବେ ଭବନ୍ତୁ ସୁଖିନର ଉଦାତ୍ତ ମନ୍ତ୍ରରେ ଉତ୍କଳର ଗଗନ ପବନ ମୁଖରିତ ହେଉ ଏବଂ ଜଗନ୍ନାଥ ଦେଶର ହଜିଲା ଐତିହ୍ୟ ପୁନଃଜୀବିତ ହେଉ- ଏହାଥିଲା ତାଙ୍କର ସ୍ୱପ୍ନ ଓ ସଂକଳ୍ପ, ସେଥିପାଇଁ ତାଙ୍କ ସାହିତ୍ୟ ମୁକୁରରେ ମାନବ ସାମଜ ଓ ସାଂସ୍କୃତିକ ନବଜାଗରଣ ନିମିତ୍ତ ପ୍ରତିଶ୍ରୁତିବଦ୍ଧ- ପୁଣ୍ୟ-ପ୍ରାଣର ପ୍ରତିବିମ୍ବ ଆମେ ଦେଖିବାକୁ ପାଇଥାଉ । ସମୂହ କଲ୍ୟାଣ ପାଇଁ ନିଜକୁ ସମର୍ପିତ କରିଥିବା ଏ ମହାନ ସାଧକ ଓ ଆଦର୍ଶ ଗୁରୁଙ୍କ ସଶରୀରରେ ଆଉ ଦେଖି ପାରିବା ନାହିଁ ସିନା ତାଙ୍କ ଲେଖା ଭିତରେ ଜଗନ୍ନାଥ ସଂସ୍କୃତିର ଗବେଷକ ଓ ଦେଶ ଭକ୍ତିଙ୍କୁ ଖୋଜିଲେ ପାଇବା ନିଶ୍ଚୟ । ତାଙ୍କର ଅନେକ କାର୍ଯ୍ୟ ଅସମାପ୍ତ ରହିଯାଇଛି । ତାଙ୍କରି ଆଦର୍ଶରେ ଚଳି ସେହି ଅସମାପ୍ତ କାର୍ଯ୍ୟକୁ ପୂର୍ଣ୍ଣାଙ୍ଗ ରୂପ ଦେଇପାରିଲେ ଆମେ ତାଙ୍କର ଉପଯୁକ୍ତ ଦାୟାଦ ବୋଲି ଚିହ୍ନିତ କରିପାରିବା । ସେ ଅମରାତ୍ମା ନିକଟରେ ଆମର ପ୍ରାର୍ଥନା ହେଉ, ହେ ମହାନୁଭବ ! ଆପଣ ତ ବର୍ତ୍ତମାନ ଦେବ ସଭାରେ ଉପସ୍ଥିତ ଥିବେ,  ଆମ ପାଇଁ ଥରେ ଈଶ୍ୱରଙ୍କୁ ଜଣାନ୍ତୁ ସେ ଆମ୍ଭମାନଙ୍କୁ ସାହସ, ଶକ୍ତି ଓ ଧୈର୍ଯ୍ୟ ପ୍ରଦାନ କରନ୍ତୁ । ଆମେ ଉତ୍କଳ ଜନନୀର ମୁଖ ଉଜ୍ଜ୍ୱଳ କରିବାରେ ସମର୍ଥ ହେଉ । ଜୟ ଜଗନ୍ନାଥ ।

■■

# ଆମ ସାର- କାହ୍ନୁବାବୁ

*- ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି*

ଆମେ ଆଇ.ଏ. ଶ୍ରେଣୀରେ ପଢ଼ିଲାବେଳେ ଅଧାପକ କାହ୍ନୁଚରଣ ମିଶ୍ରଙ୍କ ଲିଖିତ ପ୍ରବନ୍ଧ ଆମର ଏମ୍.ଆଇ.ଏଲ ବହିରେ ପଢ଼ିଥିଲୁ । ପ୍ରବନ୍ଧଟିର ଶିରୋନାମା ଥିଲା 'ଛାତ୍ର ଜୀବନ' । ଛାତ୍ର ହେଲେ ତାର ଜୀବନ ଧାରା କିପରି ହେବା ଉଚିତ, ସେଇକଥା ପ୍ରାବନ୍ଧିକ ଏପରି ପ୍ରାଞ୍ଜଳ ଭାବରେ ବୁଝାଇଥିଲେ ଯେ ସେସବୁ ଛାତ୍ର ଭାବରେ ଆମେ ହୃଦୟଙ୍ଗମ କରି ଆମର  ବ୍ୟବହାରିକ ଜୀବନରେ ଲଗାଇବା କଥା । ମାତ୍ର ପାଠ୍ୟକ୍ରମଟିରେ ତାହା ପ୍ରତିବର୍ଷ ପ୍ରଶ୍ନୋତ୍ତର ବା ବିଶଦାର୍ଥ ନିମନ୍ତେ ଉଦ୍ଦିଷ୍ଟ ଥିବା ହେତୁ ତାକୁ ଆୟତ୍ତ କରି କିପରି ପରୀକ୍ଷା ବୈତରଣୀ ପାର ହେବୁ ସେହି ଉଦ୍ଦେଶ୍ୟରେ ଆମେ ବିଷୟଟିରେ ଗୁରୁତ୍ୱ ଦେଉଥିଲୁ ।

'ଛାତ୍ରାଣାଂ ଅଧ୍ୟୟନମ୍ ତପଃ' ଏବଂ 'ଛାଦୟତି ଗୁରୁଣାଂ ଦୋଷଗୁଣାନ୍ ଇତି ଛାତ୍ରଃ' ଆଦି ତହିଁରେ ଥିବା ବାକ୍ୟଗୁଡ଼ିକ ଏବେ ମଧ ଉତ୍ତର କାଳରେ ମନ ଭିତରେ ବସା ବାନ୍ଧି ଦେଲେ ହେଁ ପ୍ରଶ୍ନ ଡାକି ଉତ୍ତର ଦେଖିବା ପାଇଁ ସେ ଗୁରୁ କାହାଁନ୍ତି ? ଆଉ ସେ ଉତ୍ତରର ଆବଶ୍ୟକତା ନାହିଁ ଏ ଯୁଗରେ ବା ଆଉ ପାଠ୍ୟ ଖସଡ଼ାରେ ସେ ମୂଲ୍ୟବୋଧ ନାହିଁ । ଅଧାପକ କାହ୍ନୁଚରଣ ମିଶ୍ରଙ୍କ ନାମ ପୁଣି ଦେଖିଲି ବି.ଏ.ରେ ଓଡ଼ିଆ ଅନର୍ସ ନେଇ ପଢ଼ିବାବେଳେ । 'ସାହିତ୍ୟ ସମୀକ୍ଷା' ଆଉ 'ଆଲୋଚନାମାଳା' ନାମରେ ତାଙ୍କର ଦୁଇଟି ପୁସ୍ତକ ଥିଲା ଅନର୍ସ ଓ ଏମ୍.ଏ. ପଢୁଆ ଛାତ୍ରଙ୍କ ପାଇଁ ଏକାନ୍ତ ଉପଯୋଗୀ । 'ପାରଳାଖେମୁଣ୍ଡିରେ ସାହିତ୍ୟ ଚର୍ଚ୍ଚା' ପ୍ରବନ୍ଧଟି କାହ୍ନୁବାବୁଙ୍କର ଓଡ଼ିଆ ସାହିତ୍ୟକୁ ଥିଲା ଏକାନ୍ତ ନିଜସ୍ୱ ଦାନ । କାରଣ ପାରଳାରେ କବିକଳହଂସ ଗୋପାଳକୃଷ୍ଣ, କବିଚନ୍ଦ୍ର ଗୌରହରି ପରିଚ୍ଛା, ପଣ୍ଡିତ ଗୋପୀନାଥ ନନ୍ଦ, ମଞ୍ଜୁଶ୍ରୀ ସତ୍ୟନାରାୟଣ ପଣ୍ଡା, ଶ୍ୟାମସୁନ୍ଦର ରାଜଗୁରୁ ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ଅପନ୍ନା ପରିଚ୍ଛା, ସଂଗୀତଜ୍ଞ ଅପନ୍ନା ପାଣିଗ୍ରାହୀ ଆଦି ବିଦ୍ୱାନମଣ୍ଡଳୀ ମତ୍ତ ମାତଙ୍ଗ ପରାୟେ ରାଜ୍ୟରେ ବିରାଜିତ ଥିଲେ । ପାରଳା ରାଜା ଗୌରଚନ୍ଦ୍ର ଗଜପତିଙ୍କ ସମୟରେ ପାରଳାକୁ ରେଳପଥ ଆସିଥିବାରୁ ବାହ୍ୟଜଗତ ସହିତ ପାରଳାକୁ ଗମନାଗମନର ସୁବିଧା ହୋଇଥିଲା । ପାରଳାର ଦ୍ୱିତୀୟ ରାଜକୁମାର ପଦ୍ମନାଭ ରଙ୍ଗାଳୟ ସ୍ଥାପନ କରି ସେଥିରେ ଓଡ଼ିଆ ତେଲୁଗୁ, ଇଂରାଜୀ ଓ ସଂସ୍କୃତ ଏପରି ଚାରିଟି ଭାଷାରେ ନାଟକ ଅଭିନୀତ

କରାଉଥିଲେ । ପାରଳା ଅବସ୍ଥାନ କାଳରେ ଏସବୁ ତଥ୍ୟ ସଂଗ୍ରହ କରି ପାରଳାର ଉନ୍ନତ ସଂଗୀତ ଚର୍ଚ୍ଚା ସମ୍ପର୍କରେ ଆଲୋକପାତ କରିବା ଯୋଗୁ ସମଗ୍ର ଓଡ଼ିଶାରେ ପାରଳାଖେମୁଣ୍ଡି ଯେ ଏ କ୍ଷେତ୍ରରେ ଆଗୁଆ ପଦକ୍ଷେପ ନେଇଥିଲା- ଏହା ସମସ୍ତଙ୍କ ପକ୍ଷେ ଚର୍ଚ୍ଚାର ବିଷୟ ହୋଇଥିଲା ।

ପାରଳାଖେମୁଣ୍ଡିରେ ସାହିତ୍ୟ ଓ ସଂଗୀତ ଚର୍ଚ୍ଚା ସମ୍ପର୍କରେ ବ୍ୟାସକବି ଫକୀରମୋହନ ଆଭାସ ଦେଇଥିଲେ ।

''ଓଡ଼ିଆ ଦକ୍ଷିଣ ସୀମା ପାରଳାଖେମଡି<br>
ଧନେମାନେ କିଏ ଆଉ ଅଛି ତାଙ୍କୁ ବଢ଼ି ?<br>
କବିତ୍ୱ ଗୌରବ ସ୍ଥାନ ନଦେଖେ ସେପରି<br>
ଗାଉଥିଲେ ବସି ଗୀତ ଯହିଁ ଗୌରହରି ।<br>
ଧନ୍ୟ ହେ ସେକେଣ୍ଡ ପ୍ରିନ୍ସ ଧନ୍ୟ ତୁମ୍ଭ ନାମ<br>
ବଂଶ ଅନୁରୂପେ ଏକା କରିଅଛ କାମ ।''

୧୯୪୭ରେ ପାରଳାଖେମୁଣ୍ଡିର ମହାରାଜାଙ୍କ କଲେଜକୁ ଓଡ଼ିଶା ସରକାର ହାତକୁ ନେବା ପରେ ସରକାରୀ ଅଧ୍ୟାପକ ଭାବେ କାହ୍ନୁବାବୁ ସେଠାରେ ନିଯୁକ୍ତି ପାଇଥିଲେ । ଅଧ୍ୟକ୍ଷ ଭାବେ ଯାଇଥିଲେ ପ୍ରସିଦ୍ଧ ରସାୟନବିଦ୍ ଅଧ୍ୟାପକ ଗୁରୁଚରଣ ମହାନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଭୂତପୂର୍ବ କୁଳପତି ଡକ୍ଟର ହରିହର ପଟ୍ଟନାୟକ ମଧ୍ୟ ସେମାନଙ୍କ ସହକର୍ମୀ ଭାବେ ଉଦ୍ଭିଦ ବିଜ୍ଞାନ ବିଭାଗରେ ଅଧ୍ୟାପକ ଭାବେ ଯୋଗ ଦେଇଥିଲେ । ସେ କାଳର ସ୍ମୃତିଚାରଣ କରି କାହ୍ନୁବାବୁ କହନ୍ତି, ପାରଳାଖେମୁଣ୍ଡି କଲେଜରେ ଅଧ୍ୟକ୍ଷ ଗୁରୁଚରଣ ବାବୁ କହନ୍ତି ଆମ ତିନ୍ହିଙ୍କି କେହି ପାରିବେନି । ସତରେ ଏକା ସେମାନେ ତିନ୍ହିଙ୍କି ତିନ୍ହିଏ ଥିଲେ କରିତ୍କର୍ମା । ଗୁରୁଚରଣବାବୁ ଆର୍ତ୍ତବାବୁଙ୍କ ସହକର୍ମୀ ଭାବେ ପ୍ରାଚୀ ସମିତିର ପ୍ରତିଷ୍ଠାତା ସଭ୍ୟ ଥିଲେ । ଭଦ୍ରଖ କଲେଜର ପ୍ରଥମ ଅଧ୍ୟକ୍ଷ ଭାବେ ସେ ଖ୍ୟାତି ଲାଭ କରିଥିଲେ । କାହ୍ନୁବାବୁ ପାରଳା, ପୁରୀ, ରେଭେନ୍ସା ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗ ପ୍ରଫେସର ଭାବେ କର୍ମ କରି ଅବସର ଗ୍ରହଣ କରିଥିଲେ ଓ ଅବସର ପରେ ଆପଣା ଗୃହରେ ଏକ ଗବେଷଣା କେନ୍ଦ୍ର ସ୍ଥାପନ କରି ପ୍ରତ୍ୟେକ ବର୍ଷ ବିଦ୍ୱାନମାନଙ୍କର ଏକ ସଭା କରାଉଥିଲେ ଏବଂ ପାଣ୍ଡିତ୍ୟପୂର୍ଣ୍ଣ ଲେଖା ସମ୍ବଳିତ ଗୋଟିଏ ଗୋଟିଏ ପୁସ୍ତକ ପ୍ରକାଶ କରୁଥିଲେ । ପ୍ରତିଟି ପୁସ୍ତକ ସାହିତ୍ୟ, ଧର୍ମ, ଦର୍ଶନ ଆଦି ବିଷୟରେ ପୂର୍ଣ୍ଣ ଥିଲା ।

ଖ୍ରୀଷ୍ଟ ମହାବିଦ୍ୟାଳୟରୁ ବି.ଏ. ଅନର୍ସ ପାସ ପରେ ରେଭେନ୍ସା ମହାବିଦ୍ୟାଳୟରେ ୧୯୫୭ ଜୁଲାଇ ମାସରେ ଓଡ଼ିଆରେ ଏମ୍.ଏ. ପଢ଼ିବାକୁ ନାଁ ଲେଖାଇଲି । ସେତେବେଳେ ବିଭାଗୀୟ ମୁଖ୍ୟ ଥିଲେ ବିଶିଷ୍ଟ ଭାଷାବିତ ପ୍ରଫେସର ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ । ଅନ୍ୟ ଅଧ୍ୟାପକମାନେ ଥିଲେ କାହ୍ନୁବାବୁ, ଜାନକୀବଲ୍ଲଭ ମହାନ୍ତି (କ) ଓ (ଖ)। 'କ' ଜାନକୀବାବୁ ଗୋରା ଓ 'ଖ' କଳା ନାମରେ ଛାତ୍ରମାନଙ୍କ ମେଳରେ ନାମିତ ଥିଲେ । ଏମାନଙ୍କ ବ୍ୟତୀତ ଅଧ୍ୟାପକମାନେ ଥିଲେ ଗୌରୀକୁମାର ବ୍ରହ୍ମା, ଜୟକୃଷ୍ଣ ମିଶ୍ର, ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର, ସଦାନନ୍ଦ ରାମାନୁଜ ଦାଶ, ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ଓ ପଣ୍ଡିତ ନାରାୟଣ ତ୍ରିପାଠୀ । ସେତେବେଳେ ଆମେ ସ୍ନାତକୋତ୍ତର ଶ୍ରେଣୀରେ ପିଲା ଥାଉ ଆଠଜଣ ଆରତି କର ଓ ଶୋଭା ଦାସ ନାଁ ଲେଖାଇଥିଲେ ମାତ୍ର ଅଳ୍ପ ଦିନ ପରେ ଛାଡିଦେଲେ । ଡକ୍ଟର ତ୍ରିପାଠୀଙ୍କ ଅଧ୍ୟାପନା ଶୈଳୀ ସର୍ବଦା ଗବେଷଣାତ୍ମକ । ସେ ଆମକୁ ପାଲି, ପ୍ରାକୃତ, ଶିଳାଲେଖ ଓ ପ୍ରାଚୀନ ସାହିତ୍ୟର ପ୍ରାଚୀ ସମିତି ପ୍ରକାଶିତ ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ ପଢ଼ାଉଥିଲେ । ଯେ କୌଣସି ଗୋଟିଏ ଶବ୍ଦ ବିଷୟରେ ଆଲୋଚନା ଆରମ୍ଭ ହେଲେ ତାର ମୂଳ କେଉଁଠି ଓ ବିଭିନ୍ନ ଅଞ୍ଚଳରେ ସେ ଶବ୍ଦଟିର ରୂପ କଣ ଆଲୋଚନା କରୁଥିବାରୁ ଆମ୍ଭମାନଙ୍କ ଦୃଷ୍ଟିଶକ୍ତିକୁ ସେହିପରି ଆଡକୁ ପ୍ରସାରିତ କରୁଥିଲେ । ଅଧ୍ୟାପକ ଜୟକୃଷ୍ଣ ମିଶ୍ର- ରସକଲ୍ଲୋଳ ଅବା ଲାବଣ୍ୟବତୀ ଅଧ୍ୟାପନାରେ ଏତେ ଦୂର ତନ୍ମୟ ହୁଅନ୍ତି ଯେ କେତେବେଳେ ପିରିଅଡ୍ ସରେ ଜଣାପଡ଼େ ନାହିଁ । ଅନ୍ୟ ପିରିଅଡ ନେବାକୁ ଆସିଥିବା ଅଧ୍ୟାପକ ସେମିନାର କବାଟରେ ଠକ୍ ଠକ୍ କରି ଆବାଜ ନ କଲାଯାଏ ଜୟିବାବୁଙ୍କ ଏକ୍ସପ୍ରେସ୍ ଛୁଟଁଥାଏ । କାହ୍ନୁବାବୁଙ୍କ କ୍ଲାସ ମପାଚୁପା । ଘଣ୍ଟା ବାଜିବା ପରେ ପହଞ୍ଚନ୍ତି ଓ ଘଣ୍ଟା ବାଜିବା ମାତ୍ରେ କ୍ଲାସରୁ ବାହାରନ୍ତି । ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି' ପଢ଼ାଇଲାବେଳେ ରୂପ ଗୋସ୍ୱାମୀଙ୍କ କୃତ 'ବିଦଗ୍ଧ ମାଧବ'ର ସମାନ୍ତରାଳ ଶ୍ଳୋକମାନ ଲାଳିତ୍ୟ କଣ୍ଠରେ ଆବୃତ୍ତି କରନ୍ତି । ସେହିପରି ବୈଷ୍ଣବ ଧର୍ମ ସଂପର୍କିତ ବିଶେଷ ପତ୍ର ଅଧ୍ୟାପନା କାଳରେ ଚୈତନ୍ୟ ଚରିତାମୃତ ଠାରୁ ଆରମ୍ଭ କରି ପଞ୍ଚସଖାଙ୍କ ପୁସ୍ତକମାନଙ୍କ ସମ୍ପର୍କରେ ଆଲୋଚନା ଚାଲେ ଅବାରିତ ଗତିରେ । ସେ ପୁରୀର ଦୁଇଜଣ ପଣ୍ଡିତ ଆନନ୍ଦ ଚନ୍ଦ୍ର ମିଶ୍ର ଓ ବାସୁଦେବ ମିଶ୍ରଙ୍କ ନାମ ଉଲ୍ଲେଖ କରୁଥିଲେ ।

ଏମ୍.ଏ. ପାଶ ପରେ ମୁଁ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଏକ ବର୍ଷ ଅଧ୍ୟାପକ ହୋଇ ପବ୍ଲିକ ସର୍ଭିସ କମିଶନ ପରୀକ୍ଷା ପରେ ୧୯୬୦ ଜୁଲାଇରେ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗ ଦେଲି ଏବଂ ମୋର ଅଧ୍ୟାପକମାନଙ୍କ ସହକର୍ମୀ ହୋଇଗଲି ।

କାହ୍ନୁବାବୁ ଶ୍ରୀ ଜଗନ୍ନାଥଙ୍କ ସମ୍ବନ୍ଧରେ ଗବେଷଣା ଆରମ୍ଭ କରିଥିଲେ । ସେଥିପାଇଁ

ସେ କଲିକତା ବିଶ୍ୱବିଦ୍ୟାଳୟରେ ନାମ ପଞ୍ଜିକୃତ କରିଥିଲେ । ଡକ୍ଟର ଜ୍ୟୋତିରିନ୍ଦ୍ରନାଥ ବାନାର୍ଜୀ ତାଙ୍କ ତତ୍ତ୍ୱାବଧାରକ ଥିଲେ । ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ 'ନୃସିଂହଙ୍କ ସମ୍ପର୍କରେ ଗବେଷଣା ପାଇଁ ନାମ ରେଜିଷ୍ଟ୍ରି କରିଥିଲି । ଏନ୍.ସି.ସି. ଟ୍ରେନିଂ ଅବସରରେ ମୋତେ ନଅ ମାସ ପୁରନ୍ଦର ଦୁର୍ଗ ଓ ପରେ ପୁନା ଠାରେ ରହିବାକୁ ହୋଇଥିଲା । ଡେକାନ କଲେଜ ପୋଷ୍ଟ ଗ୍ରାଜୁଏଟ ଆଣ୍ଡ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌ରେ ମୋତେ ପଢ଼ିବା ପାଇଁ ସୁଯୋଗ ମିଳିଲା ଓ ସେଠାରେ ସାରା ଭାରତରୁ ପ୍ରକାଶିତ ଜର୍ଣ୍ଣାଲ ଓ ବହୁ ପୁରାତନ ପୁସ୍ତକ ପାଠ ପାଇଁ ସୁବିଧା ହୋଇଥିଲା । ସେଠାରୁ ବହୁତ କିଛି ତଥ୍ୟ ସଂଗ୍ରହ କରି ଓଡ଼ିଶା ଫେରିଲି । ସେତେବେଳେ ଭୁବନେଶ୍ୱର ବିଜେବି କଲେଜରେ ଅଧାପକ ହେଲି । ରାଜ୍ୟ ସଂଗ୍ରହାଳୟରେ ପଦ୍ମଶ୍ରୀ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଅଭିଲେଖବିତ୍ ଥାଆନ୍ତି । ମୁଁ ସେଠାକୁ ପ୍ରାୟତଃ ଯାଇଥାଏ ଓ କାହ୍ନୁ ବାବୁଙ୍କ ସହିତ ବରାବର ସାକ୍ଷାତ ଘଟେ । ଓଡ଼ିଶାର ପ୍ରାଚୀନ ଶିଳାଲେଖରୁ ବହୁ ତଥ୍ୟ ସଂଗ୍ରହ କରି ରାଜଗୁରୁ ମହାଶୟ କାହ୍ନୁ ବାବୁଙ୍କୁ ଗବେଷଣାରେ ସହାୟତା କରୁଥିଲେ । ପଦ୍ମଶ୍ରୀ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ସହ କାହ୍ନୁ ବାବୁଙ୍କର ଖୁବ୍ ଭଲ ସମ୍ପର୍କ ଥିଲା । ସେ ମଧ ପ୍ରତିମା ତତ୍ତ୍ୱ ଓ ମୃଣ୍ମୟ ପାତ୍ର ବିଜ୍ଞାନରେ ପାରଦର୍ଶୀ ଥିଲେ । ଓଡ଼ିଶାର ବିଶିଷ୍ଟ ପ୍ରତିଭାମାନଙ୍କ ସହିତ ଉତ୍ତମ ସମ୍ପର୍କ ରଖିଥିବାରୁ ସେମାନଙ୍କ ଠାରୁ ବିଭିନ୍ନ କ୍ଷେତ୍ରରେ ସହଯୋଗ ପାଇ ସେ କାଳରେ ଗୋଟିଏ ଉତ୍ତମ ନିବନ୍ଧ ପ୍ରସ୍ତୁତ କରି କଲିକତା ବିଶ୍ୱବିଦ୍ୟାଳୟରୁ ଡି.ଫିଲ ଡିଗ୍ରୀ ଲାଭ କଲେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ମୋତେ ମଧ ସେହି ସମୟରେ ପିଏଚ୍‌ଡି ଉପାଧି ମିଳିଲା । ସେ ସମୟରେ ଓଡ଼ିଶାରେ ପିଏଚ୍‌ଡି ଡିଗ୍ରୀଧାରୀଙ୍କର ସଂଖ୍ୟା ଖୁବ୍ କମ୍ ଥିଲା । ହାତରେ ଗଣି ହେବା ପରି । କାହ୍ନୁ ବାବୁଙ୍କର ସେହି ପୁସ୍ତକଟି ଇଂରାଜୀରେ ଲିଖିତ ଥିଲା ଓ ବହୁ ସୁଧୀଜନ ତାଙ୍କର ଉଚ୍ଚ ପ୍ରଶଂସା କରିଥିଲେ । ସେ ବିଭିନ୍ନ ସ୍ଥାନକୁ ବକ୍ତୃତା ଦେବାକୁ ଆହୁତ ହୋଇଯାଉଥିଲେ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସେ ପ୍ରଫେସର ଭାବେ ଯୋଗଦେଲେ । ସେଠାରୁ ଅବସର ନେବା ପରେ ଆମ୍ଭେମାନେ ତାଙ୍କୁ କଟକ ଶ୍ରୀ ରାମଚନ୍ଦ୍ର ଭବନରେ ସମ୍ବର୍ଦ୍ଧନା କରିଥିଲୁ । ତାଙ୍କ ସଙ୍ଗେ ଆମ୍ଭମାନଙ୍କର ଗ୍ରୁପ୍ ଫଟୋ ଉଠାହେଲା ଏବଂ ସେଠାରେ ଆମ୍ଭମାନଙ୍କୁ ଆଶୀର୍ବାଦ ପ୍ରଦାନ କରିଥିଲେ ।

ମଝିରେ ମଝିରେ ତାଙ୍କ ସଙ୍ଗେ ଭେଟ ହୁଏ । ସେ ଗବେଷଣା କାର୍ଯ୍ୟରେ ଜୀବନ ଉତ୍ସର୍ଗ କରି ଦେଇଥିଲେ । ପ୍ରତ୍ୟେକ ବର୍ଷ ଗୋଟିଏ ଗୋଟିଏ ବିଷୟରେ ଗବେଷଣା ପୁସ୍ତକ ପ୍ରକାଶ କରୁଥିଲେ । ଆମ ରାଜ୍ୟରେ ଗୋଟିଏ ଗବେଷଣାର ବାତାବରଣ ସୃଷ୍ଟି କରିବା ପାଇଁ ସେ ଯଥାଶକ୍ତି ଉଦ୍ୟମ କରିଥିଲେ ।

## ୭୩

ଗତ ୨୦୦୧ ମସିହା ସେପ୍ଟେମ୍ବର ୧୮ ତାରିଖରେ ତାଙ୍କ ସହିତ ମୋର ଶେଷ ସାକ୍ଷାତ ସ୍ମରଣୀୟ ହୋଇ ରହିଛି । ଭୁବନେଶ୍ୱରରୁ ପ୍ରକାଶିତ ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ ସୁଧନ୍ୟା ପତ୍ରିକାର ମୁଖ୍ୟ ଉପଦେଷ୍ଟା ଭାବରେ ସୂଚନା ଭବନରେ ଅନୁଷ୍ଠିତ ସଭାରେ ମୁଁ ସଭାପତିତ୍ୱ କରୁଥାଏ । କାହ୍ନୁବାବୁଙ୍କ କନ୍ୟା ସୀମା ମିଶ୍ର ସେହି ସଭାରେ ସମ୍ବର୍ଦ୍ଧିତ ହେଉଥିବାରୁ ସେ ମଧ୍ୟ ସେହି ସଭାରେ ଉପସ୍ଥିତ ଥିଲେ । ମୋ ସାର୍‌ଙ୍କୁ ସଭା କକ୍ଷରେ ବସିଥିବା ଦେଖି ମୁଁ ତତ୍‌କ୍ଷଣାତ ତାଙ୍କୁ ଡାକି ଆଣି ସଭା ମଞ୍ଚରେ ବସାଇ ସମ୍ବର୍ଦ୍ଧିତ ପ୍ରତିଭାମାନଙ୍କୁ ଓ ସୁଧନ୍ୟାର କର୍ମକର୍ତ୍ତାଙ୍କୁ ଆଶିର୍ବାଦ ଦେବା ପାଇଁ ଅନୁରୋଧ କରିଥିଲି । ସେ ସୁଧନ୍ୟାର ସମ୍ବର୍ଦ୍ଧନା ସଭାରେ ତାହାଙ୍କର ସମ୍ବର୍ଦ୍ଧନା ହେବା ଦେଖି ଅଭିଭୂତ ହୋଇଗଲେ ଏବଂ ଉତ୍ସବର ଶୁଭକାମନା ସହ ଉଦ୍ୟୋକ୍ତାମାନଙ୍କର ଭୂୟସୀ ପ୍ରଶଂସା କରିଥିଲେ । ନିଜେ ଉତ୍ସାହୀ ଥିଲେ ଓ ଉତ୍ସାହ ଦେଇ ଅନ୍ୟମାନଙ୍କୁ ଉତ୍ସାହିତ କରିବା ଭଳି ତାଙ୍କ ପରି ବ୍ୟକ୍ତି ଆଜି ବିରଳ ।

ନିର୍ମଳ କୁଟୀର, କଟକ-୯

■■

# ଭାଇନାଙ୍କ ସ୍ମରଣେ

**- ଗୌରାଙ୍ଗ ଚନ୍ଦ୍ର ମିଶ୍ର**

ସ୍ୱର୍ଗତ ଡକ୍ଟର କାହ୍ନୁଚରଣ ମିଶ୍ର ମୋର ଦଦେଇ ପୁଅ ଭାଇନା । ସେ ୧୯୨୨ ମସିହାରେ କେନ୍ଦ୍ରାପଡ଼ା ଜିଲ୍ଲା ପଟ୍ଟାମୁଣ୍ଡାଇ ଥାନା ଅନ୍ତର୍ଗତ ବକ୍ତାରପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ମେଧାବୀ ଛାତ୍ର ଥିଲେ ଓ ଛାତ୍ରାବସ୍ଥାରେ ବହୁ ସୁନାମ ଅର୍ଜନ କରିଥିଲେ । ଛାତ୍ରାବସ୍ଥାରେ ସେତେବେଳେ ଇଂରାଜୀ ଶାସନ ବିରୁଦ୍ଧରେ ଲଢ଼ି କିଛି ଦିନ ଜେଲ ଦଣ୍ଡ ଭୋଗିଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଏମ୍.ଏ. ରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣ ପଦକ ଲାଭ କରିଥିଲେ । କଲିକତା ଠାରେ ନୈଶ ବିଦ୍ୟାଳୟ ପ୍ରତିଷ୍ଠା କରି ଓଡ଼ିଆମାନଙ୍କୁ ଶିକ୍ଷାଦାନ କରୁଥିଲେ । ପରବର୍ତ୍ତୀ ସମୟରେ ପଟ୍ଟାମୁଣ୍ଡାଇ ଏମ୍.ଏନ. ହାଇସ୍କୁଲରେ କିଛି ସମୟ ପାଇଁ ପ୍ରଧାନ ଶିକ୍ଷକ ଥିଲେ । ତାପରେ ସରକାରୀ କଲେଜରେ ଅଧ୍ୟାପକ ଚାକିରୀ ଆରମ୍ଭ କରି ଶେଷରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଭାବେ ଅବସର ଗ୍ରହଣ କରି ଭୁବନେଶ୍ୱରସ୍ଥ ବିବେକାନନ୍ଦ ମାର୍ଗ ଠାରେ ନିଜସ୍ୱ ଗୃହରେ ଅବସ୍ଥାନ କରି ଜଗନ୍ନାଥ ଧର୍ମ ସଂସ୍କୃତି ସହିତ ଓଡ଼ିଶାର ବିଭିନ୍ନ ପ୍ରସଙ୍ଗ ଉପରେ ଗବେଷଣା କାର୍ଯ୍ୟରେ ସମୟ କଟାଉଥିଲେ । ଗବେଷଣା କାର୍ଯ୍ୟ ସହିତ ବନ୍ୟା ଓ ବାତ୍ୟା ସର୍ମୟରେ ରିଲିଫ୍ ବଣ୍ଟନ କରି ସୁନାମ ଅର୍ଜନ କରିଥିଲେ ଗତ ୧୯୯୯ ଅକ୍ଟୋବର ମହାବାତ୍ୟାରେ ଆମ ଗାଁ ବକ୍ତାରପୁରକୁ ଯାଇ ନିଜ ସମ୍ବଳରୁ ପ୍ରାୟ ପାଞ୍ଚହଜାର ଟଙ୍କାର ଲୁଗାପଟା, ଚାଉଳ, ଚୁଡ଼ା ଇତ୍ୟାଦି ବଣ୍ଟନ କରିଥିଲେ । ସେ ଜଣେ ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ, ସମାଲୋଚକ, ଛାତ୍ର ବତ୍ସଳ, ପରୋପକାରୀ ଏବଂ ସ୍ନେହୀ ବ୍ୟକ୍ତି ଥିଲେ । ତାଙ୍କର ଲିଖିତ **"Cult of Jagannath"** ଗବେଷଣା ମୂଳକ ଗ୍ରନ୍ଥ ମହାପ୍ରଭୁ ଜଗନ୍ନାଥଙ୍କ ଉପରେ ବହୁ ଗବେଷକମାନଙ୍କୁ ସାହାଯ୍ୟ କରିପାରିଛି । ଅବସର ପରେ **Institute of Orissan culture** ନାମକ ଏକ ଗବେଷଣା ସଂସ୍ଥା ପ୍ରତିଷ୍ଠା କରି ବହୁ ଜାତୀୟ ସ୍ତରର ସେମିନାର, ଆଲୋଚନାଚକ୍ର ଆୟୋଜନ କରିଛନ୍ତି । ଏହି ଆଲୋଚନାଚକ୍ରରେ ରାଜ୍ୟ ବାହାରୁ ଓ ଭିତରୁ ବହୁ ବିଦ୍ୱାନ, ଗବେଷକ ଯୋଗ ଦେଇ ଓଡ଼ିଶା ତଥା ବିଭିନ୍ନ ଭାଷା, ସଂସ୍କୃତି, ଧର୍ମ ଉପରେ ସାରଗର୍ଭକ ତଥ୍ୟ ଉପସ୍ଥାପନ କରିଛନ୍ତି । ଏହି ଅନୁଷ୍ଠାନ ଦ୍ୱାରା ବହୁ ଉପାଦେୟ ଗବେଷଣାତ୍ମକ ପୁସ୍ତକ ପ୍ରକାଶିତ ହୋଇଛି । ଅତିଥି ଗବେଷକ ଓ ବିଦ୍ୱାନମାନେ ଭାଇନାଙ୍କର

ସେମିନାର ଆୟୋଜନ ପ୍ରଚେଷ୍ଟାକୁ ଭୁରି ଭୁରି ପ୍ରଶଂସା କରିଛନ୍ତି । ତାଙ୍କର ଅନୁଷ୍ଠାନକୁ ରାଜ୍ୟ ସରକାରଙ୍କ ସଂସ୍କୃତ ବିଭାଗ ଅତୀତରେ ଆର୍ଥିକ ସାହାଯ୍ୟ ଦେଇଛନ୍ତି । ତାଙ୍କର ସାହିତ୍ୟ କୃତି ଯୋଗୁ ଓଡ଼ିଆ ସାହିତ୍ୟ ଏକାଡେମୀ, ବହୁ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ଭାଇନାଙ୍କୁ ସମ୍ମାନିତ କରିଛନ୍ତି ।

ଭାଇନା ସମସ୍ତଙ୍କୁ ସ୍ନେହ ଏବଂ ଆଦର କରନ୍ତି । ସେ ନିଜ ଭାଇମାନଙ୍କୁ ଯେପରି ଦେଖନ୍ତି, ଆମମାନଙ୍କୁ ମଧ୍ୟ ସେପରି ଦେଖୁଥିଲେ । ଆମର ଦଦେଇ ବିଶିଷ୍ଟ ପଣ୍ଡିତ ସ୍ୱର୍ଗତ ବଳରାମ ମିଶ୍ର ମଧ୍ୟ ପୁଅ ଓ ପୁତୁରା ମଧ୍ୟରେ କୌଣସି ଭେଦଭାବ ରଖୁନଥିଲେ । ନିଜ ପୁଅମାନଙ୍କୁ ଯେମିତି ଦେଖୁଥିଲେ, ଆମ୍ଭମାନଙ୍କୁ (ପୁତୁରା) ସେମିତି ଦେଖୁଥିଲେ । ଭାଇନା ସମସ୍ତଙ୍କୁ ସାହାଯ୍ୟ କରନ୍ତି । ମୋର ବିଭାଘର ପାଇଁ ଭାଇନା ଓ ନୂଆବୋଉ ବହୁ ସହଯୋଗ କରିଛନ୍ତି । ମୋର ପୁଅ ବ୍ରତଘର ଦିନ ଉଭୟ ଉପସ୍ଥିତ ରହି ମୋତେ ବହୁ ସହାୟତା କରିଥିଲେ । ଭାଇନାଙ୍କର ସର୍ବଦା ହସହସ ମୁହଁ ଭାଇନାଙ୍କ ଘରକୁ ଗଲେ ସମସ୍ତଙ୍କର ଭଲ ମନ୍ଦ କଥା ପଚାରି ବୁଝିବେ । ନୂଆବୋଉ ଯେତେବେଳେ ପହଞ୍ଚିଲେ, ସଂଗେ ସଂଗେ ମିଠା ହେଉ, ହାତ ତିଆରି ପିଠା ହେଉ କିମ୍ବା ଫଳ ହେଉ, ନିଶ୍ଚୟ ପ୍ଲେଟରେ ଆଣି ଖାଇବାକୁ ଦିଅନ୍ତି । ମୋର ଯଦି କେବେ ୧୫/୨୦ଦିନ ଭାଇନାଙ୍କ ଘରକୁ ଯିବାରେ ଡେରି ହୁଏ, ସେ ଫୋନରେ ଡକାନ୍ତି । ହସଖୁସିରେ ଭାଇନାଙ୍କ ଦିନଗୁଡ଼ିକ ଖୁବ୍ ଆନନ୍ଦରେ ଗଡ଼ିଚାଲେ । ପ୍ରତ୍ୟେକ ଦିନ ଭାଇନା ଭୋରୁ ଉଠି ପ୍ରାତଃ ଭ୍ରମଣ କରୁଥିଲେ । ଭାଇନାଙ୍କ ଚାଲିବାର ବେଗ ଖୁବ୍ ବେଶୀ । ଆମେମାନେ ଭାଇନାଙ୍କ ସାଙ୍ଗରେ ଚାଲି ପାରୁନଥିଲୁ ମୋର ବହୁ ସାଙ୍ଗ, ସହକର୍ମୀ ଏବଂ ଉପରିସ୍ଥ ଅଫିସରମାନେ ମଧ୍ୟ ମୋତେ କୁହନ୍ତି ଯେ ତୁମ ଭାଇନା ଯୁବକ ପରି ଚାଲବୁଲ କରନ୍ତି ।

୨୦୦୧ ମସିହା ସେପ୍ଟେମ୍ବର ୨୭ ତାରିଖ ବେଳକୁ ଭାଇନାଙ୍କ ଘରକୁ ଯାଇଥିଲି । ଭାଇନା କହିଲେ ଯେ ତାଙ୍କର ଗୋଡ ଓ ହାତ ଗଣ୍ଠି ଫୁଲୁଛି । ଆମେ ଭାବିଲୁ ଯେ ବହୁତ ବୟସ ଯୋଗୁ ଏପରି ହେଉଛି । ମୁଁ ଏକ ଆୟୁର୍ବେଦ ତେଲ ମାଲିସ କରିବା ପାଇଁ ଦେଇଥିଲି । ଭାଇନାଙ୍କର ଆୟୁର୍ବେଦ ଓ ହୋମିଓପ୍ୟାଥିକ ଚିକିତ୍ସାରେ ଖୁବ୍ ବିଶ୍ୱାସ ଥିଲା । ଅକ୍ଟୋବର ୨/୩ ତାରିଖ ବେଳକୁ ଫୋନରେ ବୁଝିଲି ଯେ ଭାଇନା କଳିଙ୍ଗ ହସ୍ପିଟାଲରେ ଭର୍ତ୍ତି ହୋଇଛନ୍ତି । ସେ ସେଷ୍ଟିସେମିଆ ରୋଗରେ ପିଡୀତ ଥିଲେ । ମୁଁ ସେଠାକୁ ଗଲି ଭାଇନା ସମସ୍ତଙ୍କୁ ଚିହ୍ନି ପାରୁଥିଲେ । ପ୍ରାୟ ୨ ମାସ କଳିଙ୍ଗ ହସ୍ପିଟାଲରେ ଚିକିତ୍ସିତ ହେଲେ । ମୁଁ, ଉମା ଭାଇନା ଏବଂ ପୁତୁରାମାନେ (ଭାଇନାଙ୍କ ତିନିପୁଅ) ପାଳିକରି ଭାଇନାଙ୍କ ରାତ୍ରିରେ ଜଗିରହୁ ଦିନବେଳା ଝିଅ, ଜ୍ୱାଇଁ ଏବଂ ବୋହୂମାନେ ଏବଂ ଭାଇନାଙ୍କ ଶାଳକମାନେ ମଧ୍ୟ ଭାଇନାଙ୍କ

ସେବା ଶୁଶ୍ରୂଷା କରୁଥିଲେ । ସମସ୍ତଙ୍କ ଆଶା ଓ ବିଶ୍ୱାସ ଥିଲା ଯେ ଭାଇନା ଭଲ ହୋଇ ପୁଣି ଘରକୁ ଫେରିବେ । କଳିଙ୍ଗ ହସ୍ପିଟାଲରେ ଥିବାବେଳେ ମୁଁ ରାତ୍ରିରେ ଥରେ ପଚାରିଲି ଭାଇନା ଆପଣଙ୍କର ପ୍ରକୃତରେ କଣ ହେଉଛି ସେ ତାଙ୍କର ପେଟ ଆଡକୁ ଆଙ୍ଗୁଳି ବଢ଼ାଇ ବହୁତ କଷ୍ଟ ହେଉଛି ବୋଲି କହିଥିଲେ । ତାଙ୍କର ହାତ, ଗୋଡ, ଫୁଲିଯିବା ଦେଖି ସମସ୍ତେ ଦୁଃଖିତ ହେଉଥିଲେ ଆଉ ଦିନେ ଭାଇନା ମୋତେ ସକାଳୁ କହିଲେ ଜାଣିଲୁଣି ନନା ଆସିଥିଲେ । ଏଇଠି ବସିଥିଲେ, କୁଆଡେ ଗଲେ । ସେଥିରୁ ମୁଁ ବୁଝିଲି ଯେ ପିତୃପୁରୁଷମାନେ ଆସୁଛନ୍ତି । ପିତୃ ପୁରୁଷମାନେ ରୋଗୀ ନିକଟକୁ ଆସିଲେ ରୋଗୀର ରୋଗ ଉପଶମ ହୁଏ କିମ୍ବା ରୋଗୀକୁ ସେମାନେ ସାଙ୍ଗରେ ଆରପୁରକୁ ଡାକି ନେଇଯାଆନ୍ତି । ଦ୍ୱିତୀୟ କଥାଟି ହିଁ ହେଲା ଆଉ ଥରେ ରାତିରେ ଭାଇନାଙ୍କୁ ପଚାରିଲି ଭାଇନା- ଆପଣ ଗୀତା ପାଠକୁ ଖୁବ୍ ଭଲ ପାଆନ୍ତି । ମୁଁ ଗୀତା ବହି ଆଣିଛି ସେଥିରୁ ମୁଁ ପଢୁଛି । ଭାଇନା ଖୁସି ହେଲେ ଏବଂ କହିଲେ ଯେ ଜଗନ୍ନାଥ ମୋତେ କାହିଁକି ଏତେ କଷ୍ଟ ଦେଉଛନ୍ତି ମୁଁ ତ କାହାର କିଛି କ୍ଷତି କରିନାହିଁ । ଭାଇନାଙ୍କ ଅବସ୍ଥା ଦିନକୁ ଦିନ ଖରାପ ଆଡକୁ ଗତି କରୁଥାଏ ।

ଡିସେମ୍ବର ୫ ତାରିଖ, ୯ଟା ରାତିରେ ମୁଁ ଏବଂ ମୋର ପୁତୁରା କାଳିଆ ଭାଇନାଙ୍କୁ ଜଗି ରହିଥିଲୁ । ରାତି ୯.୩୦ ସମୟରେ ନର୍ସମାନେ ଇଂଜେକ୍ସନ ଖାଇବା ଇତ୍ୟାଦି କାର୍ଯ୍ୟ ସମାପନ କରିଗଲେ । ହଠାତ ଭାଇନା ଖୁବ ଜୋରରେ ନିଃଶ୍ୱାସ ପ୍ରଶ୍ୱାସ ନେଲେ ମୁଁ ପୁତୁରା କାଳିଆକୁ ତୁରନ୍ତ ଡାକ୍ତର ଏବଂ ନର୍ସମାନଙ୍କୁ ଡାକିବା ପାଇଁ ପଠାଇଲି । ମୁଁ ଭାଇନାଙ୍କ ମୁଣ୍ଡ ପାଖରେ ଠିଆ ହୋଇ ତାଙ୍କ ମୁଣ୍ଡରେ ଓଁ ଜଗନ୍ନାଥାୟ ନମଃ, ଓଁ ବଳଭଦ୍ରାୟ ନମଃ ଏବଂ ମା ସୁଭଦ୍ରାୟେ ନମଃ ଉଚ୍ଚାରଣ କରୁଥିଲି । ନର୍ସ ଆସି ଦେଖିଲେ ଏବଂ କହିଲେ ସବୁ ଠିକ୍ ଅଛି । ଠିକ୍ ୫ ମିନିଟ୍ ପରେ ପୁନର୍ବାର ଭାଇନା ଖୁବ ଜୋରରେ ନିଃଶ୍ୱାସ ପ୍ରଶ୍ୱାସ ନେଲେ । ମୁଁ ପୁଣି ତାଙ୍କ ପାଖକୁ ଯାଇ ମୁଣ୍ଡରେ ହାତ ଦେଇ ପୁନର୍ବାର ଓଁ ଜଗନ୍ନାଥାୟ ନମଃ, ଓଁ ବଳଭଦ୍ରାୟ ନମଃ ଏବଂ ମା ସୁଭଦ୍ରାୟେ ନମଃ ଉଚ୍ଚାରଣ କରୁଥିବା ବେଳେ ସେ ମୋତେ ଶାନ୍ତ ଓ ସରଳ ଶିଶୁ ପରି ଚାହିଁ ରହିଥିଲେ ଓ ଉଚ୍ଚାରଣ ପରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ମୋର ହୃଦ୍‌ବୋଧ ହେଲା ଭାଇନା ଆଉ ନାହାଁନ୍ତି । ଡାକ୍ତର ଏବଂ ନର୍ସମାନଙ୍କୁ ଡକାଗଲା ସେମାନେ ଆସିଲେ । ଏହା ଭିତରେ ମୁଁ ହସ୍ପିଟାଲ ଭିତରେ ଥିବା ଟେଲିଫୋନ ବୁଥକୁ ଯାଇ ମୋର ପୁତୁରା ବୁଢ଼ା, କାବୁଲାମାନଙ୍କୁ ତୁରନ୍ତ ଆସିବା ପାଇଁ ଜଣାଇଲି । ସେମାନେ ଆସିଲା ବେଳକୁ ପ୍ରାୟ ଅଧଘଣ୍ଟା ଡେରି ହୋଇଗଲା । ସେତେବେଳକୁ ପ୍ରାୟ ରାତ୍ରି ୧୦.୧୫ ମିନିଟ୍ ମୁଁ ବାହାରେ ଠିଆ ହୋଇ ଆକାଶରେ ଜ୍ୱଳ୍, ଜ୍ୱଳ୍ କରୁଥିବା ତାରାମାନଙ୍କୁ ଚାହିଁ ଭାଇନାଙ୍କ ଶେଷ ନିଶ୍ୱାସ ଯିବା ସମୟ କଥା ମନେ ପକାଉଥିଲି । ଭାଇନା ତାଙ୍କର ପାର୍ଥିବ ଶରୀର

ତ୍ୟାଗ କରି ଭବ ବନ୍ଧନର ମାୟା ଜାଲ କାଟି ଚାଲିଗଲେ । ଏହା ଭିତରେ ଭାଇନାଙ୍କ ବଡ଼ ଝିଅ ବୁଲୁ, ପୁଅ ବୁଢ଼ା ଓ କାବୁଲା ଆସି ପହଞ୍ଚିଲେ ଓ କଣ ହୋଇଛି ବୋଲି ପଚାରିଲେ । ମୁଁ କୋହ ସମ୍ଭାଳି ନପାରି ବୁଢ଼ା ହାତ ଧରି ଭାଇନା ଚାଲିଗଲେ ବୋଲି କହିଦେଲି । ସମସ୍ତେ ଧାଇଁ ଯାଇ ଭାଇନା ଥିବା ରୁମ୍‌ରେ ପହଞ୍ଚିଲୁ । ସମସ୍ତଙ୍କ ଆଖିରେ ଲୁହ । ବୁଲୁ ସମସ୍ତଙ୍କୁ ସାନ୍ତ୍ୱନା ଦେଉଥାଏ । ମରିବା ସମୟରେ କାନ୍ଦିବା ଠିକ୍ ନୁହେଁ ଏପରି କଲେ ଆତ୍ମା ଅସନ୍ତୁଷ୍ଟ ହୁଏ । ଆମେ ସମସ୍ତେ ଧୈର୍ଯ୍ୟଧରି ରୁମ୍‌ରେ ଥାଉ । ହସ୍ପିଟାଲ ଦେୟ ଦେବା ପରେ ରାତି ଗୋଟାଏ ବେଳକୁ ଭାଇନାଙ୍କ ପାର୍ଥିବ ଶରୀରକୁ ଧରି ଗାଡିରେ ଆମେ ବିବେକାନନ୍ଦ ମାର୍ଗ ଆସିଲୁ । ସେଠାରେ ନୂଆବୋଉ, ବୋହୁମାନେ ଏବଂ ନାତି ନାତୁଣୀମାନଙ୍କ ଆଖିରେ ଲୁହ । ଫୋନ୍‌ଦ୍ୱାରା ଗାଁକୁ, ପୁରୀ ଏବଂ କଟକରେ ଥିବା ଭାଇମାନଙ୍କୁ ଏହି ଖବର ଜଣାଇ ଦିଆଗଲା । ତାପର ଦିନ ୧୧ ଘଟିକା ବେଳକୁ ପୁରୀ ଅଭିମୁଖେ ଶବ ଯାତ୍ରା ଆରମ୍ଭ ହେଲା । ଦୁଇଘଣ୍ଟା ପରେ ପୁରୀ ସ୍ୱର୍ଗଦ୍ୱାରରେ ଭାଇନାଙ୍କର ପାର୍ଥିବ ଶରୀର କେତେଖଣ୍ଡ କାଠରେ ଅଗ୍ନିଶିଖା ମଧ୍ୟରେ ଶେଷ ହୋଇଗଲା । ସତରେ ମନୁଷ୍ୟ ମହାକାଳ ପାଖରେ କେତେ କ୍ଷୁଦ୍ର । ଜନ୍ମ ସମୟରେ ଖାଲି ହାତରେ ଆସିଥିବା ମନୁଷ୍ୟ ପୁନର୍ବାର ଖାଲି ହାତରେ ତାର ପୂର୍ବ ଜାଗାକୁ ଫେରିଯାଏ କେଉଁ ଏକ ଅଜଣା ରାଇଜକୁ । ଏହି ଧରାଧାମରେ ମୋର ତୋର ଭାବରେ ବାନ୍ଧି ହୋଇପଡ଼େ । ମିଛମାୟା ସଂସାରରେ ବୁଡ଼ିଯାଏ । ମୃତ୍ୟୁ ସମୟରେ ସବୁ ପରିତ୍ୟାଗ କରି କୁଆଡ଼େ ପଳାଏ । ଜନ୍ମହେଲେ ମୃତ୍ୟୁ ଅଛି ।

> ପୁନଃରପି ଜନମମ୍ ପୁନରପି ମରଣଂ
> ପୁନରପି ଜନନୀ ଜଠରେ ଶୟନମ୍

ଭାଇନା ଆମର ଦେବତୁଲ୍ୟ । ତାଙ୍କର ପରାମର୍ଶ ସମସ୍ତେ ମାନୁଥିଲେ ଏବଂ ସମସ୍ତେ ଭାଇନାଙ୍କୁ ଯଥେଷ୍ଟ ସମ୍ମାନ କରନ୍ତି । ପ୍ରାୟ ସଂଧ୍ୟା ୪ଟା ବେଳକୁ ମୁଁ, ମଥୁରିବାବୁ ଓ ଡକ୍ଟର ରାଜକିଶୋର ମିଶ୍ର ଗୋଟିଏ କାରରେ ସ୍ୱର୍ଗଦ୍ୱାର ଛାଡି ବଡ଼ଦାଣ୍ଡକୁ ଆସିଲୁ । ଶ୍ରୀମନ୍ଦିରରୁ ଅଭଡ଼ା ଧରି ଭୁବନେଶ୍ୱର ଆସିଲୁ । ବାଟରେ ରାଜୁବାବୁ, ମଥୁରିବାବୁ ଭାଇନାଙ୍କ ଗୁଣାବଳୀ ଆଲୋଚନା କରୁଥାନ୍ତି । ମୁଁ ସବୁ ଶୁଣୁଥାଏ । ଭାଇନା ମୋତେ ଖୁବ ଭଲ ପାଉଥିଲେ ବୋଲି ସେମାନେ ନାନା ଉଦାହରଣ ଦେଇ କହୁଥିଲେ । ଭାଇନାଙ୍କର ମୋ ପ୍ରତି ଥିବା ଅନାବିଳ ସ୍ନେହ ମୋତେ ଶୋକାଭିଭୂତ କରିଦେଇଥିଲା ।

ଭାଇନା ବଡ଼ ଭାଗ୍ୟବାନ । ନାତି ନାତୁଣୀ ଏବଂ ଅଣନାତି ଓ ନାତୁଣୀ ମଧ ଦେଖିଥିଲେ । କେତେ ଲୋକଙ୍କ ଭାଗ୍ୟରେ ଏ ସୁଯୋଗ ମିଳେ । ଭାଇନାଙ୍କ ସୁକୃତିରୁ ପୁଅ ବୋହୁ, ଝିଅ ଜ୍ୱାଇଁ ଏବଂ ନାତି ନାତୁଣୀମାନେ ସୁଖରେ ଓ ଆନନ୍ଦରେ ଅଛନ୍ତି । ତାଙ୍କ ଆଶୀର୍ବାଦରୁ

ଆମ୍ଭେମାନେ ମଧ୍ୟ ଭଲରେ ଅଛୁ ।

ଗୀତାର ସାଂଖ୍ୟ ଯୋଗରେ ଥିବା ଶ୍ଳୋକ ମୋର ମନେ ପଡୁଛି-

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ

ନବାନି ଗୃହ୍ଣାତି ନରୋ ପରାଣି

ତଥା ଶରୀରାଣି ବିହାୟ ଜୀର୍ଣ୍ଣା

ନନ୍ୟାତି ସଂଯାତି ନବନି ଦେହୀ

ମନୁଷ୍ୟ ଜୀର୍ଣ୍ଣ ବସ୍ତ୍ର ପରିତ୍ୟାଗ କରି ନୂତନ ବସ୍ତ୍ର ପରିଧାନ କରେ । ସେହିପରି ଜୀବାତ୍ମା ଜୀର୍ଣ୍ଣ ଶରୀର ତ୍ୟାଗ କରି ଅନ୍ୟ ନୂତନ ଶରୀର ଧାରଣ କରେ । ଭାଇନା ତାଙ୍କର ଏହି ଜନ୍ମର ପାର୍ଥିବ ଶରୀରକୁ ତ୍ୟାଗ କରି ନୂତନ ଶରୀର ଧାରଣ କରି କେଉଁ ଏକ ନୂତନ ରାଜ୍ୟରେ ଥିବେ । ତାଙ୍କର ସ୍ନେହ, ସଦିଚ୍ଛା ଛାତ୍ର ବତ୍ସଳତା, ହସ ହସ ମୁହଁ, ସତ୍ ଉପଦେଶ, ପରୋପକାରୀର ମନୋଭାବ ଇତ୍ୟାଦି ଗୁଣାବଳୀ ଆମକୁ ବିମୁଗ୍ଧ କରୁଛି । ସେ ଯେଉଁଠି ଥାଆନ୍ତୁ ତାଙ୍କୁ ଜଗନ୍ନାଥ ସହାୟ ହୁଅନ୍ତୁ । ତାଙ୍କର ପରଲୋକ ଜୀବନ ସୁଖମୟ ଓ ମଧୁମୟ ହେଉ ।

କେହି ରହିନାହିଁ ରହିବେ ନାହିଁଟି

ଭବରଂଗ ଭୂମି ତଳେ

ସର୍ବେ ଆପଣାର ଅଭିନୟ ସାରି

ବାହୁଡିବେ କାଳବଳେ

ସର୍ବ ଚଳିବେ କାଳ ବଳେ

ଯଶ ରହିବା ମହୀତଳେ

ଭାଇନାଙ୍କ ଦୀର୍ଘ ୮୦ ବର୍ଷର ଘଟଣା ବହୁଳ ଜୀବନର ଅବସାନ ଘଟିଛି । ମୃତ୍ୟୁ ହେବାର ପ୍ରାୟ ଏକ ବର୍ଷ ହେଲାଣି । ସବୁ କାଲି ପରି ଲାଗୁଛି । ମୁଁ କେବେ ବିଶ୍ୱାସ କରିପାରୁ ନାହିଁ ଯେ ଭାଇନା ଆମ୍ଭମାନଙ୍କୁ ଛାଡ଼ି ଚାଲିଯାଇଛନ୍ତି ।

ଭାଇନାଙ୍କ ମୃତ୍ୟୁ ପରେ ନୂଆବୋଉ ଖୁବ୍ ମନ କଷ୍ଟରେ ଅଛନ୍ତି । ଏହା ସ୍ୱାଭାବିକ । ୨/୩ଥର ଭାଇନାଙ୍କ ଘରକୁ ଯାଇଛି । ନୂଆବୋଉ ଭାଇନାଙ୍କ କଥା କହି କାନ୍ଦି ପକାନ୍ତି । ଏ ସଂସାରରେ ଆଦୌ ରହିବାକୁ ଇଚ୍ଛା ନାହିଁ ବୋଲି କୁହନ୍ତି । ମୁଁ ତାଙ୍କୁ ବୁଝାଇଛି, ଆଗପଛ ହୋଇ ସମସ୍ତେ ଏହି ଜଗତରୁ ଦିନେ ନା ଦିନେ ଛାଡ଼ି ଚାଲିଯିବେ । ମନବୋଧ ଚଉତିଶା

ଲେଖାଅଛି । ଝଡିଲା ପତ୍ର ବୃକ୍ଷେ ଲାଗିଛି । କାହିଁ ଭାଇନା ଆଉ ଫେରିବେ ନାହିଁ । ତାଙ୍କର ଲିଖିତ କଲ୍ଟ ଅଫ୍ ଜଗନ୍ନାଥ ଗବେଷଣାତ୍ମକ ପୁସ୍ତକ ତାଙ୍କୁ ଗବେଷକ ବିଦ୍ୱାନ, ପଣ୍ଡିତ ଏବଂ ଜଗନ୍ନାଥ ପ୍ରେମୀଙ୍କ ମଧ୍ୟରେ ସବୁଦିନ ପାଇଁ ବଞ୍ଚାଇ ରଖିବ ।

ସେହି ପବିତ୍ର ଓ ମହାନ ଆତ୍ମାର ମୁଁ ଜୟଗାନ କରୁଛି । ତାଙ୍କର ଶୁଭ ଆଶୀର୍ବାଦ ଆମମାନଙ୍କ ଉପରେ ଅତୁଟ ରହୁ ବୋଲି ଆଶା କରୁଛି ।

ମୋର ମନେ ହେଉଛି ଡିସେମ୍ବର ୫ ତାରିଖ ଦିନ ଭାଇନାଙ୍କ ଅନ୍ତିମ ସଂସ୍କାର ପାଇଁ ଆମେମାନେ କେବଳ ପୁରୀ ଯାଇନଥିଲୁ ବରଂ ତାଙ୍କୁ ସବୁଦିନ ପାଇଁ ଜଗନ୍ନାଥ ମହାପ୍ରଭୁଙ୍କ ନିକଟରେ ସମର୍ପି ଦେବା ପାଇଁ ଯାଇଥିଲୁ । ଭାଇନାତ ଜଗନ୍ନାଥଙ୍କ ଚରଣାଶ୍ରିତ । ସେହି କରୁଣା ସାଗର ମଙ୍ଗଳମୟ କଲ୍ୟାଣକାରୀ ଶ୍ରୀ ଜଗନ୍ନାଥଙ୍କର ଜୟ ହେଉ । ଜୟ ଜଗନ୍ନାଥ ।

■■

# ଯାଚଞ୍ଚା

- ଶୈଳରାଣୀ ମିଶ୍ର

ଭାରତୀୟ ସଂସ୍କୃତିର ପରମ୍ପରାର ଏକ ଜ୍ୱଳନ୍ତ, ଶୁଦ୍ଧ ନିଦର୍ଶନ ଥିଲେ ସେଇ ମହାପୁରୁଷ ଜଣକ । ସଭା ସମିତିରେ, ଉତ୍ସବ ମହୋତ୍ସବରେ ସମସ୍ତ ଜନମାନବ ପୂର୍ଣ୍ଣସ୍ଥଳୀରେ ବାରି ହୋଇଯାଉଥିଲେ । ତାଙ୍କର ଶୁଦ୍ଧ ପବିତ୍ର ମନ ଭଳି ତେଜସ୍ୱୀ ବୁଦ୍ଧିଦୀପ୍ତ ଲଲାଟ ପରିବେଶ ପୋଷାକ ମଧ୍ୟ ଖାପଖାଇ ଯାଉଥିଲା । ପରିଷ୍କାର ସଫେଦ ଧୋତି ପଞ୍ଜାବୀ ସହିତ କାନ୍ଧରେ ପଡ଼ିଥିବା ଉତ୍ତରୀୟଟି ମଧ୍ୟ ସୁଚାଇଦିଏ ଇଏ ଅନନ୍ୟ । ସେଇ ଅନନ୍ୟ ସତ୍ତାଟି ସଂସାରରେ ଜନ୍ମଗ୍ରହଣ କରି ନିଜର ସମସ୍ତ କର୍ତ୍ତବ୍ୟ ସୁଚାରୁରୂପେ ସମାହିତ କରି ଏଇ ଧରାପୃଷ୍ଠ ତ୍ୟାଗ କରି ଚାଲିଗଲେ ବର୍ଷକ ତଳେ । ଆଜି ତାଙ୍କର ସ୍ମୃତିଚାରଣ ନିମନ୍ତେ ସ୍ମରଣିକାଟିଏ ପ୍ରକାଶିତ ହେବ । ସେଥିପାଇଁ ତାଙ୍କ କନ୍ୟା ସୀମାର ଅନୁରୋଧ ହେତୁ ଏଇଠି କିଛି ଲେଖିବାକୁ ଚେଷ୍ଟା କରୁଛି ।

କିନ୍ତୁ କଣ ଲେଖିବି ? ସମୁଦ୍ରର ବାଲି ବା ସାଗରର ଜଳକୁ ମାପିବା ମୋ ପରି କ୍ଷୁଦ୍ର ବୁଦ୍ଧିହୀନ ପକ୍ଷେ ସମ୍ଭବ କି ? ସର୍ବଦା ମୁଁ ତାଙ୍କୁ ଦୂରରୁ ଦେଖିଛି । ଅତି ନିକଟରେ ଜୀବନରେ ଗୋଟିଏ ଥର ଦେଖିଥିଲି ଏକ ଭୟାବହ ଦାରୁଣ ଦୁଃଖଦ ସମୟରେ । ସେଇ ସମୟରେ କଥା ଦୁଇପଦ ହୋଇଥିଲି ମଧ୍ୟ । ଗୀତାରେ ପଢୁଥିବା ସ୍ଥିତପ୍ରଜ୍ଞ ବ୍ୟକ୍ତି ଭଳି ସେ ଦୃଶ୍ୟ ହେଉଥିଲେ । ହସ୍ପିଟାଲର ବାରଣ୍ଡାରେ ଦଣ୍ଡାୟମାନ ଥିଲେ । ଆମ ପ୍ରଣାମ ଗ୍ରହଣ କରି ପ୍ରତି ନମସ୍କାର ଜଣାଇଲେ । ତାଙ୍କ ଜ୍ୱାଇଁ ଶଚିବାବୁଙ୍କ ଶଯ୍ୟା ନିକଟକୁ ସାଥିରେ ନେଇଗଲେ । କିଛି ସମୟ ପରେ ଆମେ ବାହାରକୁ ଆସିଲୁ । ଦେଖିଲୁ ସେଇ ଭଳି ସେ ଅଟଳ ଅଚଳ ଭାବେ ଦଣ୍ଡାୟମାନ । ମୁଁ କହିଥିଲି ସୀମାକୁ ଟିକିଏ ଦେଖିବାର ଇଚ୍ଛା ଥିଲା କିନ୍ତୁ ଏ ପରିସ୍ଥିତିରେ ଆଉ ଯିବା ଉଚିତ ମନେ କରୁନାହିଁ । ସେ ବାତ୍ସଲ୍ୟ ହୃଦୟ ଭରା ପିତାର ହୃଦୟ ଧରି କହିଥିଲେ, ତୁମେ ଟିକିଏ ଯାଅ । ଏଇ ଦୁଇଦିନ ହେଲା ସେ ଜଳ ମଧ୍ୟ ସ୍ପର୍ଶ କରିବାକୁ କୁଣ୍ଠିତ ହେଉଛି । ତାକୁ ଟିକିଏ ଆଶ୍ୱାସନା ଦିଅ । ସେଇଠି ବୁଝିଥିଲି ସ୍ଥିତପ୍ରଜ୍ଞ ବ୍ୟକ୍ତିର ହୃଦୟ ଶୁଷ୍କ ସ୍ଥାଣୁ ପ୍ରସ୍ତର ଭଳି ହୁଏ ନାହିଁ । ତା ମଧ୍ୟରେ ଦୟା, ସ୍ନେହ, କ୍ଷମା, କରୁଣା ଏବଂ ଉଦାରତାର ନିର୍ଝର ସର୍ବଦା କୁଳୁକୁଳୁ ନାଦ କରି ଝରି ଚାଲିଥାଏ ।

ନିଜର ଶତ ଅନିଚ୍ଛା ସତ୍ତ୍ୱେ ତାଙ୍କ କଥା ରକ୍ଷାକରି ଆମେ ଯାଇଥିଲୁ । କିନ୍ତୁ ସେଇ ଶୋକାକୁଳ ପରିସ୍ଥିତିରେ ଅନ୍ୟମାନଙ୍କ ସହିତ ଦୁଇପଦ କଥା ହୋଇ, କିଛି ସମୟ ଅତିବାହିତ କରି ଫେରି ଆସିଥିଲୁ । ସୀମା ସହିତ ଦେଖା କରି ନଥିଲୁ କିମ୍ବା ସମବେଦନା ଜ୍ଞାପନ କରି କିଛି ଆଦେଶ ଉପଦେଶ ଦେଇନଥିଲୁ । ସେଇ ସର୍ବମୟ କର୍ତ୍ତାଙ୍କ ନିକଟରେ ଆକୁଳ ଆବେଦନ କରିଥିଲୁ, ସେ ଏଇ ଅବସ୍ଥାରୁ ତାଙ୍କୁ ରକ୍ଷା କରନ୍ତୁ ।

ସମୟ ସବୁଠାରୁ ବଳବାନ । ସେ କାହାରି ସହିତ ସୁଖ ଦୁଃଖରେ ଭାଗୀ ହୁଏନାହିଁ କିମ୍ବା ଘଡ଼ିଏ ଅଟକି ଯାଇ ଉପଭୋଗ କରେ ନାହିଁ । ସେ ଅତୀତକୁ କେବଳ ପୋଛିଦେବା ନିମନ୍ତେ ଚେଷ୍ଟା କରେ ଏବଂ ଭବିଷ୍ୟତରେ ଆଗେଇବା ନିମନ୍ତେ ପ୍ରେରଣା ଦିଏ, ବର୍ତ୍ତମାନକୁ ଦୃଷ୍ଟି ଦେଇ ଗତି କରିବାକୁ ଜଣାଇଦିଏ । ଲାଗୁଛି ଏଇ କିଛିଦିନ ତଳେ ଏକାଦଶାହରେ ଯୋଗଦେବା ନିମନ୍ତେ ଯାଇଥିଲି । କିନ୍ତୁ ଚାହୁଁ ଚାହୁଁ ଏକବର୍ଷ ବିତିଯିବାକୁ ବସିଲାଣି । ହେ କାଳ ! ତମେ ନମସ୍ୟ । ଯେଉଁ ମହାପୁରୁଷଙ୍କୁ ତୁମେ ନିଜେ ମହାଗର୍ଭରେ ଲୁଚାଇ ଦେଇଛ ତାକୁ ଆଉ ଫେରାଇ ଦେବାର ପ୍ରଶ୍ନ ନାହିଁ ମୁଁ ଜାଣେ । କିନ୍ତୁ ବର୍ତ୍ତମାନ ପୃଥିବୀରେ ସେଇପରି ସ୍ନେହଶୀଳ ପିତାଟିଏ, ଦୟାଶୀଳ ଭ୍ରାତାଟିଏ, କ୍ଷମାଶୀଳ ସ୍ୱାମୀଟିଏ, ସଦିଚ୍ଛା ଓ ସମବେଦନାରେ ପରିପୂର୍ଣ୍ଣ ନାଗରିକଟିଏର ନିତାନ୍ତ ପ୍ରୟୋଜନ । ବିଲୁପ୍ତ ହୋଇଯାଉଥିବା ସଂସ୍କୃତିର ଦୃଶ୍ୟମାନ ଚିତ୍ରପଟ କିଏ ଆଉ ହେବ ? ସାରା ଭାରତକୁ, ବିଶ୍ୱକୁ ଦିଗଦର୍ଶନ ନଦେଇ ପାରିଲେ ମଧ୍ୟ ଏଇ ଓଡ଼ିଶାର କ୍ଷୁଦ୍ର ପରିଧିକୁ ପ୍ରେରଣା ଦେଇ ଉଜ୍ଜିବିତ କରି ରଖିବ ? ସେଇ ପ୍ରାତଃ ସ୍ମରଣୀୟ ଶୁଚିଶୁଦ୍ଧ ପବିତ୍ର ଦେବଦୁର୍ଲଭ ଚରିତ୍ରବାନ କାହ୍ନୁ ଭାଇନାଙ୍କ ଭଳି ଏ ଦେଶକୁ ଆଉ ଜଣେ କାହାକୁ ପଠାଇଦିଅ, ଯିଏକି ନିଜ ପରିବାର ସହିତ ସାରା ବିଶ୍ୱକୁ ବସୁଧୈବ କୁଟୁମ୍ବକମ୍ କରି ଦେଇପାରିବ । ଆପଣଙ୍କୁ ଶ୍ରଦ୍ଧାଞ୍ଜଳି ଦେବାପାଇଁ ମୋର ଯୋଗ୍ୟତା ନାହିଁ କିନ୍ତୁ ମାଗୁଣିର ଆସ୍ପର୍ଦ୍ଧା ରଖି ମିନତି କରୁଛି ମାତ୍ର । ହରିଓଁ ତତ୍‌ସତ୍-

■■

# ମୋର ସାର୍, ଏକ ଭିନ୍ନ ବ୍ୟକ୍ତିତ୍ୱ

*- ଚନ୍ଦ୍ରିକା ମହାପାତ୍ର*

ଏପରି ଜଣେ ଜଣେ ବ୍ୟକ୍ତି ଥାଆନ୍ତି ଯାହାଙ୍କ ଦର୍ଶନରେ ମସ୍ତକ ସ୍ୱତଃ ନଇଁଯାଏ । ସେପରି ବ୍ୟକ୍ତିତ୍ୱର ଅଧିକାରୀ ଥିଲେ ମୋର ସମ୍ମାନାସ୍ପଦ ସାର ଡଃ କାହ୍ନୁ ମିଶ୍ର । ୧୯୫୩ ମସିହା । ମୁଁ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜର ଛାତ୍ରୀ । ସେ ସମୟରେ ସାର୍ ପୁରୀ କଲେଜରେ ଓଡ଼ିଆ ଅଧ୍ୟାପକ ଭାବେ ଯୋଗ ଦେଲେ । ଆମର ଓଡ଼ିଆ ସାହିତ୍ୟ କ୍ଲାସକୁ ସେ ଆସିଲେ । ଶାନ୍ତ ଗମ୍ଭୀର ବ୍ୟକ୍ତିତ୍ୱ । ଖଦଡ଼ ଧୋତି ଓ ଦେହରେ ଖଦଡ଼ ଚାଦର ଘୋଡ଼ିହୋଇ ସାର କ୍ଲାସକୁ ଆସିଥାଆନ୍ତି । ମନେହେଲା ଯେପରି ଗୋପବନ୍ଧୁ ବନ ବିଦ୍ୟାଳୟରେ ସତେକି ଅଧାପନା କରୁଛନ୍ତି ।

ସାରସ୍ୱତ ସାଧକ ଡଃ କାହ୍ନୁ ମିଶ୍ର ଓଡ଼ିଆ ସାହିତ୍ୟର ବରପୁତ୍ରମାନଙ୍କ ମଧ୍ୟରେ ଅନ୍ୟତମ । ଛାତ୍ରବତ୍ସଳ ଶିକ୍ଷକ ଭାବରେ ସେ ଛାତ୍ରମାନଙ୍କ ମଧ୍ୟରେ ବେଶ ଆଦୃତ । ତାଙ୍କର ନିରଳସ ସାଧନା, ଅଗାଧ ପାଣ୍ଡିତ୍ୟ ଓ ଅପୂର୍ବ ବାଗ୍ମିତା ତାଙ୍କୁ ଛାତ୍ରମାନଙ୍କ ମଧ୍ୟରେ ପ୍ରତିଷ୍ଠାର ସ୍ଥାନ ଦେଇଥିଲା ।

ଓଡ଼ିଆ ସାହିତ୍ୟର ଏହି କୃତବିଦ ସାଧକ ଛାତ୍ରମାନଙ୍କ ସାମ୍ନାରେ ଆଲୋକବର୍ତ୍ତିକା ସଦୃଶ ଥିଲେ । ଅସୀମ ଧୈର୍ଯ୍ୟ, ନିରଳସ ଜୀବନାଦର୍ଶ, ଛାତ୍ରବତ୍ସଳତା ଓ ଶିକ୍ଷାଦାନରେ ଅନ୍ତରଙ୍ଗ ଅନୁପ୍ରବେଶ ତାଙ୍କୁ ଛାତ୍ରପ୍ରିୟ କରିଥିଲା । ତାଙ୍କର ଓଜସ୍ୱିନୀ ଭାଷା ଓ ଭାବ ବିନିମୟ ଶୈଳୀ ଶିକ୍ଷାଦାନକୁ ହିଁ ସରସ ସୁନ୍ଦର କରି ତୋଳୁଥିଲା । ମତେ ନିଜକୁ ଗର୍ବ ଆସେ, ମୁଁ ଏପରି ଜଣେ ଶିକ୍ଷକଙ୍କର ଛାତ୍ରୀ ଥିଲି ବୋଲି । ପ୍ରଫେସର ଭାବରେ ତାଙ୍କର ଖୁବ ସୁଖ୍ୟାତି ଥିଲା । ଛାତ୍ର ମାନଙ୍କର ସମସ୍ୟା ପ୍ରତି ସେ ସଚେତନ  ଥିଲେ । ତାଙ୍କର ହୃଦୟବତ୍ତା ଓ ଛାତ୍ରବତ୍ସଳତା ଛାତ୍ରମାନଙ୍କ ସମସ୍ୟାର ଆଶୁ ସମାଧାନ ପନ୍ଥା ନିର୍ଦ୍ଧାରଣ କରୁଥିଲା ।

ଓଡ଼ିଆ ସାହିତ୍ୟ- ଏହି ନିରଳସ ସାଧକଙ୍କର ପ୍ରିୟ ପାଠ୍ୟ ବିଷୟବସ୍ତୁ । ସେ ସାହିତ୍ୟ ସାଧନାରେ ସମଗ୍ର ଜୀବନ ବିତାଇଛନ୍ତି । ମନନ, ଚିନ୍ତନ, ଅନୁଶୀଳନ ଓ ଅଧ୍ୟୟନ ତାଙ୍କୁ ଆଦର୍ଶ ଶିକ୍ଷକ ପଦବାଚ୍ୟ  କରିଛି ।

ଉଚ୍ଚଚିନ୍ତା ଓ ଉଚ୍ଚ ଆଦର୍ଶର ପ୍ରତିମୂର୍ତ୍ତି ଡଃ କାହ୍ନୁ ମିଶ୍ର ଓଡ଼ିଆ ସାହିତ୍ୟାକାଶରେ ଉଜ୍ଜ୍ୱଳ ନକ୍ଷତ୍ର ସଦୃଶ । ତାଙ୍କର ସାହିତ୍ୟ ସାଧନା କାଳଜୟୀ । ପ୍ରତିଦିନ ପଥ ଚାଲିବା ତାଙ୍କର ସୁଅଭ୍ୟାସ ମଧ୍ୟରେ ଅନ୍ୟତମ ।

ମୋ ସାର କାହ୍ନୁ ମିଶ୍ରଙ୍କ ସମ୍ବନ୍ଧରେ କିଛି ଅନୁଭୂତି ଓ ସ୍ମୃତିଚାରଣ କରିବା ଅବସରରେ ସାରଙ୍କ ବ୍ୟକ୍ତିତ୍ୱ ନିରଳସ ସାଧନା, ଆଦର୍ଶ ଜୀବନଚର୍ଯ୍ୟା, ଅଗାଧ ଜ୍ଞାନ ପ୍ରତି ମନ ପୁନର୍ବାର ଆକର୍ଷିତ ହୋଇଯାଏ । ଏହି ଯୋଗ୍ୟ, ନିରଳସ ସାରସ୍ୱତ ସାଧକ, ଛାତ୍ରପ୍ରିୟ ଶିକ୍ଷକଙ୍କ ପାଇଁ ଆଜି 'ପ୍ରଣିପାତ' ହିଁ ସ୍ମୃତିଚାରଣ ପାଇଁ ଅଭିପ୍ରେତ ।

■■

# ନିରଳସ ଗବେଷକଙ୍କ ବିୟୋଗରେ

*- ମନୋରମା ମହାପାତ୍ର*

ସମଗ୍ର ଓଡ଼ିଶାରେ ଲବ୍ଧପ୍ରତିଷ୍ଠ ଗବେଷକ, ସମାଲୋଚକ, ସାହିତ୍ୟିକ ତଥା ଛାତ୍ରବତ୍ସଳ ଅଧ୍ୟାପକ ଭାବେ ଏକାନ୍ତ ସୁପରିଚିତ ଡଃ କାହ୍ନୁଚରଣ ମିଶ୍ର ସମ୍ମାନଜନକ ଭାବରେ କର୍ମମୟ ଜୀବନ ଅତିବାହିତ କରି ଶେଷ ବିଶ୍ରାମ ନେଲେ । ଅକ୍ଷର ସମ୍ଭନ୍ଧ କୀର୍ତ୍ତି ସୃଷ୍ଟି କରିଦେଇଗଲେ ଶୂନ୍ୟସ୍ଥା । ଉତ୍କଳୀୟ ସାଂସ୍କୃତିକ ଚେତନାକୁ ଜାଗ୍ରତ କରାଇ ବିଶ୍ୱ ଦରବାରରେ ଯଥାର୍ଥ ରୀତିରେ ଉପସ୍ଥାପନ କରିବା ନିମନ୍ତେ ସେ ନିରବଚ୍ଛିନ୍ନ ଭାବରେ ଏକ ପ୍ରକାର ଏକନିଷ୍ଠ ତପସ୍ୟା କରୁଥିଲେ କହିଲେ ଚଳେ । ଜଗନ୍ନାଥ ସଂସ୍କୃତି ଉପରେ ଦୀର୍ଘ ଚାଳିଶବର୍ଷର ଗବେଷଣା ଲବ୍ଧଜ୍ଞାନ ଛାତ୍ର ସମାଜରେ ବିତରଣ କରିବା ପାଇଁ ସେ ନିଜସ୍ୱ ଉଦ୍ୟମରେ ନିର୍ମାଣ କଲେ ଉତ୍କଳୀୟ ସଂସ୍କୃତି ସଂସ୍ଥାନ । ନିର୍ଦ୍ଦେଶକ ଭାବରେ ଦାୟିତ୍ୱ ବହନ କରି ଜ୍ଞାନର ପ୍ରଚାର ଓ ପ୍ରସାର ପାଇଁ ସେ ବହୁ ବିଦ୍ୱାନ ଗବେଷକଙ୍କୁ ବାରମ୍ବାର ଆମନ୍ତ୍ରଣ କରି ଉପାଦେୟ ଆଲୋଚନାଚକ୍ରମାନ ଆୟୋଜନ କରୁଥିଲେ । ଏଭଳି ଦୃଷ୍ଟାନ୍ତ ଓଡ଼ିଶା କାହିଁକି ଭାରତରେ ବିରଳ । ପୁନଶ୍ଚ ସେହି ଗବେଷଣାତ୍ମକ ଉଚ୍ଚକୋଟିର ପୁସ୍ତକଗୁଡ଼ିକ ଅତୁଳନୀୟ ତଥ୍ୟ ସମ୍ପଦରେ ଭରା । କାଳକାଳକୁ ଏହା ଉତ୍କଳୀୟ ସାଂସ୍କୃତିକ ବିଭବର ପ୍ରାମାଣିକ ଗ୍ରନ୍ଥ ହୋଇ ରହିଛି ଓ ରହିବ ଏଥିରେ ସନ୍ଦେହ ନାହିଁ । ସ୍ୱାଧ୍ୟାୟ ତଥା ନୀତିନିଷ୍ଠ ଗବେଷଣା ତାଙ୍କ ଜୀବନର ଧ୍ୟେୟ ଥିଲା । ସଂସ୍କୃତି, ସାହିତ୍ୟ ବା ଐତିହ୍ୟ ସମ୍ପର୍କରେ କିଛି ପ୍ରଶ୍ନବାଚୀ ମନରେ ଉଠିଲେ ପୂଜ୍ୟ କାହ୍ନୁ ଭାଇନାଙ୍କ ପାଖକୁ ସମସ୍ତେ ଧାଇଁ ଯାଉଥିଲେ ଓ ସଂଶୟମୁକ୍ତ ହେଉଥିଲେ । କାରଣ ସେ ଥିଲେ ଜ୍ଞାନ ମନ୍ଥନରେ ନିତ୍ୟଯୁକ୍ତ ଜ୍ଞାନସାଧକ । କେତେ ବିଦ୍ୱାନ ତାଙ୍କ ଅଧିନରେ ଗବେଷଣା କରି କୃତିତ୍ୱ ଅର୍ଜନ କରିଛନ୍ତି, କେତେ କବି, ଲେଖକ, ଦାର୍ଶନିକ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରି ଆଜି ଜ୍ଞାନ ରାଜ୍ୟରେ ସ୍ୱଚ୍ଛନ୍ଦରେ ବିଚରଣ କରୁଛନ୍ତି । ସମସ୍ତେ ତାଙ୍କ ବିୟୋଗରେ ମର୍ମାହତ । ଆଦିବାସୀଙ୍କ ଠାରୁ ଆରମ୍ଭ କରି ସଂସ୍କୃତି, ଧର୍ମ ଓ ଦର୍ଶନ ଏ ତ୍ରିଧାରାର ତ୍ରିବେଣୀ ସଂଗମ ରଚନା ମାଧ୍ୟମରେ ତାଙ୍କ ଭିତରେ ହିଁ ଘଟିଥିଲା । ସଂସ୍କୃତି ଜୀବନର ତ୍ରିବେଣୀ ଧାରା ବୁହାଇ ଦେଇଥିଲା । ପ୍ରତିଟି ମୁହୂର୍ତ୍ତ ବିନିଯୋଗ କରି ସେ ଆନ୍ତର୍ଜାତୀୟ ଭାଷାରେ ଇଂରାଜୀରେ ଉତ୍କଳୀୟ ସଂସ୍କୃତି, ଜଗନ୍ନାଥ ଚେତନା ତଥା ଓଡ଼ିଆ ସାହିତ୍ୟର ବିଭିନ୍ନ ଧାରାର ତଥ୍ୟଯୁକ୍ତ ଇତିହାସ, ଭାରତୀୟ ବାଙ୍ମୟରେ ଓଡ଼ିଆ ସାହିତ୍ୟର ସ୍ଥାନ, ଆଦି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗକୁ

ଉପସ୍ଥାପନ କରିଯାଇଛନ୍ତି । ବଙ୍ଗଳା ଓ ହିନ୍ଦୀ ଭାଷାରେ ମଧ୍ୟ ଏହା ଅନୁଦିତ । ସାଂସ୍କୃତିକ ଜଗତ ସହ ଓଡ଼ିଆ ସଂସ୍କୃତିକୁ ନିବିଡ଼ ଭାବରେ ନିଜସ୍ୱ ଚେଷ୍ଟାରେ ସେ ସୁପରିଚିତ କରି ସମୃଦ୍ଧ କରିଛନ୍ତି । ସେ ଥିଲେ ସାଂସ୍କୃତିକ ସେତୁ । ବହୁ ସମାଲୋଚନା ପୁସ୍ତକ ରଚନା କରିବା ସଂଗେ ସଂଗେ ଜଣେ ସୁଦକ୍ଷ ଅନୁବାଦକ ଭାବେ ଓଡ଼ିଆ ସାହିତ୍ୟରେ ଡଃ ମିଶ୍ରଙ୍କର ସ୍ୱାକ୍ଷର ଚିରକାଳ ଅମ୍ଳାନ ରହିଥିବ । ସେ ଯେ କେତେ ଭାବରେ ବିଶ୍ୱ ସଂସ୍କୃତିକୁ ସମୃଦ୍ଧ କରିବାର ସଫଳ ଉଦ୍ୟମ ଜୀବନର ଶେଷ କ୍ଷଣ ପର୍ଯ୍ୟନ୍ତ ଜାରି ରଖିଥିଲେ, ତାହା ତାଙ୍କ ଜୀବନକୁ ଅନୁଶୀଳନ କରୁଥିବା ବ୍ୟକ୍ତି ହିଁ ଜାଣେ । ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ ଯେ ନିଜ ଉଦ୍ୟମରେ ଇଂରେଜୀ ଭାଷାର ବହୁ ଉପାଦେୟ ପୁସ୍ତକ ସବୁ ସେ ମାତୃଭାଷା ଓଡ଼ିଆରେ ଅନୁବାଦ କରି କିଭଳି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରି ଯାଇଛନ୍ତି । ତାଙ୍କ ସମ୍ପାଦନାରେ ବୌଦ୍ଧ ଧର୍ମ, ଶକ୍ତି, ଜଗନ୍ନାଥ ସଂସ୍କୃତି, ମହାଭାରତ, ଭାଗବତ, ରାମାୟଣ, କବି ଜୟଦେବ ଧର୍ମଶାସ୍ତ୍ର, ମହିମାଧର୍ମ ପ୍ରଭୃତି ବହୁ ଗବେଷଣାତ୍ମକ ପୁସ୍ତକ ଇଂରେଜୀ ଭାଷାରେ ପ୍ରକାଶିତ ହୋଇଛି ଏବଂ ବିଶ୍ୱର ବହୁଭାଷାରେ ଅନୁଦିତ ହୋଇ ଉଚ୍ଚ ପ୍ରଶଂସିତ ହୋଇପାରିଛି । 'ଉତ୍କଳୀୟ ସଂସ୍କୃତି ସଂସ୍ଥାନ' ମାଧ୍ୟମରେ ପ୍ରଫେସର ମିଶ୍ର ଅଠରଟି ଅତି ଉଚ୍ଚକୋଟିର ଆଲୋଚନାଚକ୍ର ଆୟୋଜନ କରିଛନ୍ତି । ଯାହା ପ୍ରାଚ୍ୟ ପାଶ୍ଚାତ୍ୟ ସଂସ୍କୃତି ମଧ୍ୟରେ ଭାବ ବନ୍ଧନକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ବହୁ ଲୁକ୍କାୟିତ ତଥ୍ୟକୁ ଉତ୍ତରକାଳ ପାଇଁ ପ୍ରଦାନ କରି ଯାଇଛନ୍ତି । ଓଡ଼ିଆ ସାହିତ୍ୟ ତାଙ୍କ ନିକଟରେ ଋଣୀ । ମୋ ବିଚାରରେ ଜଣେ ଏକାନ୍ତ ନିଷ୍ଠାପର ଜ୍ଞାନଦୀପ୍ତ ସାଧକ ଭାବରେ ଓଡ଼ିଶାର ଗବେଷଣା କ୍ଷେତ୍ରକୁ ସେ ଯାହା ଦେଇଯାଇଛନ୍ତି ତାହା ବାସ୍ତବରେ ଅତୁଳନୀୟ । ସେହି ପରମ୍ପରା ଯଦି ତାଙ୍କର ସୁଯୋଗ୍ୟ ଶିଷ୍ୟମାନଙ୍କ ଦ୍ୱାରା ଅନୁସୃତ ହୁଏ, ତେବେ ତାହା ହିଁ ହେବ ପରମ ଶ୍ରଦ୍ଧେୟ ଗବେଷକ ଗୁରୁ ଡକ୍ଟର କାହ୍ନୁ ମିଶ୍ରଙ୍କ ପ୍ରତି ଉତ୍ତର କାଳର ଯଥାର୍ଥ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି । ପ୍ରଚାର ସର୍ବସ୍ୱ ଯୁଗରେ ଜଣେ ଜ୍ଞାନ ତପସ୍ୱୀ ଯେଉଁଭଳି ଅଭିନିବେଶ ସହକାରେ ଜ୍ଞାନ ଭଣ୍ଡାରରୁ ରତ୍ନ ଆହରଣ କରି ଜ୍ଞାନ ପିପାସୁ ଉତ୍ତର କାଳ ପାଇଁ ସାଇତି ଦେଇ ଯାଇଛନ୍ତି ତାହାର ସୁବିନିଯୋଗ ହେଲେ ହିଁ ପୂଜ୍ୟ ଡଃ ମିଶ୍ରଙ୍କର ନିରଳସ ନିଷ୍ଠାପର ସାଧନା ଫଳପ୍ରସୂ ହେବ । ଆନ୍ତର୍ଜାତିକ କ୍ଷେତ୍ରରେ ଜଗନ୍ନାଥ ସଂସ୍କୃତିକୁ ନେଇ ସୁପ୍ରତିଷ୍ଠିତ କରିବାରେ ସେ ଥିଲେ ଅଗ୍ରଣୀ । ଜୟଦେବ ଯେ ଓଡ଼ିଆ କବି ତାହା ସେ ପ୍ରମାଣ କରିଛନ୍ତି । ବହୁ ବିଶ୍ୱବିଦ୍ୟାଳୟ, ବହୁ ଅନୁଷ୍ଠାନ ତାଙ୍କର ଗବେଷଣାତ୍ମକ ଉଚ୍ଚକୋଟିର କାର୍ଯ୍ୟ ପାଇଁ ତାଙ୍କୁ ବହୁ ଭାବରେ ସମ୍ମାନିତ କରିଛନ୍ତି । ଆମେରିକାରେ ମଧ୍ୟ ଜଗନ୍ନାଥ ସଂସ୍କୃତି ସମ୍ପର୍କରେ ଭାଷଣ ଦେଇ ସେ ଉଚ୍ଚ ପ୍ରଶଂସିତ ତଥା ସମ୍ମାନିତ ହୋଇଛନ୍ତି । ଏଭଳି ଜଣେ ସାହିତ୍ୟ ସଂସ୍କୃତି ଗବେଷକ ଓ ମନୀଷୀ ଆମ 'ସମାଜ'

ପରିବାରର ଏକାନ୍ତ ଆତ୍ମୀୟ ଥିଲେ । ସେ ସତ୍ୟବାଦୀ ସଂସ୍କୃତିରେ ବିଶ୍ୱାସ କରୁଥିଲେ । ସରଳ ନିରାଡମ୍ବର ଜୀବନ ଯାପନ କରି ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ସହ ନିଜକୁ ମିଳାଇ ଦେଇଥିଲେ । ଓଡ଼ିଆ ସାହିତ୍ୟ କାହିଁକି ଭାରତୀୟ ବାଙ୍ମୟରେ ସେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ତାଙ୍କ ଭଳି ପରମ ହିତୈଷୀ, ମୂଲ୍ୟବୋଧରେ ବିଶ୍ୱାସ କରୁଥିବା ଆଦର୍ଶ ଶିକ୍ଷକ, ମହିଳାମାନଙ୍କ ଅନ୍ତର୍ନିହିତ ପ୍ରତିଭାକୁ ପ୍ରୋତ୍ସାହନ ଦେବାରେ ସତତ୍ ଆଗ୍ରହୀ, ସେହି ପ୍ରବୀଣ ଅଧ୍ୟାପକ ଏ ଯୁଗରେ ନାହାନ୍ତି କହିଲେ ଚଳେ । ସେ ମୋ ପିତା (ବାବୁଜୀଙ୍କର) ଓ ସମାଜର ପରମ ବନ୍ଧୁ, ଯଥାର୍ଥ ହିତୈଷୀ ଥିଲେ । ତାଙ୍କର ପ୍ରେରଣାରେ ଇଂରାଜୀ ଭାଷାରେ ଗବେଷଣାତ୍ମକ ପ୍ରବନ୍ଧ ଲେଖିବାର ଦୁଃସାହସ ମୁଁ କରିଥିଲି ଓ ଆଶୀର୍ବାଦ ତାଙ୍କଠାରୁ ପାଇଥିଲି । ଅଧ୍ୟୟନ, ଅଧ୍ୟାପନା, ଆଧ୍ୟାତ୍ମିକ ଜୀବନ ନିର୍ବାହ ତାଙ୍କ ଜୀବନର ବିଶିଷ୍ଟ ତ୍ରୟ ଅଧ୍ୟାୟ ଥିଲା । ସେ ଚିରକାଳ ସ୍ମରଣୀୟ ବ୍ୟକ୍ତିତ୍ୱ ହୋଇ ସାହିତ୍ୟ ଜଗତରେ ରହିବେ । ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ସାହିତ୍ୟ ସଂସ୍କୃତିର ଏହି ମହାରଥୀଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଆମର ବିନମ୍ର ଶ୍ରଦ୍ଧାଞ୍ଜଳି ଓ ପ୍ରଣତି ।

■■

# ସେ ଏକ ମହାନ ବ୍ୟକ୍ତିତ୍ୱ

*- ସଚ୍ଚିଦାନନ୍ଦ ମିଶ୍ର*

୧୯୬୨ ମସିହା ଖରାଦିନ । ସେତେବେଳେ ମୁଁ ରାଉରକେଲାରେ ଗୋଟିଏ ବିଦେଶୀ ଅନୁଷ୍ଠାନରେ କାମ କରୁଥାଏ । ରାଉରକେଲା ଇସ୍ପାତ କାରଖାନାର ସମ୍ପ୍ରସାରଣ ହେବାର ଯୋଜନା ଚାଲିଥାଏ । ଆମ ଅନୁଷ୍ଠାନ ସହିତ କାରଖାନାର କର୍ତ୍ତୃପକ୍ଷଙ୍କର ଆଲୋଚନା ଚାଲିଥାଏ । ଆମ ଅନୁଷ୍ଠାନର କେତେକ ବିଦେଶୀ ଉଚ୍ଚ ପଦାଧିକାରୀ ଆସିଥାଆନ୍ତି । ମୁଁ ଏଇ ଅନୁଷ୍ଠାନର ଏକମାତ୍ର ଭାରତୀୟ ଯେ କି ଏଇ ଆଲୋଚନାରେ ଭାଗ ନେଉଥାଏ । ମୋତେ ଭୀଷଣ ଜର ହେଲା । କିନ୍ତୁ ଛୁଟି ନେବାର ଅବସର ନଥାଏ । ଔଷଧ ଖାଇ ପ୍ରତ୍ୟେକ ଦିନ ମିଟିଂ ଯିବା, ମିଟିଂର ମିନିଟ୍ ସବୁ ଲେଖିବା ଓ ପରେ ତା ଅନୁଯାୟୀ ନିଜ ଭିତରେ ଆଲୋଚନା କରି ପରବର୍ତ୍ତୀ ପନ୍ଥା ନିର୍ଦ୍ଧାରଣ କରାଯାଉଥାଏ । ଟିକିଏ ବି ହେଲେ ଫୁରୁସତ ନଥାଏ । ଏହି ସମୟରେ ଇସ୍ପାତ କାରଖାନାର ଜଣେ ଉଚ୍ଚ ପଦାଧିକାରୀ ମୋତେ ମଧ୍ୟାହ୍ନ ଭୋଜନ ପାଇଁ ଡାକିଲେ । ତାଙ୍କୁ ତ ମନା କରି ହେବ ନାହିଁ । ଘଣ୍ଟାଏ ବିଶ୍ରାମ ସମୟରେ ତାଙ୍କ ଘରକୁ ଆସିଲି । ସେଠାରେ ଦେଖାହେଲା ଅଧ୍ୟାପକ କାହ୍ନୁଚରଣ ମିଶ୍ରଙ୍କ ସାଙ୍ଗରେ । ଶ୍ୱେତ ଖଦିବସ୍ତ୍ର ପରିହିତ ଅତି ସୁନ୍ଦର ବ୍ୟକ୍ତିତ୍ୱ । କଥା କହିବାରେ ସୁଢ଼ଙ୍ଗ ଏବଂ ସ୍ନେହରେ ଲୋକଙ୍କୁ ଆପଣା କରି ନେବାରେ ଅପୂର୍ବ ଉତ୍ସାହ । ଏହାହିଁ ଲକ୍ଷ୍ୟ କରିଥିଲି । ମୋ ପ୍ରତି ତାଙ୍କର କଣ ଧାରଣା ହୋଇଥିବ ବୁଝିପାରିଲି ନାହିଁ । ତେବେ ବି ମୋତେ ଜାମାତା କରିବା ପାଇଁ ମନସ୍ଥ କଲେ ବୋଲି ପରେ ବୁଝିଲି । ଏହା ହେଲା ପ୍ରଥମ ପରିଚୟ ।

କିଛିଦିନ ପରେ ମୋର ବିବାହ ହୋଇଗଲା । ଜାଣିଲି ସେ କୋଲକାତାରେ ଥାଇ ଜଗନ୍ନାଥଙ୍କ ଉପରେ ଗବେଷଣା କରୁଛନ୍ତି । ଅଫିସ କାମରେ କେବେ କେବେ କୋଲକାତା ଯିବାକୁ ହେଉଥିଲା କିମ୍ବା ଦିଲ୍ଲୀ ଯିବା ବାଟରେ କଲିକତା ଯିବାକୁ ପଡୁଥିଲା । ସେଠାରେ ତାଙ୍କ ସାଙ୍ଗେ ଦେଖାହୁଏ । ସେ ତାଙ୍କ କାମ ବିଷୟରେ କହିବସନ୍ତି । ମୋର ସାହିତ୍ୟ, ସଂସ୍କୃତି କିମ୍ବା ଧର୍ମଶାସ୍ତ୍ର ସମ୍ବନ୍ଧରେ କୌଣସି ଜ୍ଞାନ ନଥିଲା । କିନ୍ତୁ ସେ ଏତେ ସରଳ ଭାଷାରେ ସବୁ ବୁଝାଇ ଦିଅନ୍ତି ଯେ ଲାଗେ ଏସବୁ କେତେ ସହଜ ।

କିଛିଦିନ ପରେ ସେ ଡି.ଫିଲ କରି କଟକ ଫେରିଯାଆନ୍ତି । ଛୁଟିରେ ଘରକୁ ଗଲେ

ଦେଖାହୁଏ । ଘରକୁ ଯେବେ ଗଲେ ଅନେକ ଲୋକ । କେତେ କିଏ ଗାଆଁ ମାନଙ୍କରୁ ଆସିଥାଆନ୍ତି । କାହାକୁ କେଉଁ ଡାକ୍ତରଙ୍କ ପାଖକୁ ନେବାକୁ ହେବ । ତାରି ଭିତରେ ସମୟ କରି ଅଧ୍ୟୟନ କରନ୍ତି । କଲେଜ ଯାଆନ୍ତି । ପାଠ ପଢ଼ାନ୍ତି । ଥରେ ମୁଁ ପତ୍ନୀଙ୍କୁ କହିଲି ଆଉ ମୁଁ ତୁମ ଘରେ ରହିବି ନାହିଁ । ମୋତେ ଲାଗୁଛି ଏଇଟା ଘର ନୁହେଁ ଗୋଟାଏ ଧର୍ମଶାଳା । ତୁମେମାନେ କିଭଳି ଚଳୁଛ ବୁଝିପାରୁ ନାହିଁ । ମୋତେ ତ ଶ୍ୱାସରୁଦ୍ଧ ଲାଗୁଛି । ଏହା ଥିଲା ସେ ଘର । ଯେଉଁଠାରେ କେଉଁ ଦୂରର ଲୋକ ରୋଗ ବୈରାଗରେ ଆଶା ନେଇ ଆସନ୍ତି ବଡ଼ ବଡ଼ ଡାକ୍ତରଙ୍କୁ ଦେଖାଇବାକୁ, ଯାହାଙ୍କୁ ସହଜରେ ଦେଖା ମିଳନ୍ତା ନାହିଁ । ଏମାନଙ୍କୁ ଛାଡି ଦେଲେ ଘରେ ଆଉ ଦୁଇ ତିନିଜଣ ଲୋକ ରହି କଲେଜରେ ପାଠ ପଢୁଥିଲେ । ପାଠ ସରିଲେ ଚେଷ୍ଟା ଚାଲିବ କେଉଁଠାରେ ଚାକିରି ସଂସ୍ଥାନ ପାଇଁ । ତାରି ଭିତରେ ପ୍ରତ୍ୟେକ ପିଲାଙ୍କର ସ୍ୱାସ୍ଥ୍ୟ ବିଷୟରେ ସଯତ୍ନ ରହିବା, କାହାର କଣ ଟିକିଏ ହେଲେ ଶରତ ବାବୁ କିମ୍ୱା ଆଉ ବଡ଼ ଡାକ୍ତରମାନଙ୍କ ପାଖକୁ ନେବା ଚାଲିଥାଏ । ମୋତେ ଆଶ୍ଚର୍ଯ୍ୟ ଲାଗେ ଏହି ମଧ ବୟସ୍କ ମାନଙ୍କର କେତେ ଶକ୍ତି । ଦିନେ ହେଲେ ରାଗିବା କିମ୍ୱା ହତୋତ୍ସାହ ହେବା ଦେଖିବାକୁ ପାଏ ନାହିଁ ।

ଚାକିରି ଜୀବନରେ ଅନେକ ଘାତ ପ୍ରତିଘାତ ଆସେ । ବେଳେବେଳେ ନିଜକୁ ଖୁବ୍ ହତୋତ୍ସାହ ଲାଗେ । ମୋ ଚାକିରି ଜୀବନରେ ସେମିତି ଅନେକ ଘଟଣା ଘଟିଛି । ଥରେ ତାଙ୍କୁ କହୁ କହୁ ଏ ବିଷୟରେ କହି ପକାଇଲି । ସଂଗେ ସଂଗେ ନିଜ ଉଦାହରଣ ଦେଇ କହିଲେ "ମୋ ଜୀବନରେ ଏଭଳି ମଧ ଅନେକ ଘଟଣା ଘଟିଛି । ମୁଁ କାହାର ଅନୁକମ୍ପା ମାଗିନାହିଁ । ନିଜେ ଲଢ଼ିଛି, ତା' କରିବାକୁ ଶିଖ ।" ସେଇଦିନଠୁ ନିଜର କର୍ମସ୍ଥଳୀର ଘାତ ପ୍ରତିଘାତକୁ ନିଜେ ସମ୍ଭାଳି ନେଇଛି । କାହାର ଦ୍ୱାରସ୍ଥ ହେବାକୁ ପଡ଼ିନାହିଁ ।

କଟକରୁ ବଦଳି ହୋଇ ସେ ଭୁବନେଶ୍ୱର ଆସିଲେ, ସେଠାରୁ ଗଲେ ବ୍ରହ୍ମପୁର । ତାଙ୍କର ବ୍ରହ୍ମପୁର ରହଣୀଟା ଆମର ଖୁବ୍ ଖୁସିର ସମୟ । ଛୁଟିରେ ଆସିଲେ ଆଉ ଘରେ ରୋଗୀ ନଥାନ୍ତି । ତାଙ୍କ ସହିତ ମୋତେ ସମୟ ମିଳେ । ଯଦିଓ ଘଣ୍ଟା ଘଣ୍ଟା ଧରି ତାଙ୍କ ସହିତ ମୋର ଏକା କଟିଛି, ଥରେ ହେଲେ ପାରିବାରିକ କଥା ଆମେ କଥାବର୍ତ୍ତା କରିନାହୁଁ । ଆମର ଆଲୋଚନା ଚାଲେ ସାହିତ୍ୟର ବିଭିନ୍ନ ଦିଗ ଉପରେ, କିମ୍ୱା ଓଡ଼ିଶାରେ ଜଗନ୍ନାଥ ଧର୍ମ ବୌଦ୍ଧ ଧର୍ମ, ମହିମାଧର୍ମ ଉପରେ । ନିଜ ଜୀବନ ପଥରେ ସାହିତ୍ୟ ପ୍ରତି ଅନୁରାଗ ତାଙ୍କଠାରୁ ହିଁ ପାଇ ଆସିଛି । ତାଙ୍କର ପାଠାଗାରରେ ଅନେକ ଉପାଦେୟ ପୁସ୍ତକ ଥାଏ । ଛୁଟି ସମୟରେ ସେସବୁ ପଢ଼ିବା ପାଇଁ ଯଥେଷ୍ଟ ସମୟ ମିଳେ । ଏଇ ସମୟରେ ମୋର ଓଡ଼ିଆ ଭାଷାରେ ବହି ପଢ଼ିବା ଗୋଟାଏ ନିଶା ହୋଇଗଲା ।

ଭୁବନେଶ୍ୱର ଆସିବା ପରେ ସେ ଓଡ଼ିଶା ସଂସ୍କୃତି ପରିଷଦ ଗଢ଼ିଲେ । ପ୍ରତ୍ୟେକ ବର୍ଷ କର୍ମଶାଳା ମାନ କରାଇଲେ । ଏତେବେଳକୁ ମୋର କାର୍ଯ୍ୟର ଭାର ବଢ଼ିଯାଇଥାଏ । ସମୟ ମିଳେନାହିଁ । ଅବସର ପରେ ଆମେ ଆସି ଭୁବନେଶ୍ୱରରେ ରହିଲୁ । ସେତିକିବେଳକୁ ତାଙ୍କର ସେମିନାରରେ ଭାଗ ନେବାକୁ ସୁଯୋଗ ମିଳିଲା । ପ୍ରଥମେ ଷ୍ଟେସନ ଯାଇ ବାହାରର ଅତିଥିମାନଙ୍କୁ ପାଛୋଟି ଆଣି ପାନ୍ଥନିବାସରେ ରଖାଇବା, ପରେ ଆଲୋଚନା ଚକ୍ରରେ ବସି ପଣ୍ଡିତ ବ୍ୟକ୍ତିମାନଙ୍କର ଗବେଷଣା ଭରା ବକ୍ତବ୍ୟ ଶୁଣିବା- ଏସବୁ ଭିତରେ ଲାଗେ ତାଙ୍କ ଜ୍ଞାନର ପରିସର କେତେ ବ୍ୟାପ୍ତ । କେବେକେବେ ସଂଧ୍ୟାବେଳେ ତାଙ୍କ ପାଖକୁ ଗଲେ ଦେଖେ ସେ ବସିଥାଆନ୍ତି ପୋର୍ଟିକୋ ଉପରେ ବେତ ଚେୟାର ପକାଇ । ମୁଁ ଯାଇ ପାଖରେ ବସେ । ତାଙ୍କର ପୁରୁଣା ଜୀବନ ବିଷୟରେ କହନ୍ତି । ଦୁଇଟି କଥା ମୋର ମନରେ ଗଭୀର ରେଖାପାତ କରିଛି ।

ଯେତେବେଳେ ସେ ପାରଳାଖେମୁଣ୍ଡି କଲେଜରେ ଅଧ୍ୟାପକ ହୋଇ ଯୋଗ ଦେଲେ ସେତେବେଳେ ସ୍ୱାଧୀନତା ଆସିନଥାଏ । ରାଜା ରାଜୁଡ଼ା ସମୟ । ଗଜପତି କୃଷ୍ଣଚନ୍ଦ୍ର ପାରଳାଖେମୁଣ୍ଡି ମହାରାଜା କଲେଜର ପ୍ରତିଷ୍ଠାତା । ସେ ନିୟମ କରିଥାଆନ୍ତି ଯେ ଅଧ୍ୟାପକମାନେ ସୁଟ୍‌ଟାଇ କିଂବା ପ୍ୟାଣ୍ଟ ଓ ଗଳାବନ୍ଧ କୋର୍ଟ ପିନ୍ଧି କଲେଜକୁ ଆସିବେ । କାହ୍ନୁଚରଣ ଜାତୀୟବାଦୀ, ଧୋତି, ପଞ୍ଜାବୀ ଓ ଚାଦର ପରିହିତ । ଏକଥା ମହାରାଜାଙ୍କ କାନକୁ ଗଲା ସେ ଡକାଇଲେ । କହିଲେ କାହ୍ନୁଚରଣଙ୍କୁ ସେହି ସୁଟ୍‌ଟାଇ କିମ୍ବା ଗଳାବନ୍ଧ କୋର୍ଟ ପିନ୍ଧିବା ପାଇଁ । ସେ ଉତ୍ତର ଦେଇଥିଲେ "You have appointed me for teaching or for my dress. If you insist on the dress code I may not have any alternative than to leave the job. ବେଶ ଏତିକି । ମହାରାଜା ଖୁସି ହୋଇ କହିଲେ ସେ ନିଜ ଇଚ୍ଛାମତେ ଧୋତି କୁର୍ତ୍ତା ପିନ୍ଧିପାରିବେ ।

କଲେଜ ହଷ୍ଟେଲରେ ସେ ସୁପରିଟେଣ୍ଡେଣ୍ଟ ଥିଲେ । ହଷ୍ଟେଲରେ ସାଧାରଣ ନିୟମ ଥିଲା ୨୬ଟି ଫ୍ରି ବୋର୍ଡର ପାଇଁ । ସେଥିରୁ ୧୩ ଜଣ ଥିବେ ତେଲୁଗୁ ଛାତ୍ର ଓ ୧୩ ଜଣ ଓଡ଼ିଆ ଛାତ୍ର । ବର୍ଷେ ଫ୍ରି ବୋର୍ଡର ନେଲାବେଳେ ୧୨ ଜଣ ତେଲୁଗୁ ଓ ୧୪ ଜଣ ଓଡ଼ିଆ ଛାତ୍ରଙ୍କୁ ନିଆଗଲା । ଏ କଥା ମଧ୍ୟ ମହାରାଜାଙ୍କ କାନକୁ ଗଲା । ସେ ଡକାଇଲେ କହିଲେ You have deviated from the set rules, for me oriya and telegues are equal. Therefore, I had decided to have 13 each from Oriya or Telegus to get free boardership. କାହ୍ନୁଚରଣ ଉତ୍ତର ଦେଇଥିଲେ ଏବର୍ଷ ବାଛିଲା ବେଳେ ୧୩ ଜଣ ଓଡ଼ିଆ ଓ ୧୨ ଜଣ ତେଲୁଗୁ ପିଲା ବଛାଗଲେ । ତ୍ରୟୋଦଶ

ତେଲୁଗୁ ପିଲାଟି ଅତ୍ୟନ୍ତ ଦୁଷ୍ଟ ଓ ଭୁଲ ଛାତ୍ର ନୁହେଁ । ଆପଣ ଚାହାନ୍ତି ତ ତାକୁ ମୁଁ ବାଛିବି । କିନ୍ତୁ ଏହା ମୋର ବିବେକ କହୁ ନାହିଁ । ମହାରାଜ ହସି ହସି କହିଲେ I am happly you have correctly chosen the boys. ଏପରି ନିର୍ଭିକ ବ୍ୟକ୍ତିତ୍ୱ ଏ ଯୁଗରେ ବିରଳ । ଏ କଥା ପିଲାଙ୍କୁ କହିଲେ ପରୀ ଗପ ବୋଲି ଭାବିବେ ।

ଏହିପରି ବ୍ୟକ୍ତି ସଂଗେ ସମୟ କଟାଇବା ନିଜର ଭାଗ୍ୟ ମନେ କରିଛି । ସେ ଚାଲିଗଲେ । ମୋର ନୈତିକ ସାହସ ଦେବା ଲୋକ ଆଉ ନାହାନ୍ତି ।

ତାଙ୍କର ଆତ୍ମା ଶାନ୍ତିରେ ଥିବ ଏଥିରେ ମୋର କୌଣସି ସନ୍ଦେହ ନାହିଁ । ତେବେ ବି ଜଗନ୍ନାଥଙ୍କ ପାଖରେ ତାଙ୍କ ପାଇଁ ମୋର ବିନମ୍ର ପ୍ରଣତି ।

■■

# ଅମୃତର ସ୍ମୃତି

**- ଡାକ୍ତର ଦାଶରଥି ଦାଶ**

ତାଙ୍କର ବିଶାଳତାର କଳନା କରିବା କଠିନ । ଜୀବନର ପ୍ରତ୍ୟେକଟି ବିଭାଗରେ ତାଙ୍କର ବୈଶିଷ୍ଟ୍ୟ ବାରି ହୋଇପଡ଼େ, ଧୀର ଅଥଚ ଚଳଚଞ୍ଚଳ, ତେଜସ୍ୱୀ ଅଥଚ କୋମଳ ଏବଂ ସୀମିତ ପାର୍ଥିବ ସମ୍ବଳ ଯୁକ୍ତ ଅଥଚ ବିପୁଳ ଦୈବୀ ସମ୍ପଦର ଅଧିକାରୀ । ଏହି କୃଶକାୟ ସ୍ମିତହାସଭରା, ଦରଦୀ, ଶୁଭ୍ର ଖଦଡ଼ ଧୋତି- ପଞ୍ଜାବି ଚାଦର ପରିହିତ ବିଜ୍ଞ ଓ ବିରଳ ବ୍ୟକ୍ତିତ୍ୱଙ୍କ ସାନ୍ନିଧ୍ୟର ସୁଯୋଗ ମିଳିଥିଲା ଅତି ଅନ୍ତରଙ୍ଗ ଭାବରେ । ପୂଜ୍ୟ ଭାଇନା ରୂପରେ ତାଙ୍କୁ ନିବିଡ ଭକ୍ତି ଓ ଶ୍ରଦ୍ଧାରେ ଏପରି ଗ୍ରହଣ କରି ନେଇଥିଲି ଯେ ତାଙ୍କର ବାସ୍ତବ ପରିଚୟ ପାଇବାକୁ ବହୁତ ଡେରି ହୋଇଯାଇଥିଲା । ସେ ଦୁଃଖଦ ବିଚ୍ଛେଦର କାଳ ଯେତିକି ଲମ୍ବି ଲମ୍ବି ଯାଉଛି ତାଙ୍କର ଅମର ଗୁଣରାଜିର ଆଭା ସେତିକି ଉଜ୍ଜ୍ୱଳତର ହୋଇ ଉଠୁଛନ୍ତି ।

ଏହି ନିରଳସ କର୍ମଯୋଗୀ ଜଣେ ତପୋସିଦ୍ଧ ସାଧକ ଭାବରେ ଆମ୍ଭମାନଙ୍କ ଗହଣରେ ବିଚରଣ କରି ଚାଲିଗଲେ ଅଥଚ ସ୍ୱଳ୍ପତା ହେତୁ ଆମେ ତାଙ୍କର ସେ ପରିଚୟ ବୁଝିପାରିଲୁ ନାହିଁ । ସମାଜର ବିଭିନ୍ନ ବର୍ଗର ବ୍ୟକ୍ତି ବିଶେଷ ଯିଏକି ତାଙ୍କ ସମ୍ପର୍କରେ ଆସିଛନ୍ତି, ଯଥାଯୋଗ୍ୟ ମର୍ଯ୍ୟାଦା ସହ ତାଙ୍କଠାରୁ ନିଷ୍କପଟ, ମଧୁର ଓ ଶ୍ରେୟ ବ୍ୟବହାର ଲାଭ କରିଅଛନ୍ତି । ଆବଶ୍ୟକ ସ୍ଥଳରେ ଅନ୍ୟର ସୁବିଧା ପାଇଁ ସେ ନିଜର କର୍ମପ୍ରଣାଳୀର ପୁନର୍ବିନ୍ୟାସ କରିଛନ୍ତି ।

ରୁଚିପୂର୍ଣ୍ଣ ସରଳ ବ୍ୟବହାର, ଆତ୍ମ ସନ୍ତୋଷ ଭାବ ଓ ସୌମ୍ୟତ୍ୱ ତାଙ୍କ ବ୍ୟବହାରର ଏକ ବିଶେଷ ଦିଗ ଥିଲା । ଦୀର୍ଘଦିନ ତାଙ୍କ ସହ ଘନିଷ୍ଠ ସମ୍ପର୍କରେ ରହିବା ସମୟରେ କାହା ପ୍ରତି ସେ ଯତ୍ ସାମାନ୍ୟ ରୁକ୍ଷ ବା କପଟ ବ୍ୟବହାର କରିବାର ମୋର ନଜରକୁ ଆସିନାହିଁ । ଅନ୍ୟପକ୍ଷରେ ଅନ୍ୟର ଦୁଃଖ କଷ୍ଟରେ ସେ ବିଚଳିତ ହୋଇ ପଡୁଥିଲେ ଏବଂ ଦୁଃଖଲାଘବର ଯଥା ସମ୍ଭବ ପ୍ରତି ବିଧାନ ଅବଲମ୍ବନ କରୁଥିଲେ । କାହା ପ୍ରତି କର୍କଶ ବ୍ୟବହାର କରିବା ତାଙ୍କ ରୁଚିବୋଧର ବିରୋଧୀ ଥିଲା । ଯାହାର କିଛି କାମକୁ ପସନ୍ଦ କରିପାରୁନଥିଲେ ତା ପ୍ରତି ସସ୍ମିତ ମୃଦୁସ୍ୱରର ସମ୍ବୋଧନ ଥିଲା 'ହତଭାଗା' ବୋଲି । ତେଣୁ ତାଙ୍କର ତଥା କଥିତ ନିନ୍ଦୁକ ମଧ୍ୟ ପ୍ରଶଂସକ ହୋଇଯାଉଥିଲେ । ତାଙ୍କୁ ଶ୍ରଦ୍ଧା କରୁଥିବା ଲୋକଙ୍କ ସଂଖ୍ୟା ଆଶାତୀତ ଭାବରେ ବହୁତ ଥିଲା ।

ସ୍ୱାଧୀନତାର ପୂର୍ବବର୍ତ୍ତୀ କାଳରେ ଏକ ନିମ୍ନ ମଧ୍ୟବିତ୍ତ ଯୌଥ ସନାତନୀ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରି ପରବର୍ତ୍ତୀ କାଳରେ କେବଳ ଶ୍ରେୟ ସଂସ୍କାରଗୁଡ଼ିକୁ ଆହରଣ କରି ଆତ୍ମବଳରେ ବଳୀୟାନ ହୋଇ ସ୍ୱୀୟ ବିକାଶ ମାର୍ଗରେ ସମାଜର ପରିସରକୁ ଚାଲିଆସିଲେ । ସତ୍ତ୍ୱଗୁଣ ସମ୍ପନ୍ନ ଏହି ଯୁବକଙ୍କ ଠାରେ ଚିତ୍ତର ସ୍ଥିରତା, ଧୃତି, ଉତ୍ସାହ ଓ ବିବେକବୁଦ୍ଧି ସୁବିକଶିତ ହୋଇଥିଲା ।

କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. (ଗୋଲଡ ମେଡାଲିଷ୍ଟ) ଡିଗ୍ରୀ ନେଇ ଯେତେବେଳେ ଆସିଲେ ସେ ଅଞ୍ଚଳର ମୁଷ୍ଟିମେୟ ଉଚ୍ଚ ଶିକ୍ଷିତଙ୍କ ମଧ୍ୟରେ ସେ ଏକ ବିଶେଷ ମୂଲ୍ୟବୋଧର ପ୍ରତୀକ ରୂପେ ବିବେଚିତ ହେଲେ । ସମାଜସେବା ଓ ଛାତ୍ର ଚରିତ୍ର ଗଠନ ପାଇଁ ସେ ସତତ ଆଗ୍ରହୀ ଥିଲେ ।

ଓଡ଼ିଶା ରିଲିଫ୍ ସମିତିର ଜଣେ ସକ୍ରିୟ ସଭ୍ୟ ଥାଇ ବହୁଳ ଅଞ୍ଚଳର ଦୁଃସ୍ଥ ଜନତାଙ୍କ ନିକଟକୁ ରିଲିଫ୍ ସାମଗ୍ରୀ ଧରି ଯିବାକୁ ସେ ଅସ୍ଥିର ହୋଇ ଉଠନ୍ତି । ଏପରି କେତେକ ଘଟଣାରେ ଦୀର୍ଘପଥ ପାଦରେ ଚାଲି ଚାଲି ଦୁଃଖୀ ଜନତାଙ୍କୁ ରିଲିଫ୍ ଦେବାବେଳେ ତାଙ୍କର ସହଯୋଗୀ ଭାବରେ ଯିବାର ସୁଯୋଗ ଲାଭ କରିଥିଲି । ଯେଉଁମାନଙ୍କ ପାଖକୁ ସାହାଯ୍ୟ ଯିବ ସେମାନଙ୍କୁ ହେୟ ଜ୍ଞାନ ନକରି ସମାସ୍କନ୍ଦ ତଥା ବେଦାନ୍ତସିକ୍ତ ବ୍ୟକ୍ତିତ୍ୱର ମର୍ଯ୍ୟାଦା ଦେଇ ସଙ୍କୁଳିବା ଉପରେ ସେ ଗୁରୁତ୍ୱ ଦେଉଥିଲେ ।

ପଟ୍ଟାମୁଣ୍ଡାଇ ମନ୍ମଥନାଥ ହାଇସ୍କୁଲର ପ୍ରଥମ ପ୍ରଧାନ ଶିକ୍ଷକ ତଥା ଜଣେ ପ୍ରତିଷ୍ଠାତା ସଭ୍ୟଭାବରେ ହାଇସ୍କୁଲରେ ଅଳ୍ପ ସମୟରେ ସେ ଛାତ୍ରମାନଙ୍କ ମଧ୍ୟରେ ତଥା ଜନସାଧାରଣରେ ଖୁବ୍ ଲୋକପ୍ରିୟ ହୋଇପଡ଼ିଲେ । ଉକ୍ତ ହାଇସ୍କୁଲର ମୂଳ ପ୍ରତିଷ୍ଠାତା ଶ୍ରୀ ସୁରେନ୍ଦ୍ରନାଥ ବୋଷ (ସୁରେନ ବାବୁ) ଜଣେ ସମର୍ପିତ କର୍ମଯୋଗୀ ଥିଲେ । ସେ ଭାଇନାଙ୍କୁ ଯଥେଷ୍ଟ ମର୍ଯ୍ୟାଦା ଓ ଗୁରୁତ୍ୱ ଦେଉଥିଲେ ।

ଭାଇନାଙ୍କର ଦୁଃଖୀରଙ୍କିଙ୍କ ପ୍ରତି ଗଭୀର ସମବେଦନାର ଫଳସ୍ୱରୂପ ତାଙ୍କର ବିଶାଳ ହୃଦୟର ଏକ ନିଭୃତ କୋଣରେ ମୋ ପାଇଁ ଏକ ସୁରକ୍ଷିତ ସ୍ଥାନ ମିଳିଯାଇଥିଲା । ସେ ଯେଉଁଠିକି ଯାନ୍ତି ବହୁତ ସମୟରେ ମୋତେ ସାଙ୍ଗରେ ନିଅନ୍ତି ଓ ନାନା ପ୍ରସଙ୍ଗରେ ଶିକ୍ଷା ଓ ପରାମର୍ଶ ଦିଅନ୍ତି । କାଞ୍ଚନ ସଙ୍ଗରେ କାଚ ମିଶିଲେ କାଚର ଗୌରବ ବଢ଼ିଯିବାର ପ୍ରତୀତି ହୁଏ । କାରଣ ସେତେବେଳେ ମୁଁ ମାଇନରର ସ୍କୁଲର ଜଣେ ଅକିଞ୍ଚନ ଛାତ୍ର ମାତ୍ର । ସବୁଶ୍ରେଣୀରେ ପ୍ରଥମସ୍ଥାନ ପାଉଥିବାରୁ ଭାଇନାଙ୍କର ମୋ ପ୍ରତି ଭାରି କରୁଣା ଓ ଶ୍ରଦ୍ଧା । ବେଳେବେଳେ ମୋର ଲେଖାର ପାଠକୁ ଅନ୍ୟ ଛାତ୍ରମାନଙ୍କୁ ଶୁଣାଇ ସେ ମନରେ ଆନନ୍ଦ ପାଆନ୍ତି ।

ପଟ୍ଟାମୁଣ୍ଡାଇରେ ଶିକ୍ଷକତା କରିବା ସମୟରେ ତାଙ୍କର ଶୁଭବିବାହ ସମ୍ପନ୍ନ ହେଲା । ଇଚ୍ଛାପୁର ଘରକୁ ସାକ୍ଷାତ କରିବାକୁ ଯାଇଥିବାବେଳେ ଭାଇନା ବଡ଼ଭାଇର ଶ୍ରଦ୍ଧା ବହନ କରି ପୂଜ୍ୟା ଭାଉଜଙ୍କ ସହିତ ମୋର ପରିଚୟ କରାଇ ଦେଇଥିଲେ । ଆଜିର ପରିଣତ ବୟସରେ ଓ ପରିବର୍ତ୍ତିତ ପରିବେଶରେ ଭାଉଜଙ୍କ ପ୍ରତି ମୁଁ ସ୍ନେହ ଶ୍ରଦ୍ଧା ଓ ଭକ୍ତି ଅକ୍ଷୁଣ୍ଣ ରଖିଛି ବୋଲି ବିଶ୍ୱାସ କରୁଛି ଏବଂ ଭାଉଜ ସେହି ସ୍ନେହ ମଧୁବୋଳା ଦୁଃଖସୁଖ ଆଳାପ ଆଲୋଚନାର ଧାରା ଅବ୍ୟାହତ ରଖି ମୋତେ କୃତାର୍ଥ କରି ଦେଇଛନ୍ତି ।

ଭାଇନାଙ୍କ ପଟ୍ଟାମୁଣ୍ଡାଇ ହାଇସ୍କୁଲରେ ରହଣି ଅଳ୍ପକାଳ ପାଇଁ ଥିଲା । ସେ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି କଲେଜରେ ଲେକଚରର ଭାବରେ ଯୋଗ ଦେଲେ । କର୍ମଯୋଗୀ ସୁରେନ୍ଦ୍ରନାଥ ବୋଷରାୟ, ସମାଜସେବୀ ସ୍ୱାଧୀନତା ସଂଗ୍ରାମୀ ବୃନ୍ଦାବନ ଚନ୍ଦ୍ର ତ୍ରିପାଠୀ ଓ ଭାଇନାଙ୍କ ସହଯୋଗ ଦ୍ୱାରା ଯେଉଁ ମହତ ଶକ୍ତିର ଉଦ୍ରେକ ହୋଇଥିଲା ପଟ୍ଟାମୁଣ୍ଡାଇ ସେ ସୁଯୋଗରୁ ବଞ୍ଚିତ ହେଲା । ପରେ ପରେ ସୁରେନବାବୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ଚକ୍ରାନ୍ତରେ ମ୍ରିୟମାଣ ହୋଇ ପଟ୍ଟାମୁଣ୍ଡାଇ ଛାଡି ଚାଲିଗଲେ । ଭାଇନାଙ୍କ ହୃଦୟରେ ପଟ୍ଟାମୁଣ୍ଡାଇ ପ୍ରତି ଥିବା ଦୁର୍ବଳତା ଅପୂରଣୀୟ ରହିଗଲା ।

ଉତ୍କଳ ବିଶ୍ୱବିଦ୍ୟାଳୟଙ୍କ ପରିଚାଳନାରେ ହୋଇଥିବା ୧୯୪୯ ମସିହାର ମାଟ୍ରିକ୍ୟୁଲେସନ ପରୀକ୍ଷାରେ ମନ୍ମଥନାଥ ହାଇସ୍କୁଲରୁ ମୁଁ ପ୍ରଥମ ଶ୍ରେଣୀ ପାଇ ପାସ କଲି । ଉକ୍ତ ପରୀକ୍ଷାରେ ସେ ହାଇସ୍କୁଲରୁ ଦ୍ୱିତୀୟ ଶ୍ରେଣୀରେ ୭ ଜଣ ଓ ତୃତୀୟ ଶ୍ରେଣୀରେ ତେର ଜଣ ଉତ୍ତୀର୍ଣ୍ଣ ହେବାର ସ୍ମରଣ ହେଉଛି । ସ୍କୁଲର ବିଶ୍ୱବିଦ୍ୟାଳୟ ପରୀକ୍ଷାଫଳ ପୂର୍ବ ଦୁଇ ତିନି ବର୍ଷ ବଡ଼ ଶୋଚନୀୟ ଥିଲା । ଏବର୍ଷ ସ୍କୁଲରୁ ଜଣେ ଛାତ୍ର ପ୍ରଥମ ଶ୍ରେଣୀ ପାଶ କଲା, କେହି ପରୀକ୍ଷାରେ ଫେଲ ହୋଇନାହାନ୍ତି- ଏ ଖବର ସ୍ଥାନୀୟ ଲୋକମାନଙ୍କୁ ଓ ହିତୈଷୀ ମାନଙ୍କୁ ବଡ଼ ଆନନ୍ଦ ଦେଇଥିଲା । ଭାଇନା ପାରଳାଖେମୁଣ୍ଡିରୁ ଏ ଖବର ପାଇ ସ୍କୁଲ କର୍ତ୍ତୃପକ୍ଷଙ୍କୁ ତଥା କୃତୀ ଛାତ୍ରଙ୍କୁ (କେହି ଛାତ୍ରୀ ନଥିଲେ) ମଧ ବଧାଇ ଜଣାଇଥିଲେ ।

ମାଟ୍ରିକ ପାଶ ପରେ ରେଭେନ୍ସା କଲେଜରେ ଆଇଏସ୍‌ସି ପଢ଼ିବାକୁ ଦରଖାସ୍ତ ପଠାଇଲୁ ଆମେ ତିନିଜଣ ସାଙ୍ଗ । ପରେ ପରେ ସେଠାରେ ପଢ଼ିବାକୁ ଅନୁମତି ପତ୍ର ସହ ନାମ ଲେଖାଇବା ତାରିଖ ଜଣାଇ ଦିଆଗଲା ମୋତେ; ମାତ୍ର ମୋର ଦୁଇଜଣ ଅନ୍ତରଙ୍ଗ ବନ୍ଧୁ ଶ୍ରୀ ବନମାଳୀ ଭୂୟାଁ ଓ ଶ୍ରୀ ପ୍ରହଲାଦ ମଲିକଙ୍କ ନିକଟକୁ ସାଇନ୍ସ ପଢ଼ିବାକୁ ଅନୁମତି ପତ୍ର ପଠାଯାଇନଥାଏ । ତିନିଜଣ ସାଙ୍ଗ ଏକ ଜାଗାରେ ସାଇନ୍ସ ପଢ଼ିବାକୁ ପୂର୍ବରୁ ମନସ୍ଥିର କରିସାରିଥିଲୁ ତେଣୁ ସେପରି ନ ହେବାରୁ କଣ କରିବୁ ଠିକ୍ କରିନପାରି ବିହାରିବାଗରେ

ଶ୍ରୀ ବୀରେନ ମିତ୍ରଙ୍କ ଦରବାରରେ ତିନିଜଣ ବୀରେନ ବାବୁଙ୍କୁ ସାକ୍ଷାତ କଲୁ । ଦରଦୀ ବୀରେନ ବାବୁ ସଂଗେ ସଂଗେ ରେଭେନ୍ସା କଲେଜ ପ୍ରିନ୍ସପାଲଙ୍କୁ ଫୋନ କରି ଯାହା କଥା ହେଲେ ତା ଫଳରେ ଆମର ଦୁଇଜଣ ସାଙ୍ଗଙ୍କୁ ନିଶ୍ଚୟ ରେଭେନ୍ସା କଲେଜରେ ଆଇଏସ୍‌ସି ମିଳିଯିବ ବୋଲି ପ୍ରତିଶ୍ରୁତି ଦେଲେ । ମାତ୍ର ଦିନ ଗଡ଼ିଚାଲିଲା ଅଥଚ ନାମ ଲେଖାଇବାର କିଛି ସୂଚନା ମିଳିଲା ନାହିଁ । ଏଥି୍ ସହ ମୋର ନାମ ଲେଖା ତାରିଖ ମଧ ଖୁବ୍ ପାଖେଇ ଆସିଲା । ଏପରି ଅନିଶ୍ଚିତ ପରିସ୍ଥିତିରେ ବନ୍ଧୁ ଦୁଇଜଣଙ୍କ ପରାମର୍ଶରେ ବୀରେନ ବାବୁଙ୍କ ଦରବାରକୁ ମୁଁ ଏକୁଟିଆ ଗଲି କାରଣ ଅନ୍ୟ ଦୁଇଜଣ ସାଙ୍ଗ କିଛି ଦରକାର ଥିବାରୁ ରେଳ ଷ୍ଟେସନକୁ ବୁଲି ଯାଇଥିଲେ ।

ଯାହା ଆଶା କରାଯାଉନଥିଲା ତାହା ଘଟିଲା ଓ ସମଗ୍ର ପରିସ୍ଥିତିର ରୂପକ ବଦଳାଇ ଦେଲା । ରେଳ ଷ୍ଟେସନରେ ପୂଜ୍ୟ ଭାଇନା ଶ୍ରୀ କାହ୍ନୁଚରଣ ମିଶ୍ରଙ୍କ ସହିତ ଅଚାନକ ମୋର ଦୁଇ ସାଙ୍ଗଙ୍କର ସାକ୍ଷାତ ହେଲା । ସେ ଟ୍ରେନରେ ପାରଳାରୁ କଲିକତା ଯାଉଥାନ୍ତି । ପହଲି (ପରେ ଓଡ଼ିଶାର ଜଣେ ମନ୍ତ୍ରୀ ହୋଇଥିଲେ ଏବେ ମୃତ) ଏବଂ ବନମାଳୀ ଭୂୟାଁ (ପରେ ପଟ୍ଟାମୁଣ୍ଡାଇ ହାଇସ୍କୁଲର ଜଣେ ଖ୍ୟାତନାମା ଶିକ୍ଷକ ହୋଇଥିଲେ- ଏବେ ମୃତ) ତାଙ୍କ ଦେଖା ହୋଇଗଲେ ଭାଇନା ପହିଲି ଓ ବନମାଳୀ ଠାରୁ ସବୁ ବୁଝିଲେ । ତାଙ୍କର ଦରଦୀ ହୃଦୟରେ ଏକ ବେଦନାର ସ୍ପନ୍ଦନ ସୃଷ୍ଟି ହେଲା; ଫଳରେ ଯେ କୌଣସି ପ୍ରକାରରେ ଆମକୁ ସାହାଯ୍ୟ କରିବାକୁ ସ୍ଥିର କରିନେଲେ । ସେମାନଙ୍କୁ କହିଲେ, ,''ତୁମେ ଅଭାଗା ତିନିଜଣ ଆଜି ରାତି ରେଳ ଗାଡିରେ ପାରଳାଖେମୁଣ୍ଡି ଚାଲିଯାଅ ସେଠାରେ ପହଞ୍ଚି ମୋ କ୍ୱାର୍ଟରରେ (ହଷ୍ଟେଲର ଡେପୁଟି ୱାର୍ଡେନ) ରହିବ । ମୁଁ କଲିକତାରୁ ଫେରି ଆସି ତମର ଆଡମିସନ ମହାରାଜ କୃଷ୍ଣଚନ୍ଦ୍ର ଗଜପତି କଲେଜରେ କରାଇଦେବି । ହଷ୍ଟେଲ ସିଟ୍ ବି ହେବ ତୁମ ଦୁଇ ଜଣଙ୍କର ମାତ୍ର ଦାଶରଥି ହଷ୍ଟେଲରେ ନରହି ମୋ ଘରେ ରହିବ'' ଇତ୍ୟାଦି । ମୁଁ ବିରେନ ବାବୁଙ୍କ ପାଖରୁ କିଛି ପ୍ରତିଶ୍ରୁତି ନପାଇ ଫେରିଥାଏ; ଏମାନେ ଷ୍ଟେସନରେ ଭାଇନାଙ୍କ ଠାରୁ ପୂରା ପ୍ରତିଶ୍ରୁତି ଧରି ଫେରିଛନ୍ତି । ତେଣୁ ସ୍ଥିର ହେଲା ''ରେଭେନ୍ସାକୁ ଗୁଡ଼ବାଇ'' । ପାରଳାଖେମୁଣ୍ଡି ଯିବାକୁ ପଲାସା ଅଭିମୁଖେ ମାନ୍ଦ୍ରାଜ ମେଲରେ ବସିଲୁ । ପଲାସାରୁ ନାରୋଗେଜ ରେଳରେ ଉଠି ପାରଳାଖେମୁଣ୍ଡିରେ ଓହ୍ଲାଇ ଭାଇନାଙ୍କ ହଷ୍ଟେଲ ୱାଡେନ କ୍ୱାର୍ଟରରେ ପହଞ୍ଚିଲୁ । ଭାଇନାଙ୍କ ସାନଭାଇ ଗଗନ ଉପରେ ଆତିଥେୟତାର ଦାୟିତ୍ୱ ପଡ଼ିଲା । ସେତେବେଳେ ଭାଉଜ ବଡ଼ଝିଅ ବୁଲୁ ସହିତ ବାପାଙ୍କ ଘରକୁ ଯାଇଥିଲେ । ଭାଇନା କଲିକତାରୁ ଫେରିଲା ପରେ ଆମ୍ଭେମାନେ ଦରଖାସ୍ତ ଫର୍ମ ପୂରଣ କଲୁ ଓ ବିନା ଅସୁବିଧାରେ ଆଇଏସ୍‌ସି କ୍ଲାସରେ ଆମର ଆଡମିସନ ହୋଇଗଲା । ଭାଇନାଙ୍କ ପରାମର୍ଶରେ ମୁଁ ତାଙ୍କ

ଘରେ ରହିଲି ଓ ଅନ୍ୟ ଦୁଇ ବନ୍ଧୁ ହଷ୍ଟେଲରେ ରହିବାର ବ୍ୟବସ୍ଥା ହୋଇଗଲା । ଭାଇନାଙ୍କ ସହିତ ମୁଁ ତ' ପୂର୍ବରୁ ସୁପରିଚିତ, ହେଲେ ଭାଉଜ ମୋ ରହିବାଟାକୁ କିପରି ଭାବରେ ଗ୍ରହଣ କରିବେ ? ଏ ଶଂସୟ ମୋ ମନରେ ଥାଏ । ପରେ ଭାଉଜ ପାରଳାଖେମୁଣ୍ଡି ଫେରିଲା ପରେ ତାଙ୍କ ଠାରୁ ଏପରି ବ୍ୟବହାର ପାଇଲି ଯେ ମୋର ଅପରିଚିତ ବୋଧ ଅନାୟାସରେ କୁଆଡ଼େ ଉଭେଇଗଲା । ବହୁତ ସମୟରେ ଭାବି ଠିକ୍ କରିପାରେ ନାହିଁ ଏପରି ଭାବରେ ଅନ୍ୟ ଜଣକୁ ନିଜ ପରିବାରରେ ସ୍ୱଚ୍ଛନ୍ଦରେ ଚଳାଇନେବାକୁ ହୃଦୟବତ୍ତାର ଗଭୀରତା କେତେ ଅମାପ ହେବା ଦରକାର ।

ପାରଳାଖେମୁଣ୍ଡିରେ ଭାଇନାଙ୍କ ଘରେ ମୋ ବ୍ୟତୀତ ଆଉ ତିନିଚାରିଜଣ ଛାତ୍ରଛାତ୍ରୀ ମଧ୍ୟ ରହିଥିଲେ- ବିଭିନ୍ନ ବୟସ ଓ ଶ୍ରେଣୀର । ସମସ୍ତଙ୍କ ପ୍ରତି ସମାନ ଯତ୍ନ, ବ୍ୟବହାର ଓ ଅନୁଶାସନ । ଆମେ ବିଭିନ୍ନ ପରିବେଶରୁ ଆସି ସେହି ଗୋଟିଏ ଛାତ ତଳେ ମୁଣ୍ଡ ଗୁଞ୍ଜିଛୁ ଅଥଚ ଉପଯୁକ୍ତ ଶୃଙ୍ଖଳା ହେତୁ ସମସ୍ତେ ଅଧ୍ୟୟନରତ ଓ ଜୀବନଚର୍ଯ୍ୟାରେ ପରିମାର୍ଜିତ ହୋଇଛନ୍ତି ।

ଏହି ସମୟରେ (୧୯୪୯-୧୯୫୧) ସେ ବେଳର ଅନେକ ବିଶିଷ୍ଟ ବ୍ୟକ୍ତି ପାରଳା ଆସିବା ଅବସରରେ ଭାଇନାଙ୍କ ଘରେ ଆତିଥ୍ୟ ଉପଭୋଗ କରନ୍ତି । ସେମାନଙ୍କ ସହିତ ମିଳାମିଶା କରିବାର କେତେକ ବିଶେଷ ସୁଯୋଗ ପାଇଥିଲି । ମୋ ପରି ଜଣେ ଅନାମଧେୟ ଛାତ୍ରକୁ ସେମାନଙ୍କ ସମେତ ଅନ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ପରିଚିତ କରାଇଦେବା ତଥା ମୋ ପ୍ରଶଂସାରେ ଶତମୁଖ ହୋଇଯିବା ଭାଇନାଙ୍କ ପରି ଜଣେ ଉଦାର ହୃଦୟବାନ ବ୍ୟକ୍ତିଙ୍କ ଠାରେ ହିଁ ସମ୍ଭବ ।

ଆମେ ତିନିବନ୍ଧୁ ପାରଳା କଲେଜରେ ପଢୁଥିବାବେଳେ ଜଣେ ସାଥୀ ଶ୍ରୀ ପ୍ରହଲ୍ଲାଦ ମଲିକ ବିଜ୍ଞାନ ପାଠ ତାଙ୍କୁ ଭଲ ଲାଗୁନାହିଁ ବୋଲି ମ୍ରିୟମାଣ ହୋଇପଡ଼ିଲେ ଓ ଭାଇନାଙ୍କର ବହୁତ ସାନ୍ତ୍ୱନା ତଥା ଉତ୍ସାହ ପ୍ରଦାନ ସତ୍ତ୍ୱେ ପାଠପଢ଼ା ଛାଡ଼ି ସେଠାରୁ ଫେରି ଆସିଲେ । ଭାଇନା ଏଥିରେ ବଡ଼ ବିବ୍ରତ ହୋଇ ପଡ଼ିଥିଲେ ।

ସାଂପ୍ରତିକ ବର୍ଦ୍ଧିଷ୍ଣୁ ପରିବାର ଓ ଆର୍ଥିକ ଅସ୍ୱଚ୍ଛଳତା ସତ୍ତ୍ୱେ ନିଜର ଦାୟିତ୍ୱବୋଧରେ ତିଳେ ହେଁ ବିଚ୍ୟୁତ ନହୋଇ ହସି ହସି ବୀର ପରି ସେ ସଂସାରକୁ ସମ୍ମୁଖୀନ ହୋଇଥିଲେ । ପରିବାରର ସବୁ ବିଦ୍ୟାର୍ଥୀଙ୍କର ବ୍ୟକ୍ତିଗତ ଭାବରେ ଅଧ୍ୟୟନର ସମୀକ୍ଷା କରୁଥିଲେ ଏବଂ ଆବଶ୍ୟକୀୟ ଶିକ୍ଷାଗତ ସାହାଯ୍ୟର ସୁଯୋଗ ଯୋଗାଇ ଦେଉଥିଲେ । କଠଉ ପିନ୍ଧି ଘର ଭିତରେ ସମସ୍ତଙ୍କ ପାଖକୁ ଘୁରି ବୁଲୁଥିବାର ସେ ଦୃଶ୍ୟରାଜି ଏବେ ବି ଆଖି ଆଗରେ

ନାଚିଯାଉଛି । ସପ୍ତାହରେ ଦିନେ ସେ ମୌନବ୍ରତ ରଖୁଥିଲେ ଓ ଏହିଦିନ ଲେଖାପଢ଼ାରେ ବେଶୀ ସମୟ କଟାଉଥିବାର ବୋଧ ହେଉଥିଲା ।

ପାରଳାଖେମୁଣ୍ଡିରୁ ଶିକ୍ଷା ସମାପ୍ତି ପରେ ଯେଉଁ ଅନୁଷ୍ଠାନଗୁଡ଼ିକରେ ଶିକ୍ଷା ଗ୍ରହଣ କରିଛି ସେଠାର ଅଧ୍ୟୟନରେ ପୂଜ୍ୟ ଭାଇନାଙ୍କର ନୈତିକ ଅନୁମୋଦନ ତଥା ସାହାଯ୍ୟ ମୋର କ୍ରମିକ ଅଗ୍ରଗତିକୁ ପରିପୁଷ୍ଟ କରିଛି । ତାଙ୍କଠାରେ ମୁଁ ଯେ କେତେ ଭାବରେ ଋଣୀ ତାର କଳନା କରିବା ମୋର ସୀମାର ବାହାରେ ।

ଉଦାରତା ଓ ମଧୁରିମା ବିମଣ୍ଡିତ ତାଙ୍କର ସାନ୍ନିଧ ଆମ ପାଇଁ ସର୍ବଦା ପ୍ରେରଣା ଓ ଆନନ୍ଦର ଉତ୍ସଥିଲା । ଆମ ପରିବାରର ସୁଖଦୁଃଖ ଉତ୍ସବ ଅନୁଷ୍ଠାନ ପ୍ରତ୍ୟେକ ପରିବେଶରେ ସେ ଏକ ମୁଖ୍ୟ ମୁରବୀର ସ୍ଥାନ ନେଉଥିଲେ ଓ ଯଥାବିଧି ଦାୟିତ୍ୱ ତୁଲାଉଥିଲେ । ଉଣାଇଶ ଶହ ବୟାଅଶୀ ସାଲ ଜୁନ୍ ତିନି ତାରିଖରେ ଘଟିଥିବା ଭୟଙ୍କର ବାତ୍ୟା ଦିନ ଆମ ଝିଅର ବିବାହ । ସେଦିନ ଦୁଃସାହସିକ ଭାବରେ ସେ ଆମଘରେ ପାଦ ଦେଇ ପାରିଥିଲେ ଯେତେବେଳେ ପାଖପଡ଼ିଶା ଲୋକ ଘରୁ ବାହାରି ଆସି ପାରିନଥିଲେ । ବଡ଼ଝିଅ ବିଦା ହେଲା ବେଳେ କ୍ରନ୍ଦନରତା ମାକୁ ଆତ୍ମାର ଭାଷାରେ ସାନ୍ତ୍ୱନା ଦେଉଥିବାର ଦୃଶ୍ୟ ଏବେ ବି ସତେଜ ବୋଧହୁଏ । ଏହା ଥିଲା ଆମ ପ୍ରତି ତାଙ୍କର ଅନାବିଲ ସ୍ନେହ ଓ ଶ୍ରଦ୍ଧାର ପ୍ରତିଛବି ।

ନିଜକୁ ଅନପେକ୍ଷ ଓ ଅନାସକ୍ତ ରଖି ପାଇବା କଥା ଭୁଲିଯାଇ ସବୁକିଛି ଦେଇଦେବାରେ ଯେ ସ୍ୱର୍ଗୀୟ ଚେତନାର ଉପଲବ୍ଧ ହୁଏ ତାର ଅନୁଭବୀ ଭାଇନାଙ୍କ ଛଡ଼ା ଆଉ କିଏ ବା ହୋଇପାରିବ ? ନିଜର ସଦ୍ ସ୍ୱଭାବ, ସମବେଦନା ଭରା ହୃଦୟ ଓ ସଂସାରକୁ ଆପଣେଇ ନେବା ମନୋଭାବ ଯୋଗୁ ଭାଇନା ପରିଣତ ବୟସରେ ବି ଚିରସବୁଜ ଭଳି ପ୍ରତୀୟମାନ ହେଉଥିଲେ । ତାଙ୍କର ବିଶାଳ ସାମାଜିକ ପରିବାରରେ ମୋରି ପରି ବହୁତ ଆପଣାର ରହିଛନ୍ତି ଓ ମୋ ପରି ତାଙ୍କୁ ଝୁରୁଛନ୍ତି । ଏହା ହିଁ ଏକ ସାର୍ଥକ ଜୀବନର ଉଦାହରଣ । ସେହି ଅମୃତ ଜନ୍ମାଙ୍କ ପାଦରେ ମୋର ଶତଶତ ଶ୍ରଦ୍ଧାଞ୍ଜଳି ସ୍ମୃତି ଭକ୍ତି କୃତଜ୍ଞତା ଅର୍ଘ୍ୟର ।

ନାରାୟଣ ମିଶ୍ର ଲେନ, କଟକ

# କାହ୍ନୁ ଭାଇନା

*- ଡାକ୍ତର କିଶୋରଚନ୍ଦ୍ର ମିଶ୍ର*

ମୋ ଦଦେଇ ଝିଅ ଭଉଣୀକୁ ବିବାହ କରି ସେ ମୋର ଭାଇନା । ଆମ ଘରେ ତାଙ୍କର ପ୍ରଥମ ପ୍ରବେଶ ସେହି ଅବସରରେ । ସେତେବେଳକୁ ମୁଁ ପିଲା, ମାଟ୍ରିକ ପ୍ରଥମ ଶ୍ରେଣୀର ଛାତ୍ର । ସ୍ୱାଧୀନତାର ପୂର୍ବ ସମୟ । ବିବାହର ବିଧିବିଧାନ ସରିବା ପରେ ସେ ଯେତେବେଳେ ବାହାରିଲେ ମୋତେ ତାଙ୍କୁ ଦେଖି ଭାରି ଖୁସି ଲାଗିଲା । ଆମ ଘରେ ପ୍ରଥମକରି ଜଣେ ଖଦଡ଼ଧାରୀଙ୍କର ପ୍ରବେଶ ହେଲା । କାହ୍ନୁ ଭାଇନା ଜଣେ ଖୁବ୍ ଗୋରା ଲୋକ, ବେଶୀ ଡେଙ୍ଗା ନହେଲେ ମଧ ବେଶ ସ୍ୱାସ୍ଥ୍ୟବାନ, ତା ଉପରେ ତାଙ୍କ ଧୋବ ଫରଫର ଖଦଡ଼ ଧୋତି ପଞ୍ଜାବୀ ଓ ଚଦର ଜଣେ ଉଚ୍ଚ ଧରଣର ସ୍ୱାଧୀନତା ସଂଗ୍ରାମୀ ପ୍ରତୀୟମାନ ହୁଅନ୍ତି । ପିଲା ହୋଇଥିବାରୁ ତାଙ୍କର ପ୍ରକୃତ ସବିଶେଷ ଗୁଣ ବିଷୟରେ ଆମର ଧାରଣା ହୋଇନଥାଏ । ତାଙ୍କ ରୂପ ଓ ଢ଼ଙ୍ଗରୁ ପ୍ରଚଣ୍ଡ ସ୍ୱାଧୀନ ଚେତା ପୁରୁଷ ଭାବରେ ଆମ ଆଗରେ ଦଣ୍ଡାୟମାନ । ସେ କଲିକତା ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ସାହିତ୍ୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ପାଇଥିବା ଜାଣିବା ପରେ ଆମ ମନରେ ତାଙ୍କ ପ୍ରତି ସମ୍ମାନ ଆହୁରି ବଢ଼ିଗଲା । ପୁଣି ଜାଣିବାକୁ ମିଳିଲା ଯେ ସେ ପରଦେଶୀ ସରକାର ପାଖରେ ଚାକିରୀ କରିବେ ନାହିଁ ବୋଲି ପ୍ରତିଜ୍ଞାବଦ୍ଧ ହୋଇ ସରକାରୀ କଲେଜରେ ଯୋଗ ନଦେଇ ପାରଳାଖେମୁଣ୍ଡିରେ ରାଜାଙ୍କର ସାହିତ୍ୟ କଲେଜରେ ଯୋଗ ଦେଇଥାଆନ୍ତି । ସେତେବେଳେ ସମୟରେ ଏହା ଏକ ଦୃଷ୍ଟାନ୍ତକାରୀ ପଦକ୍ଷେପ ଥିଲା । ଏବକାର ପିଲାମାନେ ଏହା ଅନୁମାନ କରିପାରିବେ ନାହିଁ । ଆମ ଘରେ ସେତେବେଳେ ଯେ କେତେଜଣ ମୁଷ୍ଟିମେୟ ଲୋକ ସ୍ନାତକ ହେଉଥିଲେ ସେମାନେ ସରକାରୀ ଚାକିରୀରେ ଡିଆଁମାରି ପଶି ଯାଉଥିଲେ । କାହ୍ନୁ ଭାଇନା ପ୍ରଥମ କରି ଏହାର ବିପରୀତ ହୋଇ ପ୍ରବେଶ କଲେ । ଆସ୍ତେ ଆସ୍ତେ ଜାଣିଲୁ ସେ ଏକ ଏକାନ୍ନବର୍ତ୍ତୀ ପରିବାରର ଅଂଶ ହୋଇଥିବାରୁ ଅନ୍ୟମାନଙ୍କ ଉପଦେଶରେ ଚାକିରୀ ଆରମ୍ଭ କରିଥିଲେ ସୁଦ୍ଧା ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବେ ବୋଲି ମନେ ମନେ ସିଦ୍ଧାନ୍ତ ନେଇଥିଲେ । କିନ୍ତୁ ତା ହେଲା ନାହିଁ । ଚାକିରୀ କରିବାର ବର୍ଷେ ମଧରେ ଭାରତର ସ୍ୱାଧୀନତା ପ୍ରସ୍ତୁତି ଆରମ୍ଭ ହୋଇଗଲା ପରେ ପରେ ଭାରତ ସ୍ୱାଧୀନ ହୋଇଗଲା । ତା ପରେ ହିଁ ସେ ସରକାରୀ କଲେଜରେ ଅଧ୍ୟାପକ ଭାବରେ ଯୋଗ ଦେଲେ । ତାଙ୍କ ଜୀବନର ଆଭିମୁଖ୍ୟ

ବଦଳିଗଲା; ଅଧ୍ୟାପନାରେ ମନ ନିବେଶ କଲେ । ଜଣେ ଛାତ୍ରବତ୍ସଳ ଶିକ୍ଷକ ଓ ଉଚ୍ଚକୋଟୀର ଅଧ୍ୟାପକ ଭାବରେ ନିଜକୁ ପ୍ରତିପାଦନ କଲେ । ସେ ଯେତେଗୁଡ଼ିକ କଲେଜରେ ଶିକ୍ଷାଦାନ କରିଛନ୍ତି ସବୁଠି ଲୋକପ୍ରିୟ ଅଧ୍ୟାପକ ଭାବରେ ନାମ କମେଇଛନ୍ତି ।

କିଛିକାଳ ପରେ କାହ୍ନୁ ଭାଇନାଙ୍କ ଜୀବନର ଦ୍ୱିତୀୟ ପର୍ବ ଆରମ୍ଭ ହୁଏ । ତା ହେଉଛି ଏକ ଗବେଷକର ଜୀବନ । ଜଗନ୍ନାଥ ସଂସ୍କୃତି ଉପରେ ତାଙ୍କର ଗବେଷଣା ଆରମ୍ଭ ହୁଏ । ବହୁ ଶ୍ରମ କରି କଲିକତା ଠାରେ ଅବସ୍ଥିତ ଜାତୀୟ ପୁସ୍ତକାଗାର, ରେଭେନ୍ସା କଲେଜରେ ପୁସ୍ତକାଳୟ, ପୁରୀର ଜଗନ୍ନାଥ ମନ୍ଦିରର ଓ ବିଭିନ୍ନ ମଠ ମାନଙ୍କରେ ଗଚ୍ଛିତ ଲେଖା ଓଡ଼ିଶାର ପୁରପଲ୍ଲୀରୁ ଜଗନ୍ନାଥଙ୍କ ବିଷୟରେ ତାଳପତ୍ର ଲେଖାମାନଙ୍କରୁ ବହୁ କଷ୍ଟରେ ସଂଗୃହୀତ ବିଷୟମାନଙ୍କୁ ବହୁ ଅଧ୍ୟବସାୟ ସହ ସଂକଳନ କରି ସେ ତାଙ୍କ ଗବେଷଣା ପୁସ୍ତିକା କଲିକତା ବିଶ୍ୱବିଦ୍ୟାଳୟରେ ଦାଖଲ କରି ଓଡ଼ିଆ ସାହିତ୍ୟରେ ଡାକ୍ତର ଉପାଧି ହାସଲ କଲେ । ତା ପରେ ମଧ୍ୟ ସେ ଜୀବନର ଶେଷ ପର୍ଯ୍ୟନ୍ତ ଜଗନ୍ନାଥ ଓ ଜଗନ୍ନାଥ ସଂସ୍କୃତି ଉପରେ ତାଙ୍କର ଗବେଷଣା ଜାରି ରଖିଥିଲେ । ଡାକ୍ତର ଉପାଧି ପାଇଁ ଉଦ୍ଦିଷ୍ଟ ତାଙ୍କର ଗବେଷଣା ପୁସ୍ତିକା ଉଚ୍ଚକୋଟୀର ହୋଇଥିବାରୁ ତାହା ସାଧାରଣ ପୁସ୍ତକ ଭାବରେ ପ୍ରକାଶିତ ହୋଇ ଆଦୃତ ହୋଇଛି । ଜଗନ୍ନାଥ ସଂସ୍କୃତି ବିଷୟରେ ତାଙ୍କର ବହୁ ଲେଖା ବିଭିନ୍ନ ସାହିତ୍ୟ ପତ୍ରିକା ଓ ମ୍ୟାଗାଜିନ୍‌ମାନଙ୍କରେ ପ୍ରକାଶିତ ହୋଇଛି । ଓଡ଼ିଶା ଓ ଭାରତର ଅଧିକାଂଶ ପଣ୍ଡିତ ସମ୍ମିଳନୀମାନଙ୍କୁ ନିମନ୍ତ୍ରିତ ହୋଇ ଜଗନ୍ନାଥ ସଂସ୍କୃତିର ବହୁଳ ପ୍ରଚାର କରିବାକୁ ସୁଯୋଗ ପାଇଛନ୍ତି । ସୁଦୂର ଆମେରିକାରେ ବସବାସ କରୁଥିବା ଭାରତୀୟମାନଙ୍କର ନିମନ୍ତ୍ରଣ ପାଇ ସେଠାରେ ଜଗନ୍ନାଥଙ୍କ ଉପରେ ଉପାଦେୟ ବକ୍ତୃତାମାନ ଦେଇ ସେମାନଙ୍କୁ ଜଗନ୍ନାଥ ସଂସ୍କୃତିରେ ଉଦ୍‌ବୁଦ୍ଧ କରିଛନ୍ତି । ତାଙ୍କ ପ୍ରଚାର ପରେ ଆମେରିକାର ବିଭିନ୍ନ ସହରମାନଙ୍କରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠିତ ହୋଇଛି ଓ ହେଉଛି । ପ୍ରାପ୍ତ ବୟସରେ ସେ ଯାଇଛନ୍ତି କିନ୍ତୁ ଜଗନ୍ନାଥ ତାଙ୍କୁ ଆଉ ଯେତେଦିନ ଏ ସଂସାରରେ ରଖିଥାନ୍ତେ କାହ୍ନୁ ଭାଇନା ବଡ଼ ଠାକୁରଙ୍କ ଗୁଣଗାନ ହିଁ କରୁଥାଆନ୍ତେ ।

ତାଙ୍କର ଜୀବନ ଦର୍ଶନ ଅନୁକରଣୀୟ । ପରୋପକାରୀ ମଣିଷ । ଘରେ, କୁଟୁମ୍ବରେ, ବନ୍ଧୁମାନଙ୍କ ମଧ୍ୟରେ ଓ ଛାତ୍ରମାନଙ୍କ ମଧ୍ୟରେ ଯେ କେହି ରୋଗ ବିରାଗରେ ତାଙ୍କ ସାହାଯ୍ୟ ଲୋଡିଲେ କିମ୍ବା ତାଙ୍କ ପାଖରେ ସେ ଖବର ପହଞ୍ଚିଲେ ନିଶ୍ଚିତ ତାଙ୍କ ସାଧ୍ୟ ଅନୁସାରେ ସେ ସାହାଯ୍ୟ କରନ୍ତି । ତାଙ୍କ ଜୀବନ ବ୍ୟସ୍ତତାର ପ୍ରତୀକ ଥିଲା । ଡଗ ଡଗ ଚାଲିବେ, କଥା କହିବାରେ ମୁହଁରେ ବାଟୁଳି ବାଜିବ ନାହିଁ । ଓଡ଼ିଆ ସାହିତ୍ୟରେ କେତେକଙ୍କର କଟୁ ସମାଲୋଚକ ଥିଲେ ମଧ୍ୟ କାହାରି ସହିତ ବନ୍ଧୁତାରେ କାର୍ପଣ୍ୟ ନଥିଲା । କେତେବେଳେ

ହେଲେ ତାଙ୍କୁ ରାଗିବାର ଆମେ ଦେଖିନାହୁଁ । ତାଙ୍କୁ ସମାଲୋଚନା କଲେ ବା ତାଙ୍କୁ ଗାଳିଦେଲେ ଟିକେ ହସିଦେଇ ଚାଲିଯିବେ । ନିଜ କର୍ମକ୍ଷେତ୍ର ସହରରେ ହେଲେ ସୁଦ୍ଧା ପଲ୍ଲୀ ଜୀବନ ପ୍ରତି ତାଙ୍କର ଏକ ମାୟା ଥିଲା । ସେ ଗାଁକୁ ଗଲେ ଭାରି ଖୁସି । ଭୁବନେଶ୍ୱରରେ ବସବାସ କରୁଥିଲେ ମଧ୍ୟ ଅନେକଥର କଟକ ଆସନ୍ତି ଓ ଥରେ ଆସିଲେ ଅଧିକାଂଶ ବନ୍ଧୁମାନଙ୍କୁ ନିଶ୍ଚିତ ଭାବରେ ସନ୍ଧାନି ଯାଆନ୍ତି । କାହ୍ନୁ ଭାଇନାଙ୍କ ପରି ଆଉ ଜଣେ ବନ୍ଧୁ ମିଳିବେନି । ଜଗନ୍ନାଥ ତାଙ୍କ ଆତ୍ମାର ସଦ୍‌ଗତି କରନ୍ତୁ ।

■■

# ବହୁଜନପ୍ରିୟ ଓ ଜ୍ଞାନ ପ୍ରଚାରକ କାହ୍ନୁବାବୁଙ୍କର ସ୍ମୃତି ତର୍ପଣ

*- ପ୍ରଫେସର ଗୌରୀକୁମାର ବ୍ରହ୍ମା*

ମୋର ସାଧନାମୟ ଜୀବନରେ ବନ୍ଧୁମାନଙ୍କ ସହିତ ଆଳାପ ଆଲୋଚନାର ପରିସର ଥିଲା ବଡ଼ ସୀମିତ । ୧୯୪୧ରେ ପ୍ରଥମେ ଆସିଲି କଟକ ସହରକୁ । ପ୍ରବଳ ଝଡ଼ିବର୍ଷା ଲାଗି ରହିଥାଏ । କାଠଯୋଡ଼ି ନଦୀରେ ୨୭ ଫୁଟ ପାଣି । ସଂଧ୍ୟାବେଳେ କାଠଯୋଡ଼ି କୂଳ ଲୋକାରଣ୍ୟ । ସେଦିନ କାଳୀବାବୁଙ୍କ ବିଖ୍ୟାତ କବି ଚନ୍ଦ୍ର କାଳୀ ଚରଣ ପଟ୍ଟନାୟକଙ୍କର ଘର ପାଖ ଗଳିରେ ଶୁଭ୍ରବପୁ, ପ୍ରସନ୍ନ ବଦନ, ଚଞ୍ଚଳ ଗତି ଓ ମିଷ୍ଟଭାଷୀ କାହ୍ନୁବାବୁଙ୍କ ଦେଖା । ଦୁହେଁ ଦୁହିଁଙ୍କୁ ଦେଖୁ ଦେଖୁ ସ୍ୱତଃସ୍ଫୂର୍ତ୍ତ ଭାବରେ ନିଜ ନିଜର ପରିଚୟ ପ୍ରଦାନ ସହିତ ବନ୍ଧୁତ୍ୱର ବୀଜବପନ କରିଥିଲୁ । ସେହି ସମୟରୁ ବନ୍ଧୁତ୍ୱର ବିସ୍ତାର ସୂତ୍ରରେ ବିଭିନ୍ନ ସଭାସମିତିକୁ ଯିବା ପାଇଁ ଏକ ପ୍ରକାର ଜ୍ଞାନ ବିସ୍ତାର ନିଶା ଉଭୟଙ୍କୁ ପରମ ଆତ୍ମୀୟ କରିଦେଇଥିଲା । ସେତେବେଳେ କଲେଜ ଜୀବନ ଶେଷ କରି ସେ ତାଙ୍କ କକେଇ ତଥା କଲିକତା ବହୁବଜାରସ୍ଥିତ ଏକ ମୁଦ୍ରାଯନ୍ତ୍ରର ସ୍ୱନାମଧନ୍ୟ ସଂଗଠକ ଏବଂ ଓଡ଼ିଆ ସମାଜର ଦୃଢ଼ ପ୍ରତିଷ୍ଠାତା ସର୍ବମାନ୍ୟ ଆକୁଳି ବାବୁଙ୍କ ଘରେ ରହୁଥିଲେ । ତାଙ୍କ ସୂତ୍ରରେ ମୁଁ ମଧ୍ୟ ଆକୁଳି ବାବୁଙ୍କ ସହିତ ସମ୍ବନ୍ଧ ହୋଇଗଲି । ଏପରି ହେଲା ଯେ ତାଙ୍କ ଜୀବନରେ ଶେଷ ଦିନ ପର୍ଯ୍ୟନ୍ତ ମୁଁ ତାଙ୍କର ଆତ୍ମୀୟ ହୋଇଗଲି । ଶତାଧିକ ବଡ଼ ବଡ଼ ସଭାରେ ଭାଷଣ ଦେବାର ବ୍ୟବସ୍ଥା କେବଳ ତାଙ୍କ ଦ୍ୱାରା ହିଁ ସମ୍ଭବପର ହୋଇଥିଲା । ପ୍ରଥମ କେତେବର୍ଷ କାହ୍ନୁବାବୁ ଓ ମୁଁ ଦୁଇ ସହୋଦର ପରି ସୁସଂପୃକ୍ତ ହୋଇଗଲୁ । ତା ପରବର୍ତ୍ତୀ ସ୍ତରରେ ଆମେ ସରକାରୀ କଲେଜରେ ଓଡ଼ିଆ ଅଧ୍ୟାପକ ହୋଇ ରହିଲୁ । ନିୟମ ଅନୁସାରେ ସେ ସ୍ଥାନାନ୍ତରିତ ହୋଇ କେବଳ ପୁରୀ ବା କଟକରେ ନୁହେଁ ଦୂରବର୍ତ୍ତୀ ଅନ୍ୟ ଅନେକ ସ୍ଥାନରେ ଅଧ୍ୟାପକ ଭାବରେ ମଧ୍ୟ ଶିକ୍ଷା ବିସ୍ତାର ନିମନ୍ତେ ଉଦ୍ୟମ କରିଥିଲେ । ବିଭିନ୍ନ ଅଞ୍ଚଳର ସାଂସ୍କୃତିକ ବାତାବରଣର ରୂପରେଖ । ଅବଗତ ହେବା ପାଇଁ ତାଙ୍କର ପିପାସା ଥିଲା ପ୍ରବଳ । ତାଙ୍କର ନିକଟ ସଂପର୍କୀୟ ବନ୍ଧୁ ଥିଲେ ଓଡ଼ିଶାର ଅଲୌକିକ ଜନପ୍ରିୟତା ସମ୍ପନ୍ନ ଓ ସୁଦକ୍ଷ ଚିକିତ୍ସକ ଡକ୍ଟର ଶରତଚନ୍ଦ୍ର ମିଶ୍ର । ୧୯୪୮ରୁ ପ୍ରାୟ ସବୁଦିନ ସଂଧ୍ୟାରେ, କଟକ ସହରର ଏକାଧିକ ସଭାରେ ମୁଁ ବକ୍ତା

ହେବା ପାଇଁ ଆମନ୍ତ୍ରଣ ପାଉଥିଲି । ତେଣୁ ରାତି ଅନିଦ୍ରା, ପର ଦିବସମାନଙ୍କର ଭାଷଣ ପାଇଁ ପ୍ରସ୍ତୁତି ଶହ ଶହ ପୃଷ୍ଠାର ଗ୍ରନ୍ଥମାନଙ୍କୁ କଣ୍ଠସ୍ଥ କରିବା, ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଥିବା ଲେଖାମାନଙ୍କରୁ ନୂତନ ତଥ୍ୟ ସଂଗ୍ରହ ପ୍ରଭୃତି ଦ୍ୱାରା ମୁଁ ହୁଏତ ଏକ ନମ୍ବର କଲିକ ରୋଗୀ ହୋଇଗଲି । ପେଟ ବ୍ୟଥାର ତାଡ଼ନାରେ ମତେ ଶରତବାବୁଙ୍କ ଘରକୁ ବରାବର ଯିବାକୁ ହେଉଥାଏ । ସେହିପରି, ମୁକ୍ତ ହସ୍ତରେ ଔଷଧ ପ୍ରଦାନକାରୀ ଅମୃତହସ୍ତା କବିରାଜ, ସୁନାମଧନ୍ୟ ଲକ୍ଷ୍ମୀନାରାୟଣ ଆଚାର୍ଯ୍ୟଙ୍କ (ନୟାସଡ଼କସ୍ଥିତ) ଔଷଧ । ଏପରି ଭାବରେ ଆମେ ଦୁଇଜଣ ଓଡ଼ିଆ ଅଧ୍ୟାପକ ଯୁଗଳ ଭ୍ରାତା ଭଳି ହୋଇଗଲୁ । ୧୯୪୧ରୁ ଆଜି ପର୍ଯ୍ୟନ୍ତ ଆମର ବନ୍ଧୁତ୍ୱର ଶିଥିଳତା ଆସିନଥିଲା । ଯଦି କେବେ କେବେ କେତେକ ଘଟଣାରେ ସାମାନ୍ୟ ମନୋମାଳିନ୍ୟ ଅନୁଭୂତ ହେଉଥିଲା, ତାହା ମାନବିକ ଚଳଣିରେ ଏକ ସ୍ୱାଭାବିକ କଥା । ଆମର ସାମୂହିକ ଜୀବନରେ ତାହା ରେଖାପାତ କରିପାରିନଥିଲା । ଦୁହେଁ ଦୁହିଁଙ୍କର ଆତ୍ମୀୟତା ବୋଧରେ କେବେ ନିବିଡ଼ତା ହରାଇନଥିଲୁ ।

ତାଙ୍କର ବାଲ୍ୟ ବୟସର ଦୀର୍ଘ ସମୟ କଲିକତାରେ ଯାପିତ ହୋଇଥିଲା । କଲିକତାର ଖ୍ୟାତି ସେ ସମୟରେ ଥିଲା ଅପରିସୀମ । ଫକୀରମୋହନ ସେନାପତି ବଙ୍ଗଳାର ଲେଖକମାନଙ୍କର ସାମାଜିକ ଉନ୍ନତି ମୂଳକ ବିବିଧ କ୍ରିୟାକଳାପ ଦେଖିଲେ ଯେପରି ଗଭୀର ଆନନ୍ଦ ଅନୁଭବ କରୁଥିଲେ, କାହ୍ନୁବାବୁ ମଧ୍ୟ କଲିକତା ଯୁବ ସମାଜର ବଙ୍ଗୀୟ ଗଠନାତ୍ମକ ଅନେକ ଉଦ୍ୟମ ଦେଖି, ସେ ସବୁକୁ ଓଡ଼ିଶାରେ ଚାଲୁ କରାଇବା କଥା ଗଭୀର ଭାବରେ ଚିନ୍ତା କରୁଥିଲେ । ଏପରିକି, ତାଙ୍କର ସାଧନାମୟ ଜୀବନର ଦ୍ୱିତୀୟ ଅର୍ଦ୍ଧରେ ସେ ଭାବିଲେ- ମୁଁ ସିନା ନୂଆ ନୂଆ ବହି ଲେଖି ଓଡ଼ିଶାରେ ତରଙ୍ଗ ଭଙ୍ଗ କରିପାରିବି ନାହିଁ, ଆମ ଦେଶର ଯେଉଁ ମହାନ୍ ସାଧକମାନେ ଜ୍ଞାନ ରାଜ୍ୟରେ ବିପୁଳ ଅଗ୍ରଗତି କରିଛନ୍ତି ସେମାନଙ୍କର ଭଲ ଭଲ ଲେଖା ସମ୍ପାଦନା କରି, ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କରିବାକୁ ଚେଷ୍ଟା କଲେ କଣ ଭଲ ହେବ ନାହିଁକି ? ଏକଥା ମତେ ସେ ବହୁବାର କହିଛନ୍ତି । ଥରେ କହିଥିଲେ, ଆମେ ଯଦି ନିଜ ବାଡିରେ ଭଲ ଭଲ ଫଳ ଫଳାଇ ପାରିବା ନାହିଁ, ଭାରତର ଯେଉଁ ଯେଉଁ ସ୍ଥାନରେ ଆମ୍ବ ସପୁରୀ, କମଳା ପ୍ରଭୃତି ଫଳ ତଥା ରୋଗୀଙ୍କର ସୁପଥ୍ୟ ରୂପେ ଡାଳିମ୍ବ, ବେଦନା ପ୍ରଭୃତି ମିଳୁଚି, ତାକୁ ଆଣି ଓଡ଼ିଶାରେ ଚାଲୁ କରାଇବାରେ କି ବାଧା ଅଛି ? ଏ ଦୃଷ୍ଟିରୁ ସେ ଓଡ଼ିଶାର ତଥା ଭାରତର ବିଭିନ୍ନ ବିଜ୍ଞ ସାଧକଙ୍କ ଠାରୁ ଲେଖାମାନ ମଗାଇ, ସେସବୁର ସମ୍ପାଦନା କରୁଥିଲେ । ଓଡ଼ିଶାର ପାଠକମାନଙ୍କୁ ବିଜ୍ଞତା ପରିପୂରିତ ଲେଖାଗୁଡ଼ିକ ସଂଗେ ପରିଚିତ କରାଇବାର ମଙ୍ଗଳମୟ ଲକ୍ଷ୍ୟ ପୂରଣରେ ତ କୌଣସି ବାଧା ଉପୁଜିନଥିଲା । ତେଣୁ ସେ ଏକ ଅନୁଷ୍ଠାନ ଗଢ଼ି ଓଡ଼ିଶାର ଭାବୁକ ଓ ପାଠକଙ୍କର ଜ୍ଞାନ- ସଚେତନତା

ବଢ଼ାଇବା ପାଇଁ ପ୍ରତିବର୍ଷ ବଡ଼ ଧରଣର ଆଲୋଚନାଚକ୍ରମାନ କରାଉଥିଲେ । ଏହା ବହୁ ବାଧା ସତ୍ତ୍ୱେ, ନିର୍ବିଘ୍ନ ଭାବରେ ଚାଲିଥିଲା ବୋଲି ନିଃସନ୍ଦେହ ଭାବରେ କୁହାଯାଉଥିଲା ।

ପ୍ରଫେସର କାହ୍ନୁଚରଣ ମିଶ୍ର ଜଣେ ସୁଶ୍ରୀ ଯୋଗସାଧକ ଭାବରେ ପ୍ରତିଭାତ ହେଉଥିଲେ । ସେ ଥିଲେ ବନ୍ଧୁପ୍ରିୟ, ଜ୍ଞାନଲିପ୍‌ସୁ, ଅଧ୍ୟୟନପଟୁ, ଆଳାପପ୍ରିୟ, ମନୁଷ୍ୟମାନଙ୍କର ଗୁଣଗୌରବ ପ୍ରତି ଅଧିକ ଭାବରେ ସଚେତନ ଓଡ଼ିଶାର ସାଂସ୍କୃତିକ ଚିନ୍ତାଧାରା ପ୍ରତି ସର୍ବଦା ଉନ୍ମୁଖ, ଓଡ଼ିଶାର ଦେବଦେବୀଙ୍କ ପ୍ରତି ଗଭୀର ଭାବରେ ଭକ୍ତି ପରାୟଣ, ଦେବଦେବ ଜଗନ୍ନାଥଙ୍କ ଠାରେ ଅତ୍ୟଧିକ ଅନୁରକ୍ତ, ଚାକିରୀ କ୍ଷେତ୍ରରେ ଯେତେବେଳେ ଯେଉଁ ସ୍ଥାନକୁ ଯିବାକୁ ବାଧ ହୋଇଛନ୍ତି, ସେ ସ୍ଥାନର ବିଶେଷତ୍ୱ ଏବଂ ସାମାଜିକ ଗତିବିଧି ଲକ୍ଷ୍ୟ କରିବାରେ ଗଭୀର ଚିନ୍ତାଶୀଳତା ପ୍ରଦର୍ଶନ କରିଛନ୍ତି । ରାଜନୀତିରେ ପ୍ରବେଶ କରିବା ପାଇଁ ତାଙ୍କର କୌଣସି କୌଣସି ଆତ୍ମୀୟ ତାଙ୍କୁ ପ୍ରେରଣା ଦେଇଥିଲେ ମଧ ଦେବୀ ସରସ୍ୱତୀଙ୍କର ମନୋରମ କୁଞ୍ଜ ପରିତ୍ୟାଗ ନକରିବାକୁ ସେ ଅଧିକ ଗୁରୁତ୍ୱ ଦେଇ ସେ ରାଜନୈତିକ ବାତାବରଣଠାରୁ ଦୂରରେ ରହିବା ପାଇଁ ଅଧିକ ପସନ୍ଦ କରି ଅଛନ୍ତି । ସେ ଅଧାପକ ଜୀବନରେ ଉଲ୍ଲେଖଯୋଗ୍ୟ ଛାତ୍ରପ୍ରିୟତା ଏବଂ ଜନପ୍ରିୟତା ଅର୍ଜନ କରି ସମଧର୍ମୀ ବହୁ ବନ୍ଧୁଙ୍କର ଅଶେଷ ପ୍ରିୟପାତ୍ର ହୋଇଥିବା ସଂଗେ ସଂଗେ ଈର୍ଷାର କାରଣ ମଧ ହୋଇଛନ୍ତି । କିନ୍ତୁ ଜଗନ୍ନାଥଙ୍କ ଚରଣରେ ଆଶ୍ରୟ ନେଇ କାହାରିକୁ ଭ୍ରୁକ୍ଷେପ କରିନାହାନ୍ତି । ତାଙ୍କର ଧର୍ମପତ୍ନୀ ଥିଲେ ପରମ ସୌଭାଗ୍ୟବତୀ ଏବଂ ଆଜୀବନ ତାଙ୍କର କର୍ମସଙ୍ଗିନୀ, ସୌଭାଗ୍ୟକ୍ରମେ ତାଙ୍କର ସନ୍ତାନବର୍ଗ ଏବଂ ନିକଟତମ ବନ୍ଧୁବର୍ଗ ତାଙ୍କର ଅନୁଗତ ଥିଲେ । ପଦେ କଥାରେ ତାଙ୍କର ସାମାଜିକ, ପାରିବାରିକ ବନ୍ଧୁଭିତ୍ତିକ ଏବଂ ଶିକ୍ଷକ ଜୀବନ ଅତି ଉଚ୍ଚକୋଟୀର ଥିଲା । ସାଧାରଣ ଭାବରେ କହିଲେ ସେ ଜଣେ ବୁଦ୍ଧିମନ୍ତ, ଗୁଣବନ୍ତ ଏବଂ ବିଦ୍ୟା ବିଳାସୀ ଉତ୍କଳୀୟ ସାଧକ ଥିଲେ ।

■■

# ପବିତ୍ର ସ୍ମୃତିରେ

*- ମନୋଜ ମଞ୍ଜରୀ ମିଶ୍ର*

ଚାହୁଁ ଚାହୁଁ ବର୍ଷଟିଏ ବିତିଗଲା । କାହ୍ନୁ ଭାଇନା ସ୍ମୃତି ହୋଇ ରହିଗଲେ ପତ୍ନୀ, ପୁତ୍ର କନ୍ୟା ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନଙ୍କ ଜୀବନର କଳାପଟାରେ ଅଲିଭା ଗାରଟିଏ ହୋଇ । ସମୟର ସ୍ରୋତରେ ସମସ୍ତେ ଭାସିଯିବେ, କିଏ ଆଗ, କିଏ ପଛରେ । ତେବେ ସମସ୍ତଙ୍କ ସ୍ମୃତି ଚିରଦିନ ଅମଳିନ ରହିବ ନାହିଁ । ରହିବ କେତେଜଣଙ୍କର, ଯେଉଁମାନେ ପ୍ରକୃତ ମଣିଷ ପଦବାଚ୍ୟ ହେଇଥିବେ ।

ସେଇ ହସ ହସ ମୁହଁ ମଧୁର ବଚନ କହୁଥିବା, ନିରହଙ୍କାରୀ କର୍ମଯୋଗୀ, ଆଳସ୍ୟହୀନ ଶୁଭ୍ର ଖଦଡ଼ ଧୋତି ପଞ୍ଜାବୀ ପିନ୍ଧିଥିବା ଅଳ୍ପ ଉଚ୍ଚାର ମଣିଷଟି ଆଉ ଆଜି ଆମ ଗହଣରେ ନାହାନ୍ତି, ରହିଛି ତାଙ୍କର କିଛି ସ୍ମୃତି ।

ଜଣେ ଛାତ୍ରବତ୍ସଳ ଗୁଣୀ ଜ୍ଞାନୀ ଅଧ୍ୟାପକ ଭାବରେ ନୁହଁନ୍ତି, ଜଣେ ମମତା ବତ୍ସଳ ପିତା ଭାବରେ, ସ୍ନେହସିକ୍ତ ସ୍ୱାମୀ ଭାବରେ, ଉଦାର ହୃଦୟ ଗୁରୁଜନ ଭାବରେ ସେ ଚିରଦିନ ମନେ ରହିବେ ତାଙ୍କର ଗୁଣଗ୍ରାହୀ ଜନମାନସରେ ।

ମୁଁ ତାଙ୍କର ଆତ୍ମୀୟା । ଯେଉଁଠି ଦେଖାହେଲେ କହୁଥିଲେ ଭଲ ଅଛ ? ଲେଖାଲେଖି ଚାଲିଛି ତ ? ସେଇ ପଦକ କଥାରେ ଭରି ରହିଥିଲା କେତେ ଆତ୍ମୀୟତା, କେତେ ମମତା, ସ୍ନେହର ସୁରଭି । ଖୁବ୍ କମ୍ ଆସିଛି ତାଙ୍କ ସଂସ୍ପର୍ଶରେ ମାତ୍ର ଯେତିକି ଦେଖିଛି ଜାଣିଛି ସେ ଜଣେ ମଣିଷ ପରି ମଣିଷଟିଏ ଥିଲେ । ତାଙ୍କ ଭଳି ନିରାଡମ୍ବର, ତ୍ୟାଗୀ, ହୃଦୟବାନ ପୁରୁଷ ଏ ଯୁଗରେ ଖୁବ୍ କମ୍ ଦେଖାଯାଆନ୍ତି । ଜୀବନସାରା କର୍ମ କରି ଯାଇଛନ୍ତି ଫଳ ଆଶା କରିନାହାନ୍ତି । ସୁଖ ପାଇଛନ୍ତି, କିନ୍ତୁ ସୁଖ ପଛରେ ଧାଇଁନାହାନ୍ତି । ସମ୍ମାନ ଗୌରବ ସବୁର ଅଧିକାରୀ ହୋଇ ମଧ୍ୟ ଏକାନ୍ତ ନମ୍ର ଅହଙ୍କାର ଶୂନ୍ୟ ଜୀବନ କଟାଇ ଆସିଛନ୍ତି ।

ଏ ଭଳି ଜୀବନ କେତେଜଣ ପାଇଛନ୍ତି ? ସେହି ପିତୃପ୍ରତିମ ଡଃ କାହ୍ନୁଚରଣ ମିଶ୍ରଙ୍କର ପବିତ୍ର ସ୍ମୃତିରେ ଆଜି ତାଙ୍କର ପରଲୋକଗତ ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳୀ ଜ୍ଞାପନ କରୁଛି ।

■■

# ନନାଙ୍କୁ ପ୍ରଣାମ

**- *ଶରତଚନ୍ଦ୍ର ଶତପଥୀ***

ସେ ଥିଲେ ବାପାଙ୍କର ବନ୍ଧୁ । ମୋ ଜେଜେ ତାଙ୍କୁ ଖୁବ୍ ସ୍ନେହ କରୁଥିଲେ । ସମ୍ପର୍କର ଜଳଧାରା ସମୟର ମରୁବାଲିରେ ଅସମୟରେ ହଜିଗଲା । ବାପା ଓ ନନା ଜୀବନର ଭିନ୍ନ ଭିନ୍ନ ରାସ୍ତାରେ ପଥଚାରୀ ହୋଇ ପରସ୍ପରକୁ ପ୍ରାୟ ଭୁଲିଗଲେ । ଏପରିକି, ମୋତେ କଲେଜରେ ବିଦ୍ୟାଦାନ କରୁଥିଲେ ମଧ ସେ ମୋତେ ଜଣେ ଛାତ୍ର ବ୍ୟତୀତ ବାଲ୍ୟବନ୍ଧୁଙ୍କ ପୁଅ ବୋଲି ଜାଣି ମଧ ନଥିଲେ । ପରବର୍ତ୍ତୀ କାଳରେ ମୋର ପରମ ସୌଭାଗ୍ୟକୁ ବିଧିର ବିଧାନରେ, ମୁଁ ତାଙ୍କର ଜାମାତା ହେଲି । ଦୁଇ ପରିବାର ସମ୍ପର୍କର ପୁଣି ପୂର୍ଣ୍ଣଗର୍ଭା ସ୍ରୋତସ୍ୱିନୀରେ ପରିଣତ ହେଲା । ଜେଜେ ତାଙ୍କ ପ୍ରିୟ କାହ୍ନୁକୁ ଫେରି ପାଇଲେ, ବାପା ପାଇଲେ ତାଙ୍କ ବାଲ୍ୟବନ୍ଧୁଙ୍କୁ ତେଣୁ ମୁଁ ନନାଙ୍କୁ ବିଭିନ୍ନ ପରିପ୍ରେକ୍ଷୀରେ ଲକ୍ଷ୍ୟ କରିଛି ଅନୁଶୀଳନ ଓ ଅନୁଭବ କରିଛି । ତାଙ୍କ ଆବର୍ତ୍ତମାନରେ ଆଜି ସେହି ଅତିକ୍ରାନ୍ତ ସମୟର ଅସୁମାରୀ ଅନୁଭବ ସ୍ମୃତି ହୋଇ ଅତ୍ୟନ୍ତ ନିବିଡ ଭାବରେ ଅନ୍ତରାତ୍ମାକୁ ଆନ୍ଦୋଳିତ କରୁଛନ୍ତି ।

ସେ ଚାକିରୀ କ୍ଷେତ୍ରରେ ଓଡ଼ିଆ ସାହିତ୍ୟର ଶିକ୍ଷକ ଥିଲେ । କିନ୍ତୁ ବ୍ୟକ୍ତିତ୍ୱରେ, ଚିନ୍ତାଧାରାରେ ଦୃଷ୍ଟିକୋଣରେ ସେ କେବଳ 'ଶିକ୍ଷକ' ଥିଲେ । ଅଧ୍ୟାପକ, ପ୍ରାଧ୍ୟାପକ କି ପ୍ରଫେସର ନଥିଲେ । ତାଙ୍କ ଲାଗି ସମସ୍ତେ ତାଙ୍କର ଛାତ୍ରଛାତ୍ରୀ । ସେମାନଙ୍କର ସର୍ବବିଧ ଉନ୍ନତି ଲାଗି ସେ ସର୍ବାନ୍ତକରଣରେ ସେମାନଙ୍କୁ କେବଳ ଯେ ଶୁଭେଚ୍ଛା ଓ ଆଶୀର୍ବାଦ ଦେଉଥିଲେ ତା ନୁହେଁ, ସେମାନଙ୍କର ଚରିତ୍ର ଗଠନ, ଶାରୀରିକ, ମାନସିକ, ଆଧାତ୍ମିକ ଅଭିବୃଦ୍ଧି ଲାଗି ଯତପରୋନାସ୍ତି ଯତ୍ନଶୀଳ ଥିଲେ । ଦରକାର ପଡ଼ିଲେ ଆପଣାଛାଏଁ ପିଲାମାନଙ୍କର ସାଂସାରିକ ଭଲମନ୍ଦ ବୁଝି ସେମାନଙ୍କୁ ଯଥା ସମ୍ଭବ ସାହାଯ୍ୟ କରୁଥିଲେ । କିଏ ନାଁ ଲେଖେଇବ, ଛାତ୍ରାବାସରେ ରହିବାର ସୁଯୋଗ ପାଇବ, ଆର୍ଥିକ ଅସୁବିଧାରୁ ମୁକ୍ତି ପାଇବ, ପାଠପଢ଼ାରେ ମନୋନିବେଶ କରିବାକୁ ସମୟ ସୁଯୋଗ ପାଇବ ସବୁ ଦାୟିତ୍ୱ ତାଙ୍କର ବୋଲି ସେ ଭାବୁଥିଲେ । ପିଲାଟିକୁ ସତ୍ୟାଶ୍ରୟୀ ଜ୍ଞାନପିପାସୁ ନିଷ୍ଠାପର ବିଦ୍ୟାର୍ଥୀ ରୂପେ ପ୍ରତିଷ୍ଠା କରିବାକୁ ସେ କେବେ ପଛଘୁଞ୍ଚା ଦେଉନଥିଲେ । ତାର ସ୍ୱାସ୍ଥ୍ୟ ଭଲ ରହିବ, ମନ, ଅଯଥା ଚିନ୍ତାରୁ ମୁକ୍ତ ଓ ସୁସ୍ଥ ରହିବ, ଏହାହିଁ ତାଙ୍କର ଚିନ୍ତାର ବିଷୟ ଥିଲା । ସେଥିଲାଗି ପରବର୍ତ୍ତୀ କାଳରେ ବହୁ ଉଚ୍ଚ ପଦବୀରେ ପ୍ରତିଷ୍ଠିତ ହୋଇ ସଂସାରରେ ବିଭିନ୍ନ କ୍ଷେତ୍ରରେ ଯଶସ୍ୱୀ ହୋଇଥିବା ବହୁ ପ୍ରତିଭାଶାଳୀ, ବିଦ୍ୱାନ ବ୍ୟକ୍ତିମାନେ ତାଙ୍କ ସହ ସମ୍ପର୍କ ରଖିବାକୁ

ଭଲ ପାଉଥିଲେ । ତାଙ୍କ ସହ ଅତୀତ ସମ୍ପର୍କର ସ୍ମୃତିଚାରଣ କରି ଉଲ୍ଲସିତ ହେଉଥିଲେ ଏବଂ ଆଜି ତାଙ୍କ ଆବର୍ତ୍ତମାନରେ ତାଙ୍କର ଅନୁପସ୍ଥିତିକୁ ବ୍ୟକ୍ତିଗତ ଏବଂ ସାମାଜିକ, ସାମୂହ କ୍ଷତି ବୋଲି ଭାବି, ବହୁ ଲୋକ ମ୍ରିୟମାଣ ହେଇଛନ୍ତି । ସେମାନେ ସମସ୍ତେ ତାଙ୍କର ପ୍ରିୟ, ଛାତ୍ର ଜୀବନରେ ସେ କାହାରିଠାରୁ ବ୍ୟକ୍ତିଗତ ଭାବରେ କିଛି ଆଶା କରୁନଥିଲେ । କଥା କଥାକେ ନନା ପ୍ରଶଂସା କରନ୍ତି ସେମାନଙ୍କୁ, ଖୁସି ହୁଅନ୍ତି ''ଆମ ଛାତ୍ର ସିଏ' କହି ତାଙ୍କ ଚିରାଚରିତ, ବାଳସୁଲଭ ଠାଣୀରେ ହସି ଦିଅନ୍ତି । ସେ ହସରେ ଥାଏ ପରିପୂର୍ଣ୍ଣ ଆଶୀର୍ବାଦ । ସେ ଆଜି ଯେଉଁଠି ଥିଲେ ବି ନିଶ୍ଚୟ ତାଙ୍କର 'ଛାତ୍ର'ମାନଙ୍କୁ ମନେ କରୁଥିବେ । କଲ୍ୟାଣ କରୁଥିବେ (ଟେଲିଫୋନ କରିପାରିବାର ବ୍ୟବସ୍ଥା ଥିଲେ ସେ ନିଶ୍ଚିତ ଭାବରେ କହନ୍ତେ ''ପ୍ରଫେସର କେସି ମିଶ୍ର କହୁଛି, କେମିତି ଅଛ, ଭଲ ଅଛ, ବାସ୍'') ଶିକ୍ଷକ ଭାବରେ ତାଙ୍କର ସାହିତ୍ୟାନୁରାଗ, ବିଦ୍‌ବତ୍ତା, କଠୋର ଅଧ୍ୟବସାୟ, ଶିକ୍ଷାଦାନ ସମ୍ବନ୍ଧୀୟ ଆଦର୍ଶ, ସାଧୁତା, ବାଗ୍ମିତା, ଜ୍ଞାନଦୀପ୍ତ- ଧୀଶକ୍ତି, ସଂକଳ୍ପ ପରାକାଷ୍ଠା ଓ କର୍ତ୍ତବ୍ୟନିଷ୍ଠା, ତାଙ୍କ ଜୀବନ କାଳରେ ତାଙ୍କୁ ଏକ ବିରଳ ବ୍ୟକ୍ତିତ୍ୱ ରୂପେ ପ୍ରତିଷ୍ଠିତ କରିଥିଲା । ଭବିଷ୍ୟତ ଲାଗି ପ୍ରତିଟି ସତ୍ୟ ସଂଧାନୀ, ଜ୍ଞାନପିପାସୁ ବିଦ୍ୟାର୍ଥୀ ଲାଗି ସେ ରହିବେ ଅଜ୍ଞାନ ଅନ୍ଧକାର ମଧ୍ୟରେ ମୃତ୍ୟୁହୀନ, ଚିର ଦେଦୀପ୍ୟମାନ ଉଜ୍ଜ୍ୱଳ ଭାସ୍କର ହୋଇ ।

ଘରର ଜୋଇଁ ତାଙ୍କୁ ସାଂସାରିକ ପରିପ୍ରେକ୍ଷୀରେ ଦେଖିବାର ସୁଯୋଗ ମିଳିଲା । ଜଣେ 'ସଂସାରୀ' ରୂପରେ । ଖୁବ୍ ବଡ଼ ସଂସାର ତାଙ୍କର, ଚିନ୍ତା ଓ ଚେତନାରେ ସେ ଏକ ଯୌଥ ପରିବାରର ସ୍ୱତଃ ପ୍ରବୃତ୍ତ ହୋଇ ଦାୟିତ୍ୱ ଗ୍ରହଣ କରିଥିବା ବ୍ୟକ୍ତି । ତାଙ୍କର ଶିକ୍ଷା ଓ ସଂସ୍କାର, ଆଦର୍ଶ ଓ ମୂଲ୍ୟବୋଧ ତାଙ୍କୁ କେବେ ସଂକୀର୍ଣ୍ଣ ହେବାକୁ ଦେଇନଥିଲା । ତେଣୁ ବାହ୍ୟ ଜଗତକୁ ଭିନ୍ନ ପ୍ରକାର ଦିଶୁଥିଲେ ମଧ୍ୟ ସାରା ଜୀବନ ଆର୍ଥିକ ଦୃଷ୍ଟିରୁ ସେ କେବେ 'ଧନୀ' ନଥିଲେ । ଶେଷ ପର୍ଯ୍ୟନ୍ତ ମଧ୍ୟ ନୁହେଁ । କିନ୍ତୁ ତାଙ୍କ ଦୀର୍ଘ ଜୀବନପଥରେ 'ଧନ' ପ୍ରାପ୍ତି ଲାଗି, ଅଥବା 'ଧନ'ର ଅଭାବ ଥିବା ଦୃଷ୍ଟିରୁ ତାଙ୍କୁ ବ୍ୟସ୍ତ ବା ବିବ୍ରତ ହେବାର କେହି କେବେହେଲେ କେଉଁଠାରେ, କେତେବେଳେ ଦେଖିନାହିଁ । ଘରଲୋକ ନୁହଁନ୍ତି କି ପରଲୋକ ମଧ୍ୟ ନୁହଁନ୍ତି । ତାଙ୍କ ତୁଣ୍ଡରେ 'ଅଭାବ' ନାହିଁ, 'ଜଣ କରିବା' ଏଭଳି ଦାରିଦ୍ର୍ୟ ଅସହାୟତା ସୂଚକ ଶବ୍ଦ ଭଗବାନ ନିଜେ ମଧ୍ୟ ଥରେ ଶୁଣିନଥିବେ । ସବୁଥିରେ ସେ ସନ୍ତୁଷ୍ଟ, ପରିପୂର୍ଣ୍ଣ । ଅନୁଶୋଚନା ନାହିଁ, ହୀନ ମନ୍ୟତା ନାହିଁ । ସଂସାର ଧର୍ମରେ ଅଭାବ ବୋଧ ତାଙ୍କୁ ତିଳ ପ୍ରମାଣେ ସ୍ପର୍ଶ କରିନଥିଲା । ଭାଇମାନେ ମଣିଷ ହେବେ, ଘରଦ୍ୱାର କରିବେ, ପୁଅଝିଅ, ଭଣଜା ପାଠପଢ଼ିବେ, ପୁଅଝିଅ ବାହାହେବେ, ଝିଆରୀ, ପୁତୁରା ନିଜ ଗୋଡରେ ଠିଆ ହେବେ ଘରର ମାନ ସମ୍ମାନ ଅକ୍ଷୁଣ୍ଣ ରହିବ, ଏସବୁ କାମ ସେ ନିର୍ଭୟରେ କରି ଚାଲୁଥିଲେ, ନିଜ

ସାଧମତେ । ଥରେ ହେଲେ ସେ ଅର୍ଥର ଅଭାବକୁ କେବେହେଲେ 'ଆଳ' କରିନାହାନ୍ତି । ସାହିତ୍ୟରେ ବିଦ୍ୱାନ, ତତ୍ତ୍ୱରେ ମହାନ ଭାଷାରେ ଧୂରୀଣ, ତାଙ୍କର ଜ୍ଞାନର ପରିଧିରେ ଅଭାବ ସୂଚାଇଥିବା କାର୍ଯ୍ୟ ବା ତଦ୍ ସଂକ୍ରାନ୍ତୀୟ ପରିଭାଷା ମାନଙ୍କର ସ୍ଥାନ ନଥିଲା । ତାଙ୍କର ପ୍ରଚଣ୍ଡ ଇଚ୍ଛାଶକ୍ତି ଓ ସକରାତ୍ମକ ମାନସିକତା ଦେଖି, ଏସବୁ ଚିନ୍ତା ଓ ଭାବଧାରା ଆପଣାଛାଏଁ ତାଙ୍କ ଭିତରୁ ଅନ୍ତର୍ଦ୍ଧାନ ହୋଇଥିଲେ ବୋଲି ମୋର ବିଶ୍ୱାସ ।

ଆଜିର ବସ୍ତୁବାଦୀ ଯୁଗରେ ଅସଲି ଧନୀ ଲୋକମାନେ ନିଜକୁ ଅଭାବୀ ବୋଲି ଚାତୁର୍ଯ୍ୟପୂର୍ଣ୍ଣ ଠାଣୀରେ ପ୍ରତିପାଦନ କରି ବାହାବାଃ ନେବାକୁ ସଂଭ୍ରାନ୍ତ ପଣିଆ ବୋଲି ମନେ କରୁଥିଲାବେଳେ, ନନାଙ୍କର ଧନ ଲାଗି ଆତ୍ମିକ ଓ ଆଧାତ୍ମିକ ଅନାସକ୍ତ ଭାବ ତାଙ୍କୁ ଏକ କାଳଜୟୀ ଆଦର୍ଶ ସଂସାରୀ କରିପାରିଥିଲା । ସେ ଧନକୁ ଘୃଣା କରୁନଥିଲେ । କିନ୍ତୁ ଧନର ଦାସତ୍ୱକୁ ଆଗ୍ରହରେ ଆପଣାର କରିନେବା ଦୃଷ୍ଟିକୋଣକୁ ନୀଚ ମନୋବୃତ୍ତି ବୋଲି ଚିହ୍ନି ପାରିଥିଲେ । ଥରେ ରିକ୍ସାରେ ବସି ଆସିବା ସମୟରେ ସେ ୫୦୦୦ ଟଙ୍କାର ବ୍ୟାଗଟି ଛାଡିଦେଇ ଆସିଲେ । ଏତେଗୁଡ଼ା ଟଙ୍କା ହଜିଗଲା ବୋଲି ଆମେ ସମସ୍ତେ ବ୍ୟସ୍ତ ହେଲୁ । ନିଜର ଅନେକ ଦିନର ଜମା ଥିବା ପେନସନ ଟଙ୍କା ବ୍ୟାଙ୍କରୁ ଧରି ନନା ଘରକୁ ଆସୁଥିଲେ ସେଦିନ । ପନ୍ଦର ମିନିଟ୍ ପରେ ସେ ନିଜେ ଭୁଲିଗଲେ ଯେ ଟଙ୍କା ହଜିଯାଇଛି ବୋଲି । ଏବଂ ଦିନେ ଦୁଇଦିନ ପରେ ତାଙ୍କର ସ୍ମୃତିପଟରୁ ସେ ଘଟଣାଟି ମଧ ହଜିଗଲା । ପଚାରିଲେ ମଧ ସେ ଠିକ୍ କରି ମନେ କରି ପାରିଲେ ନାହିଁ । ଅଥଚ କିଟ୍‌ମିଟିଆ ସଂସ୍କୃତ ଶ୍ଳୋକ, କି ଅତି ଅଡୁଆ ଶାସ୍ତ୍ର ପୁରାଣ କଥା ପଚାରିଦେଲେ, ଠିକ୍ କରି କହିଦେବେ । ସବୁକାମ ଛାଡ଼ି ଆଲୋଚନା ଆରମ୍ଭ କରିବେ, ଅନର୍ଗଳ କହିଚାଲିବେ, ପଦ ପରେ ପଦ- ଶ୍ଳୋକ ପରେ ଶ୍ଳୋକ ସେ ସଂସାରରେ ରହି ମଧ ସାଂସାରିକ ଦୋଷ ମାନଙ୍କ ଠାରୁ ବହୁ ଦୂରରେ ଥିଲେ । ତାଙ୍କ ଆତ୍ମା ସଂସାର ଉର୍ଦ୍ଧ୍ୱରେ ଏକ ଅନ୍ୟ ପୃଥିବୀରେ ଅବିରତ ଘୁରି ବୁଲୁଥିଲା । ସେ ଥିଲେ ପ୍ରକୃତରେ ସଂସାରର ପଦ୍ମପତ୍ରରେ ନୀର ବିନ୍ଦୁ, ଅସ୍ଥିର, ଢ଼ଳଢ଼ଳ, ଅସୀମ ସିନ୍ଧୁରେ ମିଶିଯିବା ଲାଗି ସତେ ଉଦ୍‌ବେଳ । ଏଇ କେତେଦିନ ତଳେ ମୋ ଭେଜେଙ୍କୁ ସ୍ୱପ୍ନ ଦେଖିଲି । ସେ କହିଗଲେ, ଆରେ ବୋଉ କାହିଁକି କାନ୍ଦୁଛି, ନନା ଖୁବ୍ ଭଲରେ ଅଛି । ଭେଜେ ତାଙ୍କୁ ଖୁବ୍ ଭଲ ପାଉଥିଲେ ।

ଏ ସଂସାର ବାହାରେ ଅନ୍ୟ କେଉଁ ସୁବର୍ଣ୍ଣ ଲୋକରେ ନନା ଅପେକ୍ଷା କରିଛନ୍ତି, ଖୁସିରେ ବୋଉଙ୍କୁ, ଜ୍ଞାତି କୁଟୁମ୍ବ, ପ୍ରିୟଜନ ସମସ୍ତଙ୍କୁ । ସମସ୍ତେ ପୁଣି ଆସିବେ, ନନା ତାଙ୍କର ଶିଶୁ ସୁଲଭ ହସ ହସି ସମସ୍ତଙ୍କୁ ପଚାରିବେ- ''ଆଉ ହବ ନାହିଁ ! ଏତେ ଡେରିକଲ ଆସ ଆସ ।'' ସେଦିନକୁ ଅପେକ୍ଷା କରି ତାଙ୍କୁ ମୋର ଶତ ଶତ ପ୍ରଣାମ ।

■■

# ହେ ମୋର ଗୁରୁଙ୍କ ଗୁରୁ

- ସଂଘମିତ୍ରା ମିଶ୍ର

କେତେ ଶବ୍ଦ ସମୁଦ୍ର ଲଂଘିଲେ

ମୁଁ ସମର୍ଥ ହେବି ଆପଣଙ୍କ

ସିଦ୍ଧିର ପାଦ ସ୍ପର୍ଶ କରିବାକୁ !

କେତେ ଭାଷାର କାରୁକାର୍ଯ୍ୟ କରିପାରିଲେ

ମୁଁ ଚିହ୍ନିପାରିବି ମୋ ଭାଷା ସରସ୍ୱତୀଙ୍କ

ବରପୁତ୍ରଙ୍କୁ- ମୁଁ ଜାଣେନି,

ଆପଣତ ଗୁରୁଙ୍କର ଗୁରୁ

ସକଳ ସମ୍ଭାବ୍ୟ ପ୍ରଶ୍ନର ଉତ୍ତର

ଜିଜ୍ଞାସାର ପରିପୂର୍ତ୍ତି, ମନେହୁଏ

ମୋ ଭାଷା ସାହିତ୍ୟ ପାଇଁ ଆପଣ ହିଁ

ଅନୁପମ ବାଞ୍ଛାକଳ୍ପତରୁ ।

ସାହିତ୍ୟ ସୃଷ୍ଟି ସହିତ ଶୋଣିତ ସମ୍ପର୍କ

ଯେଉଁ ସମାଲୋଚନାର

ଆପଣ ହିଁ ଚିହ୍ନିଥିଲେ

ଅନୁଭବି ଥିଲେ ନିଜ ଅଭିଜ୍ଞତା ଦେଇ ।

କେଉଁଠାରୁ ପାଇଥିଲେ ସାଧକର ନିଷ୍ଠା

ଆଉ ଧାର୍ମିକର ଏକନିଷ୍ଠ ବିଶ୍ୱାସ ପ୍ରଚୁର !

ଆପଣଙ୍କ ପ୍ରଜ୍ଞାକୁ ସ୍ପର୍ଶ ନକରି

ଏମିତି କିଏ ସେ ଅଛି କହନ୍ତୁ ତ ?

ଯିଏ ବା ପଢ଼ିଛି ଆମ ଇତିହାସ, ପ୍ରତ୍ନତତ୍ତ୍ୱ

ସାଂସ୍କୃତିକ ଇତିହାସ ଧାରା

କିଏ ବା ପଢ଼ିନି ସେହି 'ଓଡ଼ିଶୀ ବୈଷ୍ଣବ ଧର୍ମ'

କିଏ ନଚିହ୍ନିଛି ବାଟ ପଢ଼ିସାରି ଆପଣଙ୍କ 'ଆଲୋଚନାମାଳା' ।

'ସାହିତ୍ୟ ସମୀକ୍ଷା' ପରା ଆପଣଙ୍କ

ଯୁକ୍ତିସିଦ୍ଧ ପ୍ରତିଭାର ଅମୂଲ୍ୟ ରତନ !

ସର୍ବଭାରତୀୟସ୍ତରେ ଆପଣ ଚିହ୍ନାଇଛନ୍ତି ଆମ ଭାଷା ସଂପଦକୁ

ପ୍ରାଚ୍ୟ ବିଦ୍ୟା ଗବେଷଣା କକ୍ଷେ ଆହା

କରାଇଛନ୍ତି ଅନେକ ଅମୂଲ୍ୟ ସଂପାନ ।

ବିଦେଶରେ ବାରବାର କରିଛନ୍ତି ଜଗନ୍ନାଥ ଧର୍ମଚର୍ଚ୍ଚା

ଭୁଲିଛନ୍ତି ଜାତି ଧର୍ମ ସଂକୀର୍ଣ୍ଣତା ଯେତେ,

ସମସ୍ତ ମାନବ ଶିଶୁ ଈଶ୍ୱର ସନ୍ତାନ ବୋଲି

ଅନୁଭବ କରିଛନ୍ତି, କହିଛନ୍ତି ଭୁଲିଯାଅ ସାନବଡ଼

ଭାବିଦେଖ ଆସିଥିଲେ ସଂସାରକୁ ଦେଇ କେତେ,

ନେଇଗଲ କେତେ !

କେମିତି କଳନା ଅବା କରିବି ମୁଁ ଆପଣଙ୍କୁ

ଲୁଣ କି କଳନା କେବେ କରିପାରେ

ସମୁଦ୍ରର ବ୍ୟାପ୍ତି ଗଭୀରତା !

ଆପଣତ ପରମ୍ପରା ବଟବୃକ୍ଷ, ଏତିକି ଜାଣିଛି ମୁଁ

ଆମଭଳି ସାନ ସାନ ଓହଳମାନଙ୍କ ପାଇଁ

ଆପଣଙ୍କ ମନତଳେ ଚିରଦିନ ଭରିଥିଲା ଅପୂର୍ବ ମମତା ।

୧.୦୯

ବିଭାଗ ପାଠଚକ୍ରରେ ମନ୍ତ୍ରମୁଗ୍ଧ ହୋଇ ମୁଁ

କେତେଥର ଶୁଣିଅଛି ଜ୍ଞାନଦୀପ୍ତି ସେ ବକ୍ତୃତା ।

ସଂଘମିତ୍ରା, ଭଲଅଛ ?

ପଢ଼ିଛି ତୁମ କବିତା ବହୁବାର, ଭଲ ଲାଗେ ମୋତେ

ଏଇ ପବିତ୍ର ସଂପଦ ଧନୀ କରିଅଛି ମୋତେ

ସେକଥା ସ୍ୱପ୍ନ ହେଲାଣି ଚାହୁଁ ଚାହୁଁ ବର୍ଷେ ହେଲା

କଣ ପାଇଁ ମନେ ଜମା ଆସୁନି ପରତେ ।

ସାହିତ୍ୟ ସାଥିରେ ରହେ, ହିତରେ ବି ଲାଗିଥାଏ

ଆପଣଙ୍କୁ ଦେଖିଦେଲେ ଲାଗୁଥିଲା

ସତ କଥା ଇଏ ।

ଆଜି ଆପଣଙ୍କ ସହିତରେ ଥିବେ ଯେତେ

ବଂଧୁ ଆଉ ଛାତ୍ରଛାତ୍ରୀ ଆତ୍ମୀୟ ସ୍ୱଜନ

ସେହି ଦିବ୍ୟ ଜଗତରେ କେଉଁ କଥା ଭାବନ୍ତି ସଭିଏଁ ?

ହେ ମୋର ଗୁରୁଙ୍କ ଗୁରୁ

ପିତୃକଳ୍ପ ପରମ ଆତ୍ମୀୟ,

ଆଶିଷ ଦିଅନ୍ତୁ ଢ଼ାଳି

ବିଶ୍ୱାସ ଦୁର୍ବଳ ଯଦି ହେବ କେବେ

ମଥାରେ ରଖିବେ ହାତ,

କଥା ଦେଇଥାନ୍ତୁ ମୋତେ

ତୁଟାଇବେ ସକଳ ସଂଶୟ ।

■■

# ଆତ୍ମୀୟତାର ପ୍ରତୀକ ଆଚାର୍ଯ୍ୟ କାହ୍ନୁଚରଣ

*- ଡକ୍ଟର କମଳକାନ୍ତ କର*

ସାଧାରଣ ଭାବରେ ଜଣଙ୍କର ପରିଚୟ ଦେବାକୁ ହେଲେ, ତାକୁ ଆତ୍ମୀୟ, ସ୍ୱଜନ, ପରିଜନ, ଜ୍ଞାତି ବା କୁଟୁମ୍ବର ଲୋକ କୁହାଯାଇଥାଏ । ଏ ସବୁ ଶବ୍ଦ ପରିଭାଷିକ ବୋଲି ଅଭିଧାନମାନଙ୍କରୁ ମଧ୍ୟ ଜଣାଯାଏ । ତଥାପି ଅନେକେ ଆତ୍ମୀୟ ନ ଲଗାଇ ସ୍ୱଜନ ପରିଜନ ବୋଲି ପରିଚୟ କରାଇଲେ ମନରେ କଷ୍ଟ ଅନୁଭବ କରିଥାନ୍ତି ଓ ଜ୍ଞାତି କୁଟୁମ୍ବର ବୋଲି ପରିଚୟ ଦେଲେ ତୁଷ୍ଟ ହୋଇଥାନ୍ତି ଯଦିଓ ସମସ୍ତେ ଆତ୍ମୀୟ ବୋଲି ଦାବି କରିଥାନ୍ତି ।

ସ୍ୱଜନ ବୋଇଲେ ଆତ୍ମୀୟ ବ୍ୟକ୍ତି; ନିଜର ଲୋକ ଅର୍ଥାତ କୁଟୁମ୍ବ ବନ୍ଧୁବାନ୍ଧବ, ପରିଜନମାନଙ୍କୁ ବୁଝାଇଲେ ମଧ୍ୟ ସମସ୍ତେ ଆତ୍ମୀୟ ହୋଇନପାରନ୍ତି । ଜ୍ଞାତି ଓ କୁଟୁମ୍ବର ଲୋକେ- ଏକ ବଂଶ ଓ ଗୋତ୍ରର ହୋଇଥିଲେ ମଧ୍ୟ ବିଭିନ୍ନ କାରଣରୁ ଆତ୍ମୀୟ ହୋଇନପାରନ୍ତି । ମାତ୍ର ଜଣେ ଜ୍ଞାତି, ପରିଜନ ଓ କୁଟୁମ୍ବର ସଭ୍ୟ ନହୋଇ ମଧ୍ୟ ଆତ୍ମୀୟ ହୋଇପାରନ୍ତି । ସମସ୍ତ ଆତ୍ମୀୟ  ସ୍ୱଜନ, ମାତ୍ର ସମସ୍ତ ସ୍ୱଜନ ଆତ୍ମୀୟ ହୋଇପାରିବେ ନାହିଁ ।

ସ୍ୱଜନରେ ରହିଛି ପରିଚୟ ଦେଉଥିବା ଲୋକଙ୍କର ଅଧିକାରର ସୂଚନା ଓ ଜ୍ଞାତି କୁଟୁମ୍ବରେ ଭରି ରହିଛି ପରିଚିତ ହେବାକୁ ଯାଉଥିବା ଲୋକର ଉତ୍ତରାଧିକାରୀ ସୂତ୍ରରେ ପାଇଥିବା ସ୍ୱାର୍ଥଗତ ଦାବି ଜାହିର କରିବାର ପ୍ରବଣତା ବା କିଛି ଗୋଟିଏ ପାଇବାର ଆଶା । ମାତ୍ର ଆତ୍ମୀୟର ନଥାଏ କିଛି ଦେବାରେ ନା ନେବାରେ । ସେ କେବଳ ସମଭାବାପନ୍ନ ହୋଇ ଜଣଙ୍କର ଭଲ-ମନ୍ଦ, ହାନୀ- ଲାଭ ତଥା ସୁଖ-ଦୁଃଖରେ ଏକାତ୍ମ ଭାବରେ ଜଡ଼ି ଯାଆନ୍ତି । ସେ ବେଶୀ ଭାଗ କେବଳ ସ୍ୱତଃ ପ୍ରଣୋଦିତ ଭାବରେ ଦେଇ ଚାଲିଥାନ୍ତି ମନ ଭିତରେ ଶାନ୍ତି, ଧୈର୍ଯ୍ୟ, ସହନଶୀଳତା ଓ ଆନନ୍ଦର ମାଦକତା ନେଇ ଯାଇଥାନ୍ତି ସବୁ କ୍ଲେଶ ଓ ଦୁଃଖ । ମାନବିକତାର ଅଫୁରନ୍ତ ଜୁଆର ଭରି ରହିଥାଏ ଆତ୍ମୀୟତାରେ ।

ହଠାତ ସକାଳେ ବା ସଂଧ୍ୟାରେ, ଟେଲିଫୋନ ବାଜି ଉଠିବ । ରିସିଭର ଟେକିଲେ ଶୁଣାଯାଏ 'ମୁଁ ମଉସା କହୁଛି, କେମିତି ଅଛୁ ? ମିଟୁ କେମିତି ଅଛି ? ଆଉ ସବୁ ପିଲାମାନେ କେମିତି ଅଛନ୍ତି  ନାନୀ କୋଉଠି ଓ କେବେ ଆସିବେ ?'' ଉତ୍ତର ପାଇବା ସଙ୍ଗେ ଟେଲିଫୋନ

ବନ୍ଦ । ଆଉ ପଦେ ବି କିଛି ଶୁଣା ଯାଏନା । ଯଦି ଶୁଣନ୍ତି କାହାର ଦେହ ଅସୁସ୍ଥ, ଦିନରେ ଆଉ ଦୁଇ ତିନିଥର । ଠିକ୍ ସେହି ପ୍ରକ୍ରିୟା । ବେଶି କିଛି ହୋଇଥିଲେ- ନିଜେ ଆସି ହାଜର । ୟୁନିଟ୍- ୨ରେ ମୁଁ ଥିଲାବେଳେ କାନ୍ଧରେ ଚାଦର ଖଣ୍ଡେ ପକାଇ ଚାଲି ଚାଲି ସକାଳୁ ସକାଳୁ ଆସି ଭଲମନ୍ଦ ବୁଝି ଯାଆନ୍ତି । ଚା' କପେ ମଧ୍ୟ ଗ୍ରହଣ କରନ୍ତି ନାହିଁ, ଯେତେ ଯାଚିଲେ ମଧ୍ୟ । ଅନେକେ କହନ୍ତି ଏହା ତାଙ୍କର ଅସ୍ଥିରତା, କିନ୍ତୁ ମୋର ଅନୁଭୂତି ହେଉଛି, ଏହା ହେଉଛି ତାଙ୍କର ଅଯଥାରେ ଅନ୍ୟର ସମୟ ନଷ୍ଟ ନକରି, ସମୟର ଉପଯୋଗକୁ ଠିକ୍ ଭାବରେ କରିବା, ଲୋକଙ୍କ ମନରେ ବିଶେଷ କିଛି ଚାପ ନପକାଇବାର ଅଭ୍ୟାସ । ଏହା ହିଁ ହେଉଛି ଆତ୍ମୀୟତାର ପ୍ରତୀକ ଏବଂ ମୋର ମନେ ହୁଏ, ତାଙ୍କ ସହିତ ସମ୍ପୃକ୍ତ ସମସ୍ତଙ୍କର ଏହିଭଳି ଅଭିଜ୍ଞତା ଊଣା ଅଧିକ ନିଶ୍ଚୟ ଥିବ ।

ପ୍ରଫେସର କାହ୍ନୁଚରଣ ମିଶ୍ର, ମୋ ମଉସା । ଜଣେ ପ୍ରକୃତ ଆଚାର୍ଯ୍ୟ ଭାବରେ ତାଙ୍କର ବିଦ୍‌ବତ୍ତା, ପାଣ୍ଡିତ୍ୟ, ଓଡ଼ିଶୀ ସଂସ୍କୃତି ଉପରେ ଗବେଷଣା ତଥା ସଂସ୍କୃତି ସମ୍ପନ୍ନ ଆଚାର ବିଚାର, ଆମକୁ ଯେତିକି ସିଧାସଳଖ ଭାବରେ ପ୍ରଭାବିତ କରିପାରି ନାହିଁ, ତାଙ୍କର ଆତ୍ମୀୟତା ହିଁ ତାଙ୍କର ଉପଯୁକ୍ତ ବିଶେଷତା ଆଡକୁ ମୋତେ ଅଧିକ ଆକୃଷ୍ଟ କରିଛି । ଶେଷ ରୋଗ ଶଯ୍ୟାରେ ମଧ୍ୟ ତାଙ୍କର ସେହି ଆତ୍ମୀୟତାର ନିଦର୍ଶନ ସ୍ନେହାଶୀଷ ଭରା ଆଖି ଦୁଇଟିର ଦୃଷ୍ଟିକୁ ଆମ ଉପରେ ପକାଇ ସେ ଆମକୁ ଧନ୍ୟ କରିଛନ୍ତି, ଏହା ହିଁ ମୋର ତାଙ୍କ ଶେଷାବସ୍ଥା ଶଯ୍ୟା ନିକଟର ଅନୁଭୂତି । ତାଙ୍କର ଏହି ପ୍ରଥମ ଶ୍ରାଦ୍ଧ ଦିବସରେ ସେହି ପୁଣ୍ୟାତ୍ମାଙ୍କ ପ୍ରତି ମୋର ଓ ମୋ ପରିବାରର ସମସ୍ତଙ୍କର ଶତକୋଟି ପ୍ରଣାମ ।

■■

# ଓଡ଼ିଆ ସାରସ୍ୱତ ଆକାଶରେ ଆଉ ଜଣେ କାହ୍ନୁ: ଏକ ସ୍ମୃତିଚାରଣ

*- ପ୍ରଫେସର ଜଗନ୍ନାଥ ଦାଶ*

ବିଂଶ ଶତାବ୍ଦୀର ଅଶୀ ଦଶକର ପ୍ରାରମ୍ଭରେ ଶ୍ରୀ ଜଗନ୍ନାଥ ସଂସ୍କୃତିର ଗବେଷଣା ପ୍ରତି ଅହେତୁକ ଆକର୍ଷଣ ଅନୁଭବ କଲାପରେ, ଗ୍ରନ୍ଥାଗାର ମାନଙ୍କରେ ଏ ସମ୍ବନ୍ଧୀୟ ପୁସ୍ତକଗୁଡ଼ିକର ଅନୁସନ୍ଧାନରେ ପ୍ରବୃତ୍ତ ହେଲି । ଉତ୍କଳୀୟ ତଥା ଜାତୀୟ ଭାଷାରେ ଅସଂଖ୍ୟ ବହି ପାଇଲି ସତ କିନ୍ତୁ ଇଂରାଜୀ ଭାଷାରେ କୌଣସି ପୁସ୍ତକର ସୂଚନା ପାଇ ନଥିବାରୁ ଶ୍ରୀ ଜଗନ୍ନାଥ ସଂସ୍କୃତି ବିଦେଶୀୟ ଭାଷାରେ ଏକ ପ୍ରକାର ଅବହେଳିତ ଅବସ୍ଥାରେ ଥିବାର ଅନୁଭବ କଲି । ଠିକ୍ ଏହିପରି ସମୟରେ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିବା ଏକ ପୁସ୍ତକ ମେଳାରୁ ପ୍ରଫେସର କାହ୍ନୁଚରଣ ମିଶ୍ରଙ୍କ "The Cult of Jagannath" ଶୀର୍ଷକ ଇଂରାଜୀ ପୁସ୍ତକଟି ଦେଖି ତତ୍‌କ୍ଷଣାତ କିଣି ଆଣିଲି । ଏଇ ଥିଲା ପ୍ରଫେସର କାହ୍ନୁଚରଣ ମିଶ୍ରଙ୍କ ସମ୍ପର୍କରେ ମୋର ବିନା ସାକ୍ଷାତରେ ପ୍ରଥମ ପରିଚୟ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କର ଓଡ଼ିଆ ପୁସ୍ତକ ପ୍ରଫେସର କାହ୍ନୁଚରଣ ମିଶ୍ରଙ୍କର ସାଙ୍ଗକୁ ଉପରୋକ୍ତ ଇଂରାଜୀ ପୁସ୍ତକଟି ମୋତେ ଶ୍ରୀ ଜଗନ୍ନାଥ ସଂସ୍କୃତି ସମ୍ପର୍କରେ ଏକ ପୁଙ୍ଖାନୁପୁଙ୍ଖ ଧାରଣା ଦେବାରେ ପୂର୍ଣ୍ଣ ସହାୟକ ହୋଇଥିଲା । ଓଡ଼ିଆ ସାହିତ୍ୟରେ ଜଣେ କାହ୍ନୁ (କାହ୍ନୁଚରଣ ମହାନ୍ତି) ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ନୂତନ ଦିଗନ୍ତ ଆଣିଥିଲେ, କିନ୍ତୁ ଆଉ ଜଣେ କାହ୍ନୁ (ପ୍ରଫେସର କାହ୍ନୁଚରଣ ମିଶ୍ର) ଗବେଷଣା କ୍ଷେତ୍ରରେ ଆଣିଲେ ବୈପ୍ଲବିକ ପରିବର୍ତ୍ତନ ସାହିତ୍ୟରେ ଧର୍ମ, ଦର୍ଶନ ଓ ନୃତତ୍ତ୍ୱକୁ ମିଶାଇ ।

୧୯୯୦ ମସିହାର ଆଦ୍ୟଭାଗ । ଯାହା ମନେ ପଡୁଛି ମାର୍ଚ୍ଚ ମାାସ ହେବ । କାହ୍ନୁବାବୁ ଆମ ବିଭାଗକୁ ଆସିଥିଲେ ମୋର ଶିକ୍ଷକ ପ୍ରଫେସର ନବକିଶୋର ବେହୁରାଙ୍କ ନିକଟକୁ ଶ୍ରୀ ଜଗନ୍ନାଥ ସଂସ୍କୃତି ସମ୍ପର୍କିତ ଏକ ଜାତୀୟ ଆଲୋଚନା ଚକ୍ରରେ ଏକ ଇଂରାଜୀ ପ୍ରବନ୍ଧ ଦେବାକୁ । ପ୍ରଫେସର ବେହୁରା ଏଇଠି ମୋ ବିଷୟରେ ସୂଚନା ଦେଇ ଏହି ଆଲୋଚନାଚକ୍ରରେ ମୋତେ ସାମିଲ କରିବାକୁ ମତ ଦେଇଥିଲେ କାହ୍ନୁବାବୁଙ୍କୁ । ଏହି ପରିପ୍ରେକ୍ଷୀରେ କାହ୍ନୁ ବାବୁଙ୍କ ସହ ମୋର ପ୍ରଥମ ସାକ୍ଷାତ ହୁଏ । ଏକ ପ୍ରବନ୍ଧ ଦେବାକୁ

ସ୍ୱୀକୃତି ଦେବା ପରେ ଆମର ପାରସ୍ପରିକ ସମ୍ପର୍କ କ୍ରମଶଃ ନିବିଡ ହେବାକୁ ଲାଗିଲା । ସେ ଦକ୍ଷିଣ ଓଡ଼ିଶାରେ ଦୀର୍ଘଦିନ ରହିବା ଫଳରେ ଓ ଶ୍ରୀ ଜଗନ୍ନାଥ ସଂସ୍କୃତି ସମ୍ପର୍କରେ ଗଭୀର ଅନୁରାଗ ତଥା ଗବେଷଣା ହେତୁ, ସଉରା ସଂସ୍କୃତି ଉପରେ ଏକ ବଶ୍ଳେଷଣାତ୍ମକ ଗବେଷଣା ପାଇଁ ଭାରତ ସରକାରଙ୍କୁ ପୂର୍ବରୁ ଆବେଦନ କରିଥିଲେ । ଏହା ଭାରତ ସରକାରଙ୍କ ସ୍ୱୀକୃତି ପାଇବା ପରେ ସେ ଏହି ଗବେଷଣା ପ୍ରକଳ୍ପର ତଥ୍ୟ ସଂଗ୍ରହ ପୂର୍ବରୁ ଅନ୍ୟମାନଙ୍କ ଦ୍ୱାରା କିଛିଟା କରାଇଥିଲେ । ତାହା ମୋତେ ସେ ମୋର ମତାମତ ପାଇଁ ଦେଇଥିଲେ । ମୋର ତାହା ପସନ୍ଦ ନହେବାରୁ, ନୂତନ ଭାବରେ ଆମେ ଏହା ୨୯.୮.୧୯୯୧ରେ ଶୁଭାରମ୍ଭ କଲୁ । କତିପୟ ନୃତତ୍ତ୍ୱ ବିଭାଗର ଛାତ୍ରମାନଙ୍କ ଦ୍ୱାରା ଏହାର କ୍ଷେତ୍ର ଗବେଷଣା ଗୁଣୁପୁରର ପୁଟାସିଂ ଓ ମରିଚିଗୁଡ଼ା ଅଞ୍ଚଳରେ ଆରମ୍ଭ ହେଲା । ପ୍ରଫେସର ମିଶ୍ରଙ୍କ ସହ ନିବିଡ ସମ୍ପର୍କ ହେତୁ କେବଳ ନୃତତ୍ତ୍ୱ ବିଭାଗର ଛାତ୍ରମାନଙ୍କର ଖର୍ଚ୍ଚ ବ୍ୟତୀତ ମୁଁ କୌଣସି ପାରିଶ୍ରମିକ ଗ୍ରହଣ ନକରି ଏହି ଅର୍ଥକୁ ପ୍ରକାଶନରେ ପୂର୍ଣ୍ଣ ବିନିଯୋଗ କରିବାକୁ ମତାମତ ଦେଇଥିଲି । ଏଥିରେ ତାଙ୍କର ଉତ୍ସାହ ଦ୍ୱିଗୁଣିତ ହୋଇଥିଲା । ଏତଦ୍‌ବ୍ୟତୀତ ଗବେଷଣା କାର୍ଯ୍ୟର ପୂର୍ଣ୍ଣ ସଫଳତା ନିମନ୍ତେ ମୁଁ ନିଜେ ମଧ୍ୟ ସେରାଙ୍ଗ ଓ ପୁଟାସିଂ ଅଞ୍ଚଳରେ ୨ ମାସ କାଳ ତଥ୍ୟ ସଂଗ୍ରହ କରିଥିଲି । ତଥ୍ୟ ସଂଗ୍ରହ ଅଭିଯାନ ଏପରି ସଫଳତାର ସହିତ ବୃଦ୍ଧି ପାଇଲା ଯେ ସଉରା ସଂସ୍କୃତି ପ୍ରକଳ୍ପଟିରୁ ୩ଟି ପୁସ୍ତକର ଅବତାରଣା କରିବା ପାଇଁ କାହ୍ନୁ ବାବୁଙ୍କର ସହିତ ଆଲୋଚନା କଲି । ପ୍ରଥମଟି ଥିଲା ସଉରା ସଂସ୍କୃତି ସମ୍ପର୍କରେ ପ୍ରାଥମିକ ଅବତାରଣା, ଦ୍ୱିତୀୟଟି ସଉରା ସଂଗୀତ ଉପରେ ଏକ ବିଶ୍ଳେଷଣ ଓ ତୃତୀୟଟି ସଉରା ଭାଷା ତଥା ଶବ୍ଦକୋଷ ସମ୍ପର୍କରେ ଏକ ସଂକଳନ । ଏସବୁ ଦେଖି ତାଙ୍କର ଆନନ୍ଦ କହିଲେ ନସରେ । ମୋର ଦୁଇଜଣ ଛାତ୍ର ଶ୍ରୀମାନ ସୁଶାନ୍ତ କୁମାର କର ଓ ଶ୍ରୀମାନ ପ୍ରିୟବ୍ରତ ନାୟକ ରାତିଦିନ ଅକ୍ଳାନ୍ତ ପରିଶ୍ରମ କରି ମୋତେ ତଥ୍ୟ ଅନୁସନ୍ଧାନ ଓ ନିବନ୍ଧ ଲିଖନରେ ସହାୟତା କଲେ । କାହ୍ନୁବାବୁଙ୍କର ମଧ୍ୟ ବିରାମ ନଥାଏ । କିଛି ଲେଖା ହୋଇଗଲା ତାକୁ ନେଇ ପରେ ଟାଇପ୍ କରିବା ଓ ଶେଷରେ ବନ୍ଧାଇବା ଇତ୍ୟାଦି କାର୍ଯ୍ୟରେ ସେ ଯେପରି ପରିଣତ ବୃଦ୍ଧ ବୟସରେ ଅବିରାମ ଲାଗିଥାନ୍ତି ତାହା ଆମକୁ ବହୁ ଭାବରେ ଉତ୍ସାହିତ କରୁଥାଏ । ତିନୋଟି ଗବେଷଣା ନିବନ୍ଧର ରିପୋର୍ଟ ଦିଲ୍ଲୀ ପଠାଗଲା ପରେ ୧୯୯୨ ମସିହା ବେଳକୁ ସଉରା ଭାଷା ପୁସ୍ତକଟିକୁ ପ୍ରଥମେ ପ୍ରକାଶ କରିବାକୁ ଆଗ୍ରହ ପ୍ରକାଶ କଲେ । ଏହି ସମୟରେ ମୁଁ ମୋର ପିଏଚ୍‌ଡି ଗବେଷଣା ନେଇ ବହୁ ବ୍ୟସ୍ତ ରହିବାରୁ ସେ ମୋତେ ଏହା ଶୀଘ୍ର ଶେଷ କରିବାକୁ ପ୍ରେରଣା ଦେଇ ଧୈର୍ଯ୍ୟର ସହିତ ଅପେକ୍ଷା କଲେ ।

'ସଉରା ଭାଷା' ପୁସ୍ତକର ପ୍ରକାଶନ ପୂର୍ବରୁ ଓ ୧୯୯୨ର ଶେଷ ଭାଗରେ ମୋର

ପିଏଚ୍‌ଡି ଗବେଷଣା କାର୍ଯ୍ୟ ଶେଷ ହେବା ପରେ କାହ୍ନୁବାବୁ ମୋତେ ଅନେକଥର ଘରକୁ ଡାକିଛନ୍ତି । ତାଙ୍କ ଘରେ ମାଡାମ ମିଶ୍ର ମୋତେ ଅନେକ ସୁସ୍ୱାଦୁ ବ୍ୟଞ୍ଜନରେ ଆପ୍ୟାୟିତ କରିଛନ୍ତି । ସେତେବେଳକୁ ତାଙ୍କର ଆଣ୍ଠୁଗଣ୍ଠି ବାତ ଜନିତ ଯନ୍ତ୍ରଣା ପ୍ରବଳ ଭାବରେ ବୃଦ୍ଧି ପାଇଥିଲେ ହେଁ ତାହାକୁ ସେ ଖାତିର ନକରି ବାରମ୍ବାର ନୃତତ୍ତ୍ୱ ବିଭାଗ ତଥା ମୋର ବାସଭବନକୁ ଆସି ବାରମ୍ବାର ସଉରା ଭାଷା ସମ୍ପର୍କରେ ମୋତେ ପ୍ରେରଣା ଦେଉଥିଲେ । ପୁସ୍ତକ ପ୍ରକାଶନ ପାଇଁ ମୂଳ ନିବନ୍ଧକୁ ଆଉଥରେ ପରୀକ୍ଷା ନିରୀକ୍ଷା କରିବାକୁ ମୁଁ ଇଚ୍ଛା ପ୍ରକାଶ କରିବାରୁ ସେ ତତ୍‌କ୍ଷଣାତ କିଛି ପଇସା ଦେଲେ ୨ଟି ପିଲାଙ୍କୁ ପୁନର୍ବାର ଗୁଣୁପୁର ପଠାଇବା ପାଇଁ । ପିଲାମାନଙ୍କ ସହ ମିଶି ମୁଁ ଶୁଦ୍ଧ ସଉରା ଓ ଓଡ଼ିଶାର ୩ଟି ଅଞ୍ଚଳର ଲାଞ୍ଜିଆ ସଉରାଙ୍କ ସମ୍ପର୍କରେ ସମସ୍ତ ପ୍ରକାର ତଥ୍ୟ ପରୀକ୍ଷା କରିବା ପରେ ଓ ସଂଗୃହୀତ ସଂଗୀତଗୁଡ଼ିକୁ ସଂଶୋଧନ କରୁଥିବାବେଳେ ମୋର ନଜର ପଡ଼ିଲା ଶୁଦ୍ଧ ସଉରା ଭାଷାରେ ମାଙ୍ଗାଇ ଗମାଙ୍ଗଙ୍କ କର୍ତ୍ତୃକ ଏକ ସଉରା ବ୍ୟାକରଣ ପୁସ୍ତିକା ଉପରେ କିଛି ମାତ୍ରାରେ ସଉରା ଭାଷା ଶିକ୍ଷା କରି, ଡମସଉରା (ଗୁଣୁପୁର) ଶ୍ରୀଯୁକ୍ତ ଘାସି ଶବର ଓ ଶ୍ରୀଯୁକ୍ତ ଅର୍ଜୁନ ଶବରଙ୍କ ସହାୟତାରେ ଏହାକୁ ଅନୁବାଦ କରି ସଉରା ଭାଷା ପାଣ୍ଡୁଲିପିର ଆଦ୍ୟଭାଗରେ ଏହାକୁ ଦେବାର ଇଚ୍ଛା ପ୍ରକାଶ କଲେ । କାହ୍ନୁବାବୁ ଏଥିରେ କେବଳ ଆନନ୍ଦିତ ହେଲେ ନାହିଁ, ଏହି ସଉରା ଶବ୍ଦକୋଷ ତାଙ୍କ ଗବେଷଣା ଜୀବନର ସର୍ବଶ୍ରେଷ୍ଠ କୃତି ହେବ ବୋଲି ଅଭିମତ ଦେଇ ମୋର ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ବାରମ୍ବାର ଆଶୀର୍ବାଦ ପ୍ରଦାନ କରିଥିଲେ । ଭାଷାତତ୍ତ୍ୱର ସୂଚନା ସହ ସଉରା ଶବ୍ଦଗୁଡ଼ିକର ଇଂରାଜୀ ଓ ହିନ୍ଦୀ ଭାଷାର ଅର୍ଥ ସମ୍ଭାରକୁ ନେଇ ସଉରା ଭାଷା ପୁସ୍ତକଟି ପୁରୁଣା ଭୁବନେଶ୍ୱରର ବିବରଣୀ ପ୍ରେସରୁ ୧୯୯୪ରେ ଆତ୍ମ ପ୍ରକାଶ କଲା । ଏହାପରେ ଆଦିବାସୀ ସଂସ୍କୃତି ସଂପର୍କରେ ବିଶେଷ କରି ନୃତ୍ୟ, ସଂଗୀତ ଦିଗରେ ବିଶେଷ ଗବେଷଣା ନିମିତ୍ତ ଭାରତ ତଥା ଓଡ଼ିଶା ସରକାରଙ୍କ ଠାରୁ ଅର୍ଥ ସଂଗ୍ରହ ଅଭିଯାନରେ ଆଗେଇ ଯାଇଥିଲେ କାହ୍ନୁବାବୁ । ପରିଣତ ବୟସର ଚାପରେ ମନ ତାଙ୍କର ଦବିଯାଇନଥିଲା । କିନ୍ତୁ ଶରୀରର ଅବସନ୍ନତା ଓ ଅସୁସ୍ଥତା ଏ ଦିଗରେ ତାଙ୍କର ଗଭୀର ଅନ୍ତରାୟ ସୃଷ୍ଟି କରିଥିଲା ।

ଆଦିବାସୀ ସଂସ୍କୃତି ଉପରେ କ୍ଷେତ୍ର ଗବେଷଣା ମୁଖ୍ୟ ଉଦ୍ଦେଶ୍ୟ ଥିଲେ ହେଁ କାହ୍ନୁବାବୁ ଅବସର ଜୀବନରେ କେବେ ବିଶ୍ରାମ ଲୋଡିନଥିଲେ । ପ୍ରତିଦିନ ନୂତନ ନୂତନ ଗବେଷଣା ତଥା ଆଲୋଚନାଚକ୍ରର ଚିନ୍ତାରେ ସେ ପ୍ରାୟତଃ ବିଭୋର ରହୁଥିଲେ । 'ସଉରା ଭାଷା'ର ପ୍ରକାଶନ ସମୟ ମଧ୍ୟରେ ସେ ଶ୍ରୀ ଜଗନ୍ନାଥ ସଂସ୍କୃତି, ବୌଦ୍ଧ ସଂସ୍କୃତି, ଶକ୍ତି ଉପାସନା, ମହିମାଧର୍ମ ଓ ଓଡ଼ିଶାର ଅନ୍ୟାନ୍ୟ ଧର୍ମ ସଂସ୍କୃତି ସମ୍ପର୍କରେ ସେ ଜାତୀୟ ସ୍ତରରେ

ଆଲୋଚନାଚକ୍ର ଅତି ସଫଳତାର ସହ ଅନୁଷ୍ଠାନ କରିଥିଲେ । ତାଙ୍କର ଏସବୁର ଚିନ୍ତା ଓ ଆୟୋଜନର ଏକ ବିଶେଷତ୍ୱ ରହିଥିଲା । ଆଣ୍ଠୁବାତ ସତ୍ତ୍ୱେ ବି ସେ ପ୍ରତ୍ୟେକ ଗବେଷକମାନଙ୍କୁ ବ୍ୟକ୍ତିଗତ ଭାବରେ ସାକ୍ଷାତ କରି ଆମନ୍ତ୍ରଣ କରୁଥିଲେ । ଆଲୋଚନାଚକ୍ରଟିକୁ ସଫଳ ଭାବରେ ଆୟୋଜନ କରିବା ପରେ, ପ୍ରତ୍ୟେକ ଗବେଷକଙ୍କ ଠାରୁ ସଂଶୋଧିତ ଓ ପୂର୍ଣ୍ଣାଙ୍ଗ ନିବନ୍ଧଗୁଡ଼ିକୁ ବହୁ ଧୈର୍ଯ୍ୟର ସହ ସଂଗ୍ରହ କରୁଥିଲେ । ଏହା ଯେ କିପରି ଆୟାସସାଧ, ଅନୁଭବୀ ମାତ୍ରେ ହିଁ କହିପାରିବେ । ସବୁ ଲେଖାଗୁଡ଼ିକୁ ଏକାଠି କରିବା ପରେ ପ୍ରେସରେ ତାକୁ ମୁଦ୍ରଣ କରିବା ଓ ପ୍ରୁଫ୍ ସଂଶୋଧନ କରାଇବା ଇତ୍ୟାଦି କାର୍ଯ୍ୟରେ ଦିନରାତି ବ୍ୟସ୍ତ ରହି ସେଗୁଡ଼ିକୁ ପ୍ରକାଶନ କରୁଥିଲେ । ଏଣୁ ତାଙ୍କର ଅବସରପ୍ରାପ୍ତ ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତ ସାରସ୍ୱତ ସାଧନାରେ କଟୁଥିଲା ଓ ଶାରୀରିକ କ୍ଳେଶ, ବ୍ୟଥା ସତ୍ତ୍ୱେ ବି ଏଥିରୁ ସେ ଗଭୀର ଆନନ୍ଦ ଅନୁଭବ କରୁଥିଲେ । ତାଙ୍କର ହସ ହସ ମୁହଁ ଦେଖିଲେ ଯିଏ କେହି ବି ଏକଥା ଅନୁଭବ କରିବ । ବୈଷୟିକ ଜଗତରେ ସେ ଯେପରି ସଫଳ ପିତୃତ୍ୱର ପରିଚୟ ଦେଇଥିଲେ, ସାରସ୍ୱତ କ୍ଷେତ୍ରରେ ମଧରେ ମଧ ଏକ ଉନ୍ନତ ଗବେଷକ ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ନିଜର ସନ୍ତାନମାନଙ୍କ ଭଳି ହାତଗଢ଼ା ଅନୁଷ୍ଠାନ 'Institute of Orissan culture' କୁ ବାତ୍ସଲ୍ୟ ସ୍ନେହ ଦେଇ ପ୍ରତିପାଳନ ଓ ପ୍ରତିବର୍ଦ୍ଧନ କରିଥିଲେ । ନିଜର ସାରସ୍ୱତ ସାଧନାରେ ସେ ଏହାକୁ ଜୀବନ୍ୟାସ ଦେଇଥିଲେ ଓ ପ୍ରତିବର୍ଷ ଏହି ପ୍ରତିଷ୍ଠାନ ନାମରେ ଗବେଷଣା ପୁସ୍ତକମାନ ପ୍ରକାଶ କରି ଏହାର ଅବୟବ ବା କଳେବର ବୃଦ୍ଧି କରିଥିଲେ ।

ନୃତତ୍ତ୍ୱ ବିଭାଗର ଜନୈକ ଛାତ୍ର ହିସାବରେ ଓଡ଼ିଆ ସାହିତ୍ୟର ବିଶିଷ୍ଟ ବ୍ୟକ୍ତିମାନଙ୍କ ସହ ସଂଯୋଗ ସ୍ଥାପନର ସୁବିଧା ବିଶେଷ ନଥିଲେ ହେଁ ପରିସ୍ଥିତିର ସୁଯୋଗରେ ଯେଉଁ କେତେଜଣ ଖ୍ୟାତିସମ୍ପନ୍ନ ବ୍ୟକ୍ତିତ୍ୱମାନଙ୍କ ସହ ମୋର ବ୍ୟକ୍ତିଗତ ତଥା ଗବେଷଣାଗତ ସମ୍ପର୍କ ଥିଲା, ତନ୍ମଧରେ ସର୍ବପ୍ରଥମ ଥିଲେ ୰ପ୍ରଫେସର ବଂଶୀଧର ମହାନ୍ତି । ସେ ନୃତତ୍ତ୍ୱର ଅବଦାନକୁ ସାହିତ୍ୟ ସାଙ୍ଗରେ ମିଶାଇ କିଛି ଗବେଷଣା କରିବା ପାଇଁ ଚାହିଁଥିଲେ ଓ ମୋ ସହିତ ସଂଯୋଗ ହେବାପରେ ଆମେ ମିଳିତ ଭାବେ ଜଗନ୍ନାଥ ସଂସ୍କୃତିକୁ ଆଦିବାସୀ ଓ ଆର୍ଯ୍ୟ ସଂସ୍କୃତିର ଅବଦାନରେ ଆତ୍ମନିୟୋଗ କରିଥିଲୁ । ମାତ୍ର ତାଙ୍କର ଅକାଳ ବିୟୋଗ ଆମର ଏଇ ପ୍ରକଳ୍ପଟିକୁ ଟିକିଏ ବିଳମ୍ବ କରିଦେଲା । ଏଇ ପରିପ୍ରେକ୍ଷୀରେ ଦୁଃଖ ଓ ଅବସାଦରେ ସମୟ କାଟୁଥିବାବେଳେ ପ୍ରଫେସର କାହ୍ନୁଚରଣ ମିଶ୍ର ଓ ପ୍ରଫେସର ଖଗେଶ୍ୱର ମହାପାତ୍ରଙ୍କ ସହ ସମ୍ପର୍କ ସ୍ଥାପନ ମୋତେ ନୃତତ୍ତ୍ୱ ବିଦ୍ୟାକୁ ଓଡ଼ିଆ ସାହିତ୍ୟ ସହ ମିଳାଇ ନେବାରେ ଏକ ଅଭିନବ ପ୍ରେରଣା ଦେଲା । ଉଭୟ ବିଦ୍ୱାନଙ୍କର କର୍ମ କରିବାର ଶୈଳୀ

ତପାତ ଥିଲେ ହେଁ ଉଭୟେ ନୃତତ୍ତ୍ୱ ବିଦ୍ୟାର ସହଚର୍ଯ୍ୟରେ ଓଡ଼ିଆ ସାହିତ୍ୟର ଗବେଷଣାକୁ ଏକ ନୂତନ ଦିଗନ୍ତ ଦେବାରେ ମନୋନିବେଶ କରିଥିଲେ ଓ ଏ ଦିଗରେ ସଫଳ ନେତୃତ୍ୱ ଦେଇଥିଲେ ମଧ୍ୟ ।

ଜୀବନର ଶେଷ ଭାଗରେ କାହ୍ନୁବାବୁ ଅତ୍ୟନ୍ତ ଅସୁସ୍ଥ ହୋଇ ପଡ଼ିଥିଲେ । ଏକଦା ମୋ ବାସଭବନରେ ମୋତେ ଏକ ତୈଳଚିତ୍ର କରୁଥିବାର ଦେଖି, ତାଙ୍କ ନନାଙ୍କର ଏକ ତୈଳଚିତ୍ର କରିବାକୁ ଚାହିଁଥିଲେ ମୋ ଦ୍ୱାରା । ଏହା ସଫଳ ହେବା ପୂର୍ବରୁ ସେ କିନ୍ତୁ ଏ ମର ଶରୀର ତ୍ୟାଗ କରି ଚାଲିଗଲେ ଅମର ଦୁନିଆକୁ । ସେ ଆଜି ମର ଶରୀରରେ ନଥିଲେ ବି ଓଡ଼ିଆ ସାରସ୍ୱତ ଆକାଶରେ ତାଙ୍କର ପ୍ରତ୍ୟେକଟି ଅମର କୃତୀ ଓ ଗବେଷଣା ପ୍ରତିଷ୍ଠାନ କିନ୍ତୁ ଜାଜ୍ଜ୍ୱଲ୍ୟମାନ ତାରକା ରୂପରେ ଓଡ଼ିଆ ସାହିତ୍ୟର ଗବେଷଣା କ୍ଷେତ୍ରକୁ ଦିଗଦର୍ଶନ ଓ ପ୍ରେରଣା ଯୋଗାଉଥିବ ନିଶ୍ଚୟ । ଏକ ସଫଳ ଗୃହକର୍ତ୍ତା, ସ୍ୱାମୀ, ପିତା, ଶିକ୍ଷକ ଓ ସର୍ବୋପରି ଏକ ପ୍ରତିଷ୍ଠିତ ସାରସ୍ୱତ ସାଧକ ରୂପେ ପ୍ରଫେସର କାହ୍ନୁଚରଣ ମିଶ୍ରଙ୍କର କେବେ ମୃତ୍ୟୁ ହୋଇପାରେନା । ଏ ଦୁନିଆକୁ ତାଙ୍କୁ ନେଇ ଆସିଥିବା ଶରୀର ଆଜି କାଳବକ୍ଷରେ ଲୀନ ହୋଇ ଯାଇଥିଲେ ହେଁ ତାଙ୍କର ସାରସ୍ୱତ ଆତ୍ମା ଅମର, ଅଜେୟ ହୋଇ ପରବର୍ତ୍ତୀ ସାରସ୍ୱତ ବଂଶଧରଙ୍କ ପାଇଁ ଯେ ଅଫୁରନ୍ତ ପ୍ରେରଣାର ଉତ୍ସ ହୋଇ ରହିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

■■

# ଭାଇନା ଏକ ଅମ୍ଳାନ ପ୍ରତିଭା

*ପଣ୍ଡିତ କବିରାଜ ଶ୍ରୀ ଘନଶ୍ୟାମ ମିଶ୍ର*

ଚାହୁଁଚାହୁଁ ବରଷ ବିତିଲା, ଶୋକାକୁଳ ପରିବାର ଛାଡି
ଚାଲିଗଲ ସ୍ୱର୍ଗପୁରେ, କିନ୍ତୁ ତୁମ ଅମ୍ଳାନ ପ୍ରତିଭା ପୁଞ୍ଜ
ଯାଇନାହିଁ ସଙ୍ଗେ । ସବୁଠାରେ ପ୍ରତିଭା ତୁମର, ହୁଏ ବିକଶିତ,
ସୁଗନ୍ଧିତ ପୁଷ୍ପପରି, ବ୍ୟାପିଯାଏ ଚାରିଆଡ଼େ ସୁଗନ୍ଧ ମହକ ।
ଚିତ୍ରକର ତୁଳିମୁନେ ଆଙ୍କିଅଛି ପ୍ରତିଛବି ତବ,
ସହାସ୍ୟ ବଦନ, ସତେ ଅବା ଠିଆ ହୋଇ ଡାକୁଅଛ ଆତ୍ମୀୟ
ସୋଦରେ, ଅକପଟ ସ୍ନେହାଶୀଷ ଢ଼ାଳି ନିରନ୍ତର ।
ହେ କୁଳ ଗୌରବ ! ନିଜସ୍ୱ ଜ୍ଞାନ  ଗରିମାବଳେ
ଲେଖିଅଛ ବହୁଗ୍ରନ୍ଥ, ସ୍ଥାପନା କରିଛ ନିଜ ଗୃହ
ପାଠାଗାରେ । ସେ ଅମୂଲ୍ୟ ଗ୍ରନ୍ଥରାଜି, ଯାହା ପାଠ କରି
ଆତ୍ମହରା ହୁଅନ୍ତି ପାଠକେ, ଅମ୍ଳାନ ପ୍ରତିଭା ପୁଞ୍ଜେ
କରନ୍ତି ସମ୍ମାନ, ହୋଇନତଶିର ତବ ପାଦାମ୍ବୁଜେ ।
ହେ ଅଗ୍ରଜ ! ଅନୁଜମାନଙ୍କ ମଧ୍ୟେ ଥିଲି କର୍ଣ୍ଣଧାର,
କର୍ଣ୍ଣଧାର ଅଭାବରେ ନଉକା ଯେସନେ ଜଳେ ହୁଏ
ଟଳମଳ, ସେହିପରି  ଆତ୍ମୀୟ ସୋଦରଗଣେ ହୋଇ
ପଥହରା,  ଅନୁକ୍ଷଣେ ଝୁରୁଛନ୍ତି ତୁମ ଗୁଣରାଶି ।
ହେ ପ୍ରତିଭା ଭାସ୍କର ! ନିଜ ସ୍ନେହ ଦୟାକ୍ଷମା ଗୁଣେ
ଦେଖାଅ ଆଲୋକ, ସଂସାର ଜଂଜାଳ ରୂପ ଅନ୍ଧକାର
ପଥ ହେଉ ଆଲୋକିତ
ହେ ଅଗ୍ରଜ ! ଶେଷେ କରୁଛି ପ୍ରାର୍ଥନା, ଦିଅନ୍ତୁ ଆଶୀଷ,
ପୁତ୍ର- ପୁତ୍ର ବଧୂ କନ୍ୟା, ଜାମାତା, ସୋଦର ତଥା
ଜ୍ଞାତି, ବନ୍ଧୁ, ଛାତ୍ରଛାତ୍ରୀ ପରିଜନଗଣେ । ଇତି
ଚରଣ ସେବକ ଅନୁଜ ଘନଶ୍ୟାମ ।

■■

# ମୋ ଭିଣୋଇ ମଣିଷ ପରି ମଣିଷଟିଏ

*- ହରପ୍ରସନ୍ନ ମିଶ୍ର*

ଚାହୁଁ ଚାହୁଁ କାହ୍ନୁ ବାବୁଙ୍କର ଦେହାନ୍ତ ଆସନ୍ତା ଡିସେମ୍ବର ୫ ତାରିଖରେ ବର୍ଷେ ପୁରିଯିବ । ମନେ ହେଉଛି ସମୟ କାହାରିକୁ ଅପେକ୍ଷା କରେନି । ଭଲ ମନ୍ଦ ଦୁନିଆରେ ଜୀବନର ଅନୁଭୂତି ରହିଯାଏ । ଏହି ଅନୁଭୂତି ଅନେକ ପୁରୁଣା କଥାକୁ ମନେ ପକାଇଦିଏ ।

ମୋର କାଲି ପରି ମନେ ହେଉଛି କାହ୍ନୁ ବାବୁଙ୍କର ବରବେଶ ହୋଇ ଆମ ଗାଁକୁ ଆସିବା କଥା । ଆମ ଗାଁ ଓ ପଟ୍ଟାମୁଣ୍ଡାଇ ମଧ୍ୟରେ ଯୋଗସୂତ୍ର ପଟ୍ଟାମୁଣ୍ଡାଇ କେନାଲ । ସେହି କେନାଲ ବନ୍ଧ ଦେଇ ମୁଁ ମୋର ଭଉଣୀ ବାହାଘର ପୂର୍ବରୁ ପଟ୍ଟାମୁଣ୍ଡାଇ ଯାଇଛି । ମୋ ବାପା ପରିବାରର ସଂସ୍କୃତି ଦେଖୁଥିଲେ, କାହ୍ନୁବାବୁ ଥିଲେ ପଣ୍ଡିତ ବଳରାମ ମିଶ୍ରଙ୍କ ପୁଅ । କାହ୍ନୁ ବାବୁ ସେତେବେଳେ (୧୯୪୬) ସ୍ୱାଧୀନତା ସଂଗ୍ରାମୀ ଥିଲେ ଓ ସେ ଗାଁର ଜଣେ ଉଚ୍ଚ ଶିକ୍ଷିତ ଥିଲେ । ଖଦଡ଼ ପିନ୍ଧୁଥିଲେ ପାରଳାଖେମୁଣ୍ଡି କଲେଜର ଓଡ଼ିଆ ଅଧ୍ୟାପକ ଥିଲେ । କାହ୍ନୁ ବାବୁଙ୍କର ବାହାଘରବେଳେ ଆମର ଅବସ୍ଥା ସେତେ ଭଲ ନଥିଲା । ତେଣୁ ବାହାଘର ପୁରା ବୈଦିକ ରୀତିରେ ଆମ ଗାଁରେ ହେଲା । କାହ୍ନୁ ବାବୁଙ୍କର ଶିକ୍ଷକ ଭାବରେ ଭଲ ନାଁ ଥିଲା । ମୋର ଜେଜେବାପା ଚୌଧୁରୀ ରାଧାନାଥ ମିଶ୍ର (ବାପାଙ୍କର କକେଇ) କାହ୍ନୁ ବାବୁଙ୍କୁ ବହୁତ ଭଲ ପାଉଥିଲେ । କାହ୍ନୁ ବାବୁଙ୍କୁ ଦେଖିବାକୁ ସେ ପାରଳାଖେମୁଣ୍ଡି ଯାଇଥିଲେ । ଚୌଧୁରୀ ରାଧାନାଥ ମିଶ୍ର ପାରଳାରାଜାଙ୍କ ବହୁତ ନିକଟତମ ବନ୍ଧୁଥିଲେ । ମୋର ଗୁରୁ କେମିଷ୍ଟ୍ରି ଅଧ୍ୟାପକ ଗୁରୁଚରଣ ମହାନ୍ତି ପାରଳା କଲେଜର ପ୍ରିନ୍ସପାଲ ଥିଲେ । ସେ କାହ୍ନୁ ବାବୁଙ୍କୁ ପୁଅ ପରି ସ୍ନେହ କରୁଥିଲେ । କାହ୍ନୁ ବାବୁ ଆମ ପରିବାରର ଜୋଇଁ ହିସାବରେ ସମସ୍ତଙ୍କର ସ୍ନେହର ପାତ୍ର ଥିଲେ । ଆମ ଗାଁକୁ ଗଲେ ଆମ ଘରେ ତାଙ୍କୁ ଖାଇବାକୁ ସମୟ ମିଳେନି କାରଣ ପ୍ରତ୍ୟେକ ଘରୁ ସେ ନିମନ୍ତ୍ରଣ ପାଉଥିଲେ । ମୋର ବଡ଼ ଭିଣୋଇ ସୁନାମଧନ୍ୟ ଡାକ୍ତର ଶରତବାବୁଙ୍କୁ ବଡ଼ ଭାଇ ପରି ସ୍ନେହ କରୁଥିଲେ । ଶରତ ଭାଇନା ମଧ୍ୟ କାହ୍ନୁ ବାବୁଙ୍କୁ ନିଜ ଭାଇ ପରି ଦେଖୁଥିଲେ । କାଳର କି ବିଡମ୍ବନା । କାହ୍ନୁ ଭାଇନାଙ୍କ ୧୧ ଦିନ ଶରତ ଭାଇନା ସଂସାରରୁ ଚାଲିଗଲେ । ମୋର ମନେ ହେଲା ଦୁଇ ସତ୍ତୁ ଡକରା ଡକରି ହୋଇ ଗଲେ । ପ୍ରଥମ ବାର୍ଷିକ ଶ୍ରାଦ୍ଧରେ ମୁଁ ତାଙ୍କର ଆତ୍ମାର ସଦ୍‌ଗତି ପାଇଁ ପ୍ରଭୁ ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା କରୁଛି କାରଣ ଜଗନ୍ନାଥ ମୋ ଭିଣୋଇଙ୍କର ସବୁକିଛି ।

■■

# ଅନୁଚିନ୍ତା

*- ପ୍ରିୟମ୍ବଦା ମିଶ୍ର*

ଆଜି ଡିସେମ୍ବର ପାଞ୍ଚ ତାରିଖ । ମୋର ସ୍ୱାମୀ ଡଃ କାହ୍ନୁଚରଣ ମିଶ୍ର ଶ୍ରାଦ୍ଧ ଦିବସ । ସେ ଯିବା ଆଜିକୁ ବର୍ଷେ ହୋଇଗଲା ସେ ଅବସର ନେଲା ପରେ ଓଡ଼ିଶା ସଂସ୍କୃତି ପରିଷଦ ଗଢ଼ିଥିଲେ । ସର୍ବଦା ସେଥିରେ ବ୍ୟସ୍ତ ଥାନ୍ତି । ସେ କର୍ମଚଞ୍ଚଳ, ପରୋପକାରୀ, ସ୍ନେହୀ ଏବଂ ଉଦାରତା ତାଙ୍କ ଜୀବନର ପ୍ରଧାନ ବ୍ରତ ଥିଲା । ସେତିକି ନୁହେଁ ସ୍ୱାଭାବିକ ଓ ପାରିବାରିକ ଜୀବନରେ ସେ ଏକ ବିରଳ ବ୍ୟକ୍ତିତ୍ୱ । ସେ ପ୍ରେରଣା, ଉତ୍ସାହ ଓ ସାହାଯ୍ୟର ଜ୍ୱଳନ୍ତ ଦୃଷ୍ଟାନ୍ତ । ପଟ୍ଟାମୁଣ୍ଡାଇ ହାଇସ୍କୁଲଟି ପ୍ରତିଷ୍ଠା ଓ ଉନ୍ନତି ପଛରେ ଥିଲା ତାଙ୍କର ପ୍ରତ୍ୟକ୍ଷ ସହଯୋଗ । ପ୍ରକୃତରେ ସେ ଥିଲେ ତାଙ୍କର ଜନ୍ମମାଟିର ଦାୟଦ । ସେ ଥିଲାବେଳେ ପ୍ରତ୍ୟେକ ବର୍ଷ ସେମିନାର ହୁଏ, ଦୁରଦୁରାନ୍ତରୁ ବଡ଼ ବଡ଼ ପ୍ରଫେସର, ଜ୍ଞାନୀ, ପଣ୍ଡିତମାନଙ୍କୁ ଡକାନ୍ତି । ସେଥିରେ ତାଙ୍କର ମେମ୍ବର ଛାତ୍ରମାନଙ୍କ ସହଯୋଗରେ ଖୁବ୍ ଆଡମ୍ବରରେ ଅନୁଷ୍ଠିତ ହୁଏ । ସେ ଗଲାପରେ ମୋତେ ତାଙ୍କ ସ୍ଥାନରେ ନିର୍ଦ୍ଦେଶିକା ରୂପେ ଦାୟିତ୍ୱ ଦିଆଯାଇଛି । ସେକଥା ମୁଁ ଜାଣିନଥିଲି । ସେ ମୋତେ କହିନଥିଲେ ମୁଁ କଣ କରିପାରିବି ନିଜେ ବୁଝିପାରୁନି । କିପରି ଏ ସଂସ୍ଥାଟି ବଞ୍ଚିବ ମୁଁ ଚିନ୍ତିତ । ଜଗନ୍ନାଥଙ୍କର ଯାହା ଇଚ୍ଛା ତା ହେବ ? ଏହି ଅଫିସ ପାଇଁ ଭୁବନେଶ୍ୱରରେ ଖଣ୍ଡିଏ ଜମି ପାଇଁ ସରକାରଙ୍କୁ ଏବଂ ତାଙ୍କ ଛାତ୍ରମାନଙ୍କୁ ଯେକି ଆଜି ଉଚ୍ଚ ପଦବୀରେ ଅଛନ୍ତତି ତାଙ୍କୁ କେତେ ଅନୁରୋଧ ବିନୟ ହୋଇ କହିଥିଲେ । ପ୍ରଥମେ ଗୋଟେ ଛୋଟ ଜାଗା ଦେଇଥିଲେ । ତାକୁ ନେଇଗଲେ କହିଲେ ଆଉଗୋଟେ ଜାଗା ଦେବେ ବୋଲି ଦେଲେନି । ଖରାରେ ସଚିବାଳୟ ଦୌଡି ଦୌଡି ନିରାଶ ହୋଇ ବସିଲେ ମନଦୁଃଖରେ । ଆସ୍ତେ ଆସ୍ତେ ଦେହ ଖରାପ ହେଲା ଚିନ୍ତାରେ । ଶେଷରେ ଶେଷ ନିଶ୍ୱାସ ତ୍ୟାଗ କଲେ । ଏ ଦୁଃଖରେ ମୁଁ କାହାକୁ କଣ କହିବି ? ମୋର ଅନୁରୋଧ ମେମ୍ବର, ଛାତ୍ରମାନେ ବନ୍ଧୁମାନେ, ପିଲାମାନେ ଏ ସଂସ୍ଥାଟିକୁ ବଞ୍ଚାଇପାରିଲେ ତାଙ୍କର ଆତ୍ମା ଶାନ୍ତି ପାଇବ ।

କେହି ନଜାଣନ୍ତି ପ୍ରଭୁତ ଜାଣନ୍ତି
ଯେତେ କଷ୍ଟ ପାଇଛନ୍ତି
ଲୁହ ନୁହେଁ ରକ୍ତ ବହୁଥାଏ ମୋର
ଶ୍ରୀହସ୍ତେ ଦିଅଇ ପୋଛି
ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବ ତୁମେ
ଶାନ୍ତି । ଶାନ୍ତି । ଶାନ୍ତି ।

■■

# ମୋ ପ୍ରେରଣାର ଉତ୍ସ: ପ୍ରଫେସର କାହ୍ନୁଚରଣ ମିଶ୍ର

*- ମଥୁରେନ୍ଦ୍ର ପୃଷ୍ଟି*

ସେ ଦିନର ଶୀତାର୍ତ୍ତ ମଧ୍ୟାହ୍ନ । ୧୯୬୯ ମସିହା ଜାନୁଆରୀ ମାସ । ତୃତୀୟ ପିରିୟଡ ଘଣ୍ଟା ବାଜି ସାରିଥାଏ । ବିଜେବି କଲେଜ ଆର୍ଟସ ବ୍ଲକର ହଲ ନଂ ୧ ରେ ଝିଅ, ପୁଅ ମିଶି ପ୍ରାୟ ଏକ ଶହରୁ ଊର୍ଦ୍ଧ୍ୱ । ତୃତୀୟ ବର୍ଷ ବି.ଏ. କ୍ଲାସର ଏମ୍.ଆଇ.ଏଲ ଓଡ଼ିଆ କ୍ଲାସ, ହୋ-ହାଲ୍ଲାରେ ଶ୍ରେଣୀ ଗୃହଟି କମ୍ପୁଛି । ଅଧ୍ୟକ୍ଷ ଶିବ କୁମାର ପଣ୍ଡା ସାଢ଼େ ଦଶଟା ବେଳୁ ଅଧ୍ୟାପକଙ୍କ ବିଶ୍ରାମ କକ୍ଷରେ ବସିଛନ୍ତି । ବେଳେବେଳେ ବାରଣ୍ଡାରେ ବୁଲି କ୍ଲାସର ପଢ଼ାପଢ଼ି ସହିତ ଛାତ୍ରଛାତ୍ରୀମାନଙ୍କର ଶୃଙ୍ଖଳା ପ୍ରତି ଧ୍ୟାନ ଦେଉଥାନ୍ତି । ସେଦିନ ଥିଲା ଶୁକ୍ରବାର । ପୂର୍ବ ଶୁକ୍ରବାର ଏମ୍.ଆଇ.ଏଲ କ୍ଲାସରେ ପଛଧାଡ଼ିର କେତେକ ପିଲା ଗଣ୍ଡଗୋଳ କରିବାରୁ ସାର୍ କ୍ଲାସ ଛାଡ଼ି ଚାଲିଗଲେ । ସାର ! ପଣ୍ଡିତ ଲୋକ । ବହୁ ପ୍ରତିଭାର ଅଧିକାରୀ । ମାତ୍ର ତାଙ୍କର ଅଧ୍ୟାପନା ଶୈଳୀ ପିଲାମାନଙ୍କୁ ବୋଧହୁଏ ଭଲ ଲାଗୁନଥିଲା, କିମ୍ବା ଓଡ଼ିଆ କ୍ଲାସରେ ଗଣ୍ଡଗୋଳ କରିବାରେ ସେମାନେ ଆନନ୍ଦ ପାଉଥିଲେ । ସେଦିନ ସାର କହିଲେ, ''ତୁମ୍ଭେମାନେ ଗଣ୍ଡଗୋଳ କରୁଛ । ମୁଁ ଆଉ ତୁମ କ୍ଲାସ ନେବି ନାହିଁ । ନୂଆ ସାର ଏଣିକି ତୁମର କ୍ଲାସ ନେବେ ।'' ଏତକ କହି ଝଡ଼ପରି ଅଧା କ୍ଲାସରୁ ଚାଲିଗଲେ । ପ୍ରିନ୍ସପାଲଙ୍କ କାନକୁ କଥା ଗଲା । ତେଣୁ ପ୍ରିନ୍ସପାଲ ଆଜି ଆର୍ଟସ୍ ବ୍ଲକରେ ଡେରା ପକାଇଛନ୍ତି । ଆମ୍ଭମାନଙ୍କ ମଧ୍ୟରେ ଆଲୋଚନା ହେଉଥାଏ, ଦେଖିବା ଏଥର କିଏ ଆମ କ୍ଲାସ ନେବେ ? ପଛଧାଡ଼ିର ପିଲାମାନଙ୍କୁ କଣ୍ଟ୍ରୋଲ କରିବା କଣ ଏତେ ସହଜ ? ଆମ କଥା ସରିନାହିଁ, କ୍ଲାସ ଭିତରକୁ ପସି ଆସିଲେ ଜଣେ ସୌମ୍ୟ ପୁରୁଷ । ଧବଳ ଅଙ୍ଗରେ ଶୁଭ୍ର ଖଦଡ଼ ଧୋତି, ପଞ୍ଜାବୀ । ପଞ୍ଜାବୀ ଉପରେ ଧଳା ଚାଦର ଛାଟି ହସ ହସ ହୋଇ ପଶି ଆସିଲେ କ୍ଲାସ ଭିତରକୁ ଆମର ନୂଆ ସାର । ଉପସ୍ଥାନ ଖାତାଟିକୁ ଟେବୁଲ ଉପରେ ଥୋଇ ଦେଇ କହିଲେ, ''ହେ ଜଗନ୍ନାଥ ମୋ ପିଲାଙ୍କର ମଙ୍ଗଳ କର ।'' ଏତକ କହିଦେଇ ଜଗନ୍ନାଥଙ୍କର ଗୋଟିଏ ଶ୍ଳୋକ ପଢ଼ି ସରଳ ଭାବରେ ବୁଝାଇଦେଲେ । ସତରେ, ତାଙ୍କ କଥାରେ ଥିଲା ମମତାସିକ୍ତ ବାତ୍ସଲ୍ୟଭରା ଉନ୍ମାଦନା । ହୋ-ହାଲ୍ଲା ହେଉଥିବା କ୍ଲାସଟି ସମ୍ପୂର୍ଣ୍ଣ ନୀରବ । ଛୁଞ୍ଚି ପଡ଼ିଲେ ଶବ୍ଦ ହେବ । ବହିଟି ଧରି କହିଲେ ''ପିଲେ ଆଜି କଣ ପଢ଼ାହେବ ?'' ଏକ ସ୍ୱରରେ ଆମେ ସମସ୍ତେ

କହିଲୁ "ଯୌବନର ପ୍ରଭାବ ପ୍ରତିଷ୍ଠା" । ହଠାତ୍ ସାରଙ୍କର ମୁହଁ ଉଜ୍ଜ୍ୱଳ ହୋଇଉଠିଲା । କେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ହାତ ଯୋଡି ପ୍ରଣାମ କଲେ, ଆମେ ଜାଣିନାହୁଁ । କହିଲେ, "ଆଜି ବିଜେବି କଲେଜରେ ମୋର ପ୍ରଥମ କ୍ଲାସ । ଏହି ପ୍ରଥମ କ୍ଲାସରେ ମୋର ପୂଜ୍ୟ ଗୁରୁ ପଣ୍ଡିତ ନୀଳକଣ୍ଠ ଦାଶଙ୍କର ପ୍ରବନ୍ଧ "ଯୌବନର ପ୍ରଭାବ ପ୍ରତିଷ୍ଠା" ପଢ଼ାଇବା ପାଇଁ ମୋତେ ଭଗବାନ ସୁଯୋଗ ଦେଇଛନ୍ତି । ବିଶେଷତଃ ସଂସ୍କୃତି ସଂପନ୍ନ ଭୁବନେଶ୍ୱରର ପିଲାମାନଙ୍କୁ ।" ଭାବ ଗଦ ଗଦ ହୋଇ କହିଲେ, "ଯୌବନ ହିଁ ମହାଶକ୍ତିର ପୀଠ ଓ ପରମ ଆଦର୍ଶର ପ୍ରତିଷ୍ଠାନ" ସୁଲଳିତ କଣ୍ଠରେ ଅନର୍ଗଳ ସଂସ୍କୃତ ଶ୍ଳୋକ ଗାଇ ଯୌବନକୁ ମହାଶକ୍ତି ରୂପେ କାହିଁକି କୁହାଯାଇଛି ବୁଝାଇଦେଲେ । ସମଗ୍ର ଶ୍ରେଣୀ କକ୍ଷରେ ଛାତ୍ରଛାତ୍ରୀ ସତେ ଯେପରି ନିର୍ଜୀବ । ସାର ଗପି ଚାଲିଛନ୍ତି । ଘଣ୍ଟା ବାଜିବା ପ୍ରତି କାହାରି ନଜର ନାହିଁ । ଅନ୍ୟ କ୍ଲାସର ପିଲାମାନେ ଆସିଯିବାରୁ ସାର୍ ଚାଲିଗଲେ । ଆମେ ସମସ୍ତେ ଗୋଡ଼ା ଗୋଡି ହୋଇ ତାଙ୍କ ପଛରେ ଧାଇଁଲୁ ସାରଙ୍କର ନାମ ଜାଣିବା ପାଇଁ । ମାତ୍ର ଅଧକ୍ଷ ମହାଶୟଙ୍କୁ ବାରଣ୍ଡାରେ ଦେଖି ଆମେ ରହିଗଲୁ । ସାର୍‌ଙ୍କୁ ଲକ୍ଷ୍ୟ କରି ଅଧକ୍ଷ ମହାଶୟ କହିଲେ "କାହ୍ନୁ ବାବୁ କଂଗ୍ରାଚୁଲେସନ", ସେହିଠୁ ଆମେ ଜାଣିଲୁ ନୂଆ ସାରଙ୍କର ନାମ ହେଉଛି "କାହ୍ନୁ ବାବୁ" ।

ଏହି ଦିନଟି ଥିଲା ମୋ ପାଇଁ ଅଭୁଲା ଦିନ । ସେହି ଦିନରୁ ମୁଁ ସାର୍‌ଙ୍କ ସହିତ ଯୋଡି ହୋଇଯାଇଛି । ମୋ ସହିତ ତାଙ୍କର ସମ୍ପର୍କ ଥିଲା ଅତ୍ୟନ୍ତ ପ୍ରାଣବନ୍ତ । ହାର୍ଦ୍ଦିକତାପୂର୍ଣ୍ଣ ଶ୍ରେଣୀଗୃହର ପଛଧାଡ଼ିରେ ବସୁଥିବା ଅମାନିଆ ଛାତ୍ରଟିର ବିନମ୍ର ଭକ୍ତି ତାଙ୍କର ପାଦସ୍ପର୍ଶ କରି ଧନ୍ୟ ହୋଇଯାଇଥିଲା ସେ ଦିନ । ଅନାବିଳ ସ୍ନେହ ମମତାର ରଜ୍ଜୁରେ ମୋତେ ସେ ବାନ୍ଧି ଦେଇଥିଲେ । ମୋଠାରୁ ସେ ଅଲଗା ହୋଇଗଲେ ସତ, ମୁଁ କିନ୍ତୁ ତାଙ୍କ ଠାରୁ ଅଲଗା ହୋଇପାରିଲି ନାହିଁ । ଗୁରୁ-ଶିଷ୍ୟର ସମ୍ପର୍କରୁ ଆରମ୍ଭ ହୋଇଥିବା ସମ୍ପର୍କ ଶେଷରେ ପିତା-ପୁତ୍ରର ସମ୍ପର୍କରେ ରୂପାନ୍ତରିତ ହୋଇଗଲା । ସାର୍‌ଙ୍କର ଅମାୟିକ ସ୍ନେହ ଶ୍ରଦ୍ଧାରେ ମାନସିକ ଦୃଷ୍ଟିରୁ ମୁଁ ବାନ୍ଧି ହୋଇ ପଡ଼ିଥିଲି । ଦୀର୍ଘ ୩୫ ବର୍ଷ ସମ୍ପର୍କର ସୁଦୃଢ଼ ସେତୁ ସଦା ସର୍ବଦା ଅତୁଟ ରହିବ ।

ଛାତ୍ର ବତ୍ସଳ, କୃତ ବିଦ୍ୟ ଗୁରୁ କାହ୍ନୁ ଚରଣ ଥିଲେ ଏକ ଜ୍ଞାନର ମନ୍ଦିର । ଶିଷ୍ଟ ସମାଜରେ ସେ ଥିଲେ ଜଣେ ପ୍ରତିଭା ସମ୍ପନ୍ନ ବାଗ୍ମୀ । ସାହିତ୍ୟ, ସଂସ୍କୃତି ଠାରୁ ଆରମ୍ଭ କରି ରାଜନୀତି ଓ ସମାଜ ନୀତି ଉପରେ ଅନର୍ଗଳ ଭାଷଣ ଦେଇ ଶ୍ରୋତାମାନଙ୍କୁ ଅଭିଭୂତ କରି ଦେଇଥାନ୍ତି । ଓଡ଼ିଆ, ଇଂରାଜୀ, ବଙ୍ଗଳା ଓ ସଂସ୍କୃତରେ ପ୍ରଗଳ୍‌ଭ ବକ୍ତା ଭାବରେ ସେ ସମସ୍ତଙ୍କର ଆଦରଣୀୟ ହୋଇପାରିଥିଲେ ।

ପ୍ରଫେସର ମିଶ୍ର ଥିଲେ ସଂସ୍କୃତି ସମ୍ପନ୍ନ ମଣିଷ । ଓଡ଼ିଆ ଭାଷା- ସାହିତ୍ୟ ବିଭାଗର ଅଧ୍ୟାପକ ହୋଇଥିଲେ ହେଁ ଧର୍ମ, ସଂସ୍କୃତି, ଇତିହାସ ବିଷୟରେ ସେ ଥିଲେ ଉଚ୍ଚକୋଟୀର

ଗବେଷକ । "The Cult of Jagannath" ନିବନ୍ଧ ପ୍ରସ୍ତୁତ କରି କଲିକତା ବିଶ୍ୱବିଦ୍ୟାଳୟରୁ ଡି. ଫିଲ ପାଇବା ଦ୍ୱାରା ତାଙ୍କ ଜ୍ଞାନର ସୀମାସରହଦ ଓଡ଼ିଆ ଭାଷା- ସାହିତ୍ୟର ପରିମଣ୍ଡଳରୁ ମୁକ୍ତ ହୋଇ ବହୁ ଦିଗକୁ ମାଡି ଯାଇଥିଲା । ଭାବିଲେ ଆଶ୍ଚର୍ଯ୍ୟ ଲାଗେ, ଅବସର ପରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ 'ଓଡ଼ିଶା ସଂସ୍କୃତି ପରିଷଦ' ଆନୁକୂଲ୍ୟରେ ଅଠରଟି ଜାତୀୟ ପାଠଚକ୍ର ଆୟୋଜନ କରିପାରିଥିଲେ । ଆଲୋଚନା ଚକ୍ରରେ ପଠିତ ପ୍ରବନ୍ଧ ଗୁଡ଼ିକୁ ପୁସ୍ତକ ଆକାରରେ ପ୍ରକାଶ କରି ଓଡ଼ିଆ ଭାଷା- ସାହିତ୍ୟ ସଂସ୍କୃତି, ଇତିହାସ ଓ ଧର୍ମକୁ ବିଶ୍ୱ ଦରବାରରେ ପରିଚିତ କରାଇବାର ସଫଳ ପ୍ରଚେଷ୍ଟା ଓଡ଼ିଶାର କୌଣସି ବିଶ୍ୱବିଦ୍ୟାଳୟ ପକ୍ଷରେ ସମ୍ଭବ ହୋଇନାହିଁ । ''ଏସିୟାଟିକ୍ ସୋସାଇଟି'' ପରି ତାଙ୍କର ସଂସ୍କୃତି ପରିଷଦକୁ ଏକ ସ୍ଥାୟୀ ଗବେଷଣା ପରିଷଦରେ ରୂପାନ୍ତରିତ କରି ଓଡ଼ିଶାର ଧର୍ମ, ସଂସ୍କୃତି, ଇତିହାସ ଓ ସାହିତ୍ୟକୁ ଭାରତ ଓ ଭାରତ ବାହାରେ ପ୍ରଚାର ପ୍ରସାର କରି ବିଶ୍ୱସ୍ତରୀୟ ମର୍ଯ୍ୟାଦା ଲାଭ କରିବା ପାଇଁ ସଂକଳ୍ପବଦ୍ଧ ହୋଇ କାର୍ଯ୍ୟ କରୁଥିଲେ । ଯାହା ଫଳରେ-

Odradesa rajvonsavali, Ramayana in Eastern India, Studies in the Bhagabata, Studies in the Mahabharata, Studies in the cult of Jagannath, Pursottama Khetra Tatva, Saivism in Orissa, Sidhannta Drapana, Mahima Dharma, Saura Language, Odissara Kabi Jayadev ଇତ୍ୟାଦି ବହୁ ଉପାଦେୟ ପୁସ୍ତକ ସଂସ୍କୃତି ପରିଷଦ ଆନୁକୂଲ୍ୟରେ ପ୍ରକାଶ କରି ତାଙ୍କର ସଂସ୍କୃତି ପ୍ରୀତି ଓ ଜାତୀୟତା ବୋଧର ପରିଚୟ ଦେଇଛନ୍ତି ।

ପ୍ରଫେସର କେବଳ ଜଣେ ଅଧ୍ୟାପକ ବା ଗବେଷକ ନଥିଲେ, ସେଥିଲେ ସୀମାନ୍ତ ପ୍ରହରୀ । କଲିକତାରେ ଅଧ୍ୟୟନ ସମୟରେ ପଲୁଆ, ଡରୁଆ ଅଗଣିତ ଅଶିକ୍ଷିତ ଓଡ଼ିଆମାନଙ୍କ ପାଇଁ ଗୋଟିଏ ବିଶ୍ୱାସର, ଶ୍ରଦ୍ଧାର ଓ ସାନ୍ତ୍ୱନାର ଉତ୍ସ ଥିଲେ ପ୍ରଫେସର ମିଶ୍ର । କଲିକତାରେ ଓଡ଼ିଆମାନଙ୍କ ପାଇଁ ବ୍ରଜବନ୍ଧୁ ନୈଶ୍ୟ ବିଦ୍ୟାଳୟ ପ୍ରତିଷ୍ଠା କରି ଓଡ଼ିଆମାନଙ୍କ ମଧ୍ୟରେ ନବଜାଗରଣ ସୃଷ୍ଟି କରିପାରିଥିଲେ । ସେହିପରି ପାରଳାଖେମୁଣ୍ଡିରେ ଅଧ୍ୟାପକ ଥିବା ସମୟରେ ହରିଜନ ବସ୍ତିର ସଫେଇ କାର୍ଯ୍ୟ କରିବାରେ କାହ୍ନୁଚରଣ ଥିଲେ ଅଗ୍ରଦୂତ । ପ୍ରତ୍ୟେକ କାର୍ଯ୍ୟରେ ଥିଲା ତାଙ୍କର ଉନ୍ମାଦନା । ନମ୍ରତାରେ ସେ ପରକୁ ଆପଣାର କରିପାରୁଥିଲେ । ତେଣୁ ସେ ଉପାନ୍ତ ଅଞ୍ଚଳର ଥିଲେ ଆଲୋକ ଦିହୁଡି । ଅଧ୍ୟାପକ ବନ୍ଧୁମାନେ ତାଙ୍କୁ ସୀମାନ୍ତପ୍ରହରୀ ବୋଲି ଶ୍ରଦ୍ଧାରେ ସମ୍ବୋଧନ କରୁଥିଲେ ।

ଡଃ ମିଶ୍ର ହେଉଛନ୍ତି ସବୁରି ହାତପାଆନ୍ତାର ଅପେକ୍ଷାରତ ଗୋଟିଏ ସ୍ରଷ୍ଟା ସଚେତନ, ସୃଷ୍ଟିକାମୀ, ସ୍ଥିତଧୀ, ସ୍ୱୟଂସିଦ୍ଧ ମଣିଷ । ଚିହ୍ନା- ଅଚିହ୍ନା, ପର-ଆପଣା ଭେଦରୁ ସେ ଥିଲେ ମୁକ୍ତ । ସ୍ୱଚ୍ଛ ସୌଜନ୍ୟ ବୋଧ ସମ୍ପନ୍ନ ଭଦ୍ର- ନମ୍ର, ଜିଜ୍ଞାସୁ, ସୁଦର୍ଶନମୁଖୀ, ହୃଦୟବାନ,

ତୀକ୍ଷ୍ଣବୁଦ୍ଧି, ସମ୍ବେଦନ ମାର୍ଗଦର୍ଶୀ ଗବେଷକ, ତାଙ୍କର ଗବେଷଣାର ସ୍ୱାତନ୍ତ୍ର୍ୟତା ମୁଁ ଉପଲବ୍ଧି କରିଥିଲି, ତାଙ୍କ ମାର୍ଗ ଦର୍ଶନରେ ଡି.ଲିଟ୍ ପାଇଁ ନିବନ୍ଧ ପ୍ରସ୍ତୁତି କାଳରେ । ସେ ଥିଲେ ଜିଜ୍ଞାସୁ ଦିଗଦର୍ଶକ, ସେ ଥିଲେ ଗୁଣୀ ଓ ଗୁଣଗ୍ରାହୀ । ଛାତ୍ର ହୁଅନ୍ତୁ ଅଥବା ପଣ୍ଡିତ ହୁଅନ୍ତୁ, ଯାହାଠାରେ ପ୍ରତିଭା ଥିବାର ସମ୍ୟକ ସୂଚନା ପାଆନ୍ତି ତାଙ୍କୁ ସେ ଆଦର କରନ୍ତି, ସମ୍ମାନ କରନ୍ତି ।

ସାର ଥିଲେ ସରଳ ବିଶ୍ୱାସୀ । ହୀନମନ୍ୟତା ପରଶ୍ରୀକାତରତା, ସଂକୀର୍ଣ୍ଣତା ଓ ଗୋଷ୍ଠୀ ବିବାଦ ତାଙ୍କ ବ୍ୟକ୍ତିତ୍ୱକୁ ସ୍ପର୍ଶ କରିପାରିନଥିଲା । ତାଙ୍କର ସ୍ନେହପୂର୍ଣ୍ଣ କୋମଳ ବ୍ୟବହାର ଯେ କୌଣସି ଲୋକକୁ ବଶୀଭୂତ କରି ଦେଉଥିଲା । ସେ ଥିଲେ ପ୍ରତିଭାର ପୂଜାରୀ । ଏଣୁ ସଂସ୍କୃତି ପରିଷଦ ଆନୁକୂଲ୍ୟରେ ଭାରତର ଖ୍ୟାତନାମା ଗବେଷକମାନଙ୍କୁ ଆମନ୍ତ୍ରଣ କରି ନାନା ଉପଢ଼ୌକନ ଦେଇ ସମ୍ମାନିତ କରୁଥିଲେ । ୧୯୯୪ ମସିହା ନଭେମ୍ବର ୨୭-୨୮ ତାରିଖରେ "Indian Society and Dharma Sastra" ଶୀର୍ଷକ ଆଲୋଚନାଚକ୍ର ଅବସରରେ ପଣ୍ଡିତ ସୋମନାଥ ଦାଶ, ପଣ୍ଡିତ ଭାଗବତ ପ୍ରସାଦ ତ୍ରିପାଠୀ, ପ୍ରଫେସର ଡଃ ହେରମ୍ବ ନାରାୟଣ ଚାଟାର୍ଜୀ ଶାସ୍ତ୍ରୀ, ପ୍ରଫେସର ବିଶ୍ୱନାଥ ବାନାର୍ଜୀ ଓ ପ୍ରଫେସର ଡଃ ଧର୍ମାଧିକାରୀ ତ୍ରିବିକ୍ରମ ନାରାୟଣ ପରି ଖ୍ୟାତନାମା ପଣ୍ଡିତମାନଙ୍କୁ ଓଡ଼ିଶାର ରାଜ୍ୟପାଳଙ୍କ ଦ୍ୱାରା ସମ୍ମାନିତ କରିଥିଲେ । ଏହା କେବଳ ଓଡ଼ିଶା ସଂସ୍କୃତି ପରିଷଦ ପାଇଁ ନୁହେଁ ସମଗ୍ର ରାଜ୍ୟ ପାଇଁ ଗୌରବର ଘଟଣା ବୋଲି ରାଜ୍ୟପାଳ ଉଲ୍ଲେଖ କରିଥିଲେ ।

କାହ୍ନୁବାବୁ ଥିଲେ କର୍ମଠ, କର୍ମଯୋଗୀ । ତାଙ୍କର ତତ୍ତ୍ୱ ଗ୍ରାହୀତା, ପ୍ରତ୍ୟୁତ୍ପନ୍ନମତ୍ତା ଯୋଗୁ ଯେଉଁ କାର୍ଯ୍ୟ କରିବା ପାଇଁ ନିଷ୍ପତ୍ତି ନେଉଥିଲେ, ସେ କାର୍ଯ୍ୟ ଶେଷ ନହେବା ପର୍ଯ୍ୟନ୍ତ ବିଶ୍ରାମ ନେଉନଥିଲେ । କାର୍ଯ୍ୟର ସଫଳ ରୂପାୟନ ପାଇଁ ଯିଏ ଯେଉଁ ପଦପଦବୀରେ ଥାଆନ୍ତୁ ନା କାହିଁକି ତାଙ୍କର ସାହାଯ୍ୟ ନେଉଥିଲେ । ଅନୁଷ୍ଠାନ ପାଇଁ ଭୁବନେଶ୍ୱରରେ ଜମି ଖଣ୍ଡିଏ ପାଇଁ ମୁଖ୍ୟମନ୍ତ୍ରୀ ଠାରୁ ଆରମ୍ଭ କରି ଅମିନ ପର୍ଯ୍ୟନ୍ତ ଅନୁରୋଧ କରି ଶେଷରେ ଦେହତ୍ୟାଗ କଲେ । ଅନୁଷ୍ଠାନର ଏକ ସ୍ଥାୟୀ ଗୃହରେ ସର୍ବସାଧାରଣଙ୍କ ପାଇଁ ଏକ ପାଠାଗାର ଖୋଲିବା ପାଇଁ ତାଙ୍କର ବହୁଦିନର ସ୍ୱପ୍ନ ଥିଲା । କିନ୍ତୁ ସରକାରୀ କଳର ମନ୍ଥର ନୀତି ଯୋଗୁ ତାହା ଅସମ୍ପୂର୍ଣ୍ଣ ରହିଗଲା । ରହିଗଲା ''ଓଡ଼ିଶାର ତନ୍ତ୍ର ଉପାସନା'' ଶୀର୍ଷକ ଜାତୀୟ ପାଠଚକ୍ର ।

ସମସ୍ତଙ୍କର ଆଶାର ଝଲକ ଉଚ୍ଚତର ଚେତନାର ଅହଂକାର ଶୂନ୍ୟ ନିର୍ବିବାଦ ଅତି ଆପଣାର ପ୍ରିୟ ସାର ମର ସଂସାରରୁ ବର୍ଷେ ହେଲା ବିଦାୟ ନେଲେଣି ସତ, ତାଙ୍କର ହସ ହସ ମୁହଁରୁ ଝରିପଡୁ ଥିବା 'ମଥୁରୀ' ଡାକକୁ କେବଳ ମୁଁ ନୁହେଁ ମୋ ପରିବାରର କେହି ଆଜି ପର୍ଯ୍ୟନ୍ତ ଭୁଲିପାରି ନାହାଁନ୍ତି କି ଭୁଲିପାରିବେ ନାହିଁ ।

ପ୍ରଣାମ ଗୁରୁଦେବ ।

■■

# ଶାସ୍ତ୍ରଚର୍ଚ୍ଚାସତ୍ରର ଅଧ୍ୱର୍ଯ୍ୟୁ: ପ୍ରଫେସର କାହ୍ନୁଚରଣ ମିଶ୍ର

*- ପ୍ରଫୁଲ୍ଲ କୁମାର ମିଶ୍ର*

କଲିକତାର ସୁନାମଧନ୍ୟ ପ୍ରଫେସର ସୁନୀତି କୁମାର ଚାଟାର୍ଜି ଓ ପୁରାତତ୍ତ୍ୱବିତ୍ ପ୍ରଫେସର ଜିତେନ୍ଦ୍ରନାଥ ବାନାର୍ଜିଙ୍କ ଦ୍ୱାରା ଗବେଷଣାରେ ପ୍ରଶିକ୍ଷିତ ଯେତେବେଳେ ତାଙ୍କର ଗ୍ରନ୍ଥ "The Cult of Lord Jagannath" ରଚନା କଲେ ତାହା ଜଗନ୍ନାଥ ଗବେଷକମାନଙ୍କୁ ଗବେଷଣାର ଏକ ନୂତନ ଦିଗ ପ୍ରତି ଆକର୍ଷିତ କରିଥିଲା । ତାହା ପ୍ରମାଣିତ ହେଲା ଯେତେବେଳେ ଜର୍ମାନ ଗବେଷକ କୁଲ୍‌କେ, ଷ୍ଟିର୍ଚ୍ଚେନ କ୍ରୋନ୍ ପ୍ରଭୃତି ତାଙ୍କ ଗବେଷଣା ଲବ୍ଧ ତଥ୍ୟକୁ "The Cult of Lord Jagannath and the regional institute of Orissa" ବୋଲି ଅଭିହିତ କଲେ । ଅନେକ ପୁସ୍ତକ ଓ ଶତାଧିକ ଗବେଷଣା ପ୍ରବନ୍ଧର ରଚୟିତା ସାହିତ୍ୟର ବିବିଧ ବିଭାବରେ ବ୍ୟୁତ୍ପନ୍ନ ଯେ ଶିଶୁ ସୁଲଭ ସରଳ ହୋଇପାରନ୍ତି ତାହା ଲକ୍ଷ୍ୟ କରିବା କଥା । ଭବଭୂତିଙ୍କ ବାକ୍ୟ ମନେ ପଡ଼େ, ବଜ୍ରାଦପି କଠୋରାଣି ମୃଦୁନି କୁସୁମାନ୍ୟପି । ବୌଦ୍ଧିକ ବ୍ୟାୟାମ ସମୟରେ ସେ ବଜ୍ରଠାରୁ କଠୋର ମାତ୍ର ଛାତ୍ର, ଛାତ୍ର ପ୍ରତିମ ଆମମାନଙ୍କ ପ୍ରତି ସେ କୁସୁମଠାରୁ ମଧ କୋମଳ ଭାବେ ବ୍ୟବହାର କରୁଥିଲେ ।

ଓଡ଼ିଶା ଗବେଷଣା ପରିଷଦ ତାଙ୍କର ମାନସ ପୁତ୍ର । ତାଙ୍କର ସେହି ପରିଷଦର ବାର୍ଷିକ ଆଲୋଚନାଚକ୍ରର ସେ ହିଁ ମୁଖ୍ୟ ଆୟୋଜକ । ସେଥିପାଇଁ ସାରା ଭାରତରୁ ବଛାବଛା ପଣ୍ଡିତମାନଙ୍କୁ ଭିନ୍ନ ଭିନ୍ନ ପ୍ରାନ୍ତରୁ ସେ ଚୟନ କରି ଆଣୁଥିଲେ । ଫଳରେ ଆମ୍ଭେମାନେ ଭାରତର ବିଶିଷ୍ଟ ବିଦ୍ୱାନମାନଙ୍କ ସହିତ ଆମର ଶାସ୍ତ୍ରାର୍ଥଦ୍ୱାରା ନିଜକୁ ପରଖିବାକୁ ଯଥେଷ୍ଟ ସୁଯୋଗ ପାଉଥିଲୁ । ଆମ୍ଭମାନଙ୍କ ସଫଳ ପ୍ରବନ୍ଧ ପାଠରେ ସେ ଏତେ ଆନନ୍ଦିତ ହେଉଥିଲେ ତାହା ପ୍ରତ୍ୟକ୍ଷଦର୍ଶୀ ବ୍ୟତୀତ ଅନ୍ୟ କେହି ଅନୁଭବ କରିପାରିବ ନାହିଁ । ଏହା ଯେପରି ତାଙ୍କର ନିଜ ଘରର ଏକ ବିଶେଷ ଉତ୍ସବ ସେହିଭଳି ଉତ୍ସାହରେ ସେ ମାସ ମାସ ଧରି ଏପରିକି ଭଗ୍ନ ସ୍ୱାସ୍ଥ୍ୟରେ ଅଶୀତିପରି ବୟସରେ ମଧ ଅକ୍ଲାନ୍ତ ପରିଶ୍ରମ କରିଥାନ୍ତି । ଆଜି ତାଙ୍କ ଯୋଗୁ ଆମେ ୰ ପ୍ରଫେସର ହେରମ୍ବନାଥ ଚାଟାର୍ଜି ପ୍ରଭୃତିଙ୍କୁ ଡାକୁଛୁ । କି ଆତ୍ମୀୟତା କି ଭାବବିହ୍ୱଳ ପରିବେଶ ପଣ୍ଡିତମାନଙ୍କ ମିଳନରେ । ଆହା ! ସେ ସବୁ ଆଜି ସ୍ମୃତି ମାତ୍ର । ବିବେକାନନ୍ଦ

ମାର୍ଗ ଦେଇ ଗଲାବେଳେ ପାଦ ଆପେ ଆପେ ସେହି ଘର ଆଡେ ମାଡିଯାଏ । କିନ୍ତୁ ଆଜି ସେହି ଘର ବାଟରେ ପଡ଼ିଲେ ଖାଲି ଖାଲି ଲାଗେ । ଯେପରି ଅନେକ ପକ୍ଷୀମାନଙ୍କୁ ଆଶ୍ରା ଦେଇଥିବା ଏକ ବିଶାଳ ଦ୍ରୁମ କାଳ କବଳିତ ହୋଇଯାଇଛି । ମନେ ପଡ଼େ ଓଡ଼ିଶାର ବୌଦ୍ଧଧର୍ମ ସମ୍ପର୍କୀୟ ଅଖିଳ ଭାରତୀୟ ଚର୍ଚ୍ଚାସତ୍ରକୁ ମୁଁ ଯାଇଥାଏ । ସ୍ୱର୍ଗତ ବିମଳବାବୁ ତାଙ୍କୁ କହିଥାନ୍ତି ମୋତେ ଡାକିବା ପାଇଁ । ସେ ଗୋଟିଏ ବୌଦ୍ଧଗ୍ରନ୍ଥର ଉଲ୍ଲେଖ କରି ମୋ କଥା ତା ସହିତ ସଭାରେ ଯୋଡି କହିଲେ ସାର୍ ତ ମୋ ପାଖରେ ବସିଥାନ୍ତି । ସେଦିନ ଓଡ଼ିଶାର ତନ୍ତ୍ର ସଂସ୍କୃତି ସମ୍ପର୍କରେ ଆଲୋଚନା କେଦାରନାଥ ଗବେଷଣା ପରିଷଦକୁ ସରଗରମ କରିଥାଏ । ମୋତେ ସେ ତତ୍କ୍ଷଣାତ୍ କହିଲେ ଲେଖିବା ପାଇଁ । ତା ପରଠାରୁ ମୁଁ ବରାବର ତାଙ୍କ ସାନ୍ନିଧ ଲାଭ କରିଛି । ସବୁବେଳେ ଓଡ଼ିଶାର ଅନାଲୋଚିତ ଦିଗରେ ଆଲୋଚନା ପାଇଁ ତାଙ୍କର ଆଗ୍ରହ ଓ ସେଥିରେ ଥିବା ସର୍ବଶ୍ରେଷ୍ଠ ବିଦ୍ୱାନଙ୍କୁ ଭାରତର ଯେ କୌଣସି କୋଣରୁ ଅଣେଇବାର ଏକ ମର୍ଯ୍ୟାଦାବନ୍ତ ଆମନ୍ତ୍ରଣ ଥାଏ । ବିଦ୍ୱାନମାନଙ୍କ ପ୍ରତି ବୟସ ନିର୍ବିଶେଷରେ ତାଙ୍କର ଉଚ୍ଚ ସମ୍ମାନ ବୋଧ ଓଡ଼ିଶାରେ ବିରଳ । ବହୁତ ଚେଷ୍ଟା କରିଥିଲେ ପ୍ରତିଷ୍ଠାନର ଭବନ, ପାଠାଗାର ଗବେଷଣା ପ୍ରକୋଷ୍ଠ ନିର୍ମାଣ ପାଇଁ । ମାତ୍ର ପ୍ରଶାସନିକ ମାଫିଆମାନେ ତାହା କରାଇଦେଲେ ନାହିଁ । ତାଙ୍କର ପ୍ରକାଶିତ ଅସଂଖ୍ୟ ପୁସ୍ତକ ରଖିବା ପାଇଁ ସ୍ଥାନାଭାବ କଥା ସମସ୍ତେ ଜାଣନ୍ତି ।

ବ୍ୟକ୍ତିଗତ ଜୀବନରେ ଏକ ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ଓ ପୂର୍ଣ୍ଣାଙ୍ଗ ଜୀବନ ଯାପନ କରିବା ସଂଗେ ସଂଗେ ଗବେଷଣା କ୍ଷେତ୍ରରେ ଅବଦାନ ତାଙ୍କର ସୁବ୍ୟବସ୍ଥିତ ଜୀବନର ପରିଚୟ ଦିଏ । ଆଜି ତାଙ୍କର ପ୍ରଥମ ଶ୍ରାଦ୍ଧ ବାର୍ଷିକୀରେ ଆମେମାନେ ପ୍ରାର୍ଥନା କରୁଛୁ ତାଙ୍କର ଆଶୀର୍ବାଦ ଓଡ଼ିଆ ଗବେଷକମାନଙ୍କ ଉପରେ ପଡୁ ଓ ସେ ଓଡ଼ିଶାର ଅମଲାମାନଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ । ତେଣୁ ଉଭୟଙ୍କ ସହଯୋଗରେ ଏକ ନୂତନ ସକାଳର ଜନ୍ମ ଦେବା, ଯେଉଁଥିରେ ଗବେଷଣା ଲବ୍ଧ ଜ୍ଞାନର ବ୍ୟବହାର ପ୍ରଶାସନ କରିପାରିବେ ।

■■

# ଗୁରୁଦେବ ସ୍ମରଣେ

**- ଶଶିଭୂଷଣ ମିଶ୍ର**

ପରମପୂଜ୍ୟ ଡଃ କାହ୍ନୁଚରଣ ମିଶ୍ରଙ୍କ ମହାପ୍ରୟାଣ ହେବା ଚାହୁଁ ଚାହୁଁ ଏ ଭିତରେ ବର୍ଷେ ବିତିଗଲା । ଭାବିଲା ବେଳେ, ମନେ ହେଉନାହିଁ ସତରେ ସାର୍ ଆଉ ଆମ ଗହଣରେ ନାହାନ୍ତି । ସେ ଦୀର୍ଘଜୀବୀ ଥିଲେ ଏବଂ ଜୀବନର ପ୍ରତ୍ୟେକ କ୍ଷଣର ସଫଳ ଉପଯୋଗ ତାଙ୍କ ପରି ଅନ୍ୟ କେହି କରିପାରିଥିବା ମୁଁ ଦେଖିନାହିଁ । ଜଣେ ଛାତ୍ର ରୂପେ ଏବଂ ଜୀବନ ଅନ୍ତିମ ଦୁଇ ଦଶକରେ ତାଙ୍କ ଦ୍ୱାରା ସ୍ଥାପିତ ଓ ପରିଚାଳିତ 'ଓଡ଼ିଶା ସଂସ୍କୃତି ପରିଷଦ'ର ଜଣେ ସହାୟକାରୀ କର୍ମୀ ଭାବେ ତାଙ୍କୁ ଅତି ନିକଟରୁ ଜାଣିବାର ସୌଭାଗ୍ୟ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ମୁଁ ପାଇପାରିଛି । ମୁଁ ଏବେ ଜୀବନର ପଶ୍ଚିମ ଅବସ୍ଥାରେ ଆସି ପହଞ୍ଚିଲିଣି ହେଲେ ଜୀବନର ପ୍ରତ୍ୟେକ ଅବସ୍ଥାରେ ମୁଁ ଯାହା ଦେଖିଆସିଛି— ଆରମ୍ଭରୁ ସେ ଯାହା ଥିଲେ ଓ ତାଙ୍କର ବ୍ୟବହାର, ବେଶଭୂଷା ଓ ଚାଲିଚଳଣି ଜୀବନାବଧି ଅପରିବର୍ତ୍ତିତ ଥିଲା । ସେ ଜଣେ ଆଦର୍ଶ ଅଧ୍ୟାପକ ଛାତ୍ରବତ୍ସଳ ଶିକ୍ଷକ ଏବଂ ଅଗଣିତ ଛାତ୍ରଛାତ୍ରୀଙ୍କର ପ୍ରେରଣାର ଉତ୍ସ ଥିଲେ । କେବଳ ସେତିକି ନୁହେଁ କର୍ମମୟ ଜୀବନରୁ ଅବସର ନେବା ପରେ ବିଗତ ଦୁଇ ଦଶକରେ ନିଜକୁ ଜଣେ ସୁଦକ୍ଷ ସାଧକ ରୂପେ ଉତ୍କଳ ସାହିତ୍ୟ ଜଗତରେ ପ୍ରତିଷ୍ଠିତ କରିପାରିଥିଲେ । ପ୍ରାଚୀନ ଓଡ଼ିଆ ସାହିତ୍ୟର ସ୍ରଷ୍ଟା କବି ଓ ପ୍ରତିଭା ସଂପନ୍ନ ସାହିତ୍ୟିକଙ୍କୁ ନିଜ ଉଦ୍ୟମରେ ସେମାନଙ୍କର ସାହିତ୍ୟ କୃତି ଲୋକଲୋଚନକୁ ଆଣି ବହୁ ନୂଆ ନୂଆ ତଥ୍ୟ ସମ୍ବଳିତ ଲେଖା ମାଧ୍ୟମରେ ସେମାନଙ୍କୁ ବିଶ୍ୱ ଦରବାରରେ ପ୍ରତିଷ୍ଠା କରିବା ପାଇଁ ଅଦମ୍ୟ ପ୍ରଚେଷ୍ଟା କରିଯାଇଛନ୍ତି । ମୁଷ୍ଟିମେୟ ସାହିତ୍ୟ ପ୍ରେମୀ ଓ ଉତ୍ସାହୀ ବ୍ୟକ୍ତି ବିଶେଷଙ୍କୁ ନେଇ ଓଡ଼ିଶା ସଂସ୍କୃତି ପରିଷଦ ପ୍ରତିବର୍ଷ ଭୁବନେଶ୍ୱରରେ ସମ୍ମିଳନୀ କରିବା ଓ ଆଲୋଚିତ ବିଷୟକୁ ନେଇ ବହୁ ପ୍ରତିଷ୍ଠିତ ସାହିତ୍ୟିକଙ୍କର ଗବେଷଣା ଲବ୍ଧ ପ୍ରବନ୍ଧକୁ ବହି ମାଧ୍ୟମରେ ପରିବେଷଣ କରିବା ତାଙ୍କର ଅସାଧାରଣ ପ୍ରଚେଷ୍ଟା ଓ ପରିଶ୍ରମର ନିଦର୍ଶନ । ପରିଣତ ବୟସରେ ତାଙ୍କର ଯୁବକ ସୁଲଭ କର୍ମପ୍ରବଣତା ବାସ୍ତବିକ ଦେଖିବାର କଥା ।

ଏକାଧାରରେ ସେ ଜଣେ ଗବେଷକ, ପ୍ରତିଭାସମ୍ପନ୍ନ ସାହିତ୍ୟିକ, ପ୍ରଗଳ୍ଭ ବକ୍ତା ଥିଲେ ଏବଂ ତାଙ୍କର ଅନୁସନ୍ଧିତ୍ସୁ ମନ ଦ୍ୱାରା ବହୁ ନୂତନ ତଥ୍ୟ ଓ ଅନାଲୋଚିତ ଦିଗ ସମ୍ବନ୍ଧେ ବିଭିନ୍ନ ବିଷୟବସ୍ତୁକୁ ଲୋକଲୋଚନକୁ ଆଣିବାରେ ସଫଳ ପ୍ରଚେଷ୍ଟା ଅନ୍ୟତ୍ର ବିରଳ ।

ସେ ଶ୍ରୀ ଜଗନ୍ନାଥଙ୍କ ସମ୍ବନ୍ଧେ ନିଜର ପିଏଚ୍‌ଡି ସନ୍ଦର୍ଭ ଲେଖି ସେଥିରେ ଯେଉଁ ଗବେଷଣାତ୍ମକ ଜ୍ଞାନର ନିଦର୍ଶନ ସ୍ଥାପନ କରିଛନ୍ତି, ତାହା ଭବିଷ୍ୟତ ଗବେଷକଙ୍କର ପ୍ରେରଣାର ଉତ୍ସ ହୋଇପାରିଛି । ସେ ପ୍ରଭୁଙ୍କର ଜଣେ ଭକ୍ତ ଥିଲେ ଏବଂ ସର୍ବଦା ପୁରୀ ଆସି ପ୍ରଭୁଙ୍କୁ ଦର୍ଶନ କରିବା କେବେ ଭୁଲିନଥିଲେ । ସେ ଜଣେ ଆଦର୍ଶ ଗୃହସ୍ଥ ମଧ୍ୟ ଥିଲେ ଏବଂ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ତାଙ୍କର ସନ୍ତାନବର୍ଗ ସମାଜରେ ସୁପ୍ରତିଷ୍ଠିତ ।

ସେ ସର୍ବଦା ଓଡ଼ିଆ ସାହିତ୍ୟର ଉତ୍କର୍ଷତା ଓ ଓଡ଼ିଆ ଜାତିର ସ୍ୱାଭିମାନର ପ୍ରତିଷ୍ଠା ରକ୍ଷା କରିବାରେ ସତତ ଉଦ୍ୟମ କରୁଥିଲେ ଓ ସ୍ୱୀୟ ଚିନ୍ତାଧାରା ସର୍ବଦା ସେଥିପାଇଁ ହିଁ ବିନିଯୋଗ କରୁଥିଲେ । ତାଙ୍କର ବିୟୋଗ ବର୍ଷେ ହେଲାଣି ଏବଂ ତାଙ୍କର ସ୍ଥାନ କେବେ ପୂରଣ ହେବ ତାହା ପ୍ରଭୁ ଶ୍ରୀ ଜଗନ୍ନାଥଙ୍କୁ ହିଁ ଜଣା । ତାଙ୍କର ବିଚ୍ଛେଦ ଅସହ୍ୟ ହେଲେ ହେଁ ବିଧିର ବିଧାନ କିଏ ଅବା ଅନ୍ୟଥା କରିପାରିବ । ସେ ଇହ ଜଗତରୁ ଯିବା ଦ୍ୱାରା ଓଡ଼ିଶା ସାହିତ୍ୟ ଭଣ୍ଡାରରୁ ଗୋଟିଏ ଉଜ୍ଜ୍ୱଳ ରତ୍ନ ଅନ୍ତର୍ହିତ ହୋଇଗଲା । ଏହା ସମସ୍ତେ ସ୍ୱୀକାର କରିବେ ।

■■

# ଶ୍ରଦ୍ଧାଞ୍ଜଳି

**- ବନଜ ଦେବୀ**

ଦୀବଂଗତ ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ପ୍ରତ୍ୟେକ ଅନୁରାଗୀ ପ୍ରାଣର ଧର୍ମ ଓ କର୍ତ୍ତବ୍ୟ । ଏହି ଅବକାଶରେ ସ୍ମୃତି ଚାରଣ ତ ହୁଏ, ଏବଂ ହୁଏ ସମ୍ମାନ ପ୍ରଦର୍ଶନ । ଯେତିକି କଥା କୁହାଯାଏ ତାଠୁ ଅଧିକ କଥା ରହେ ଅବ୍ୟକ୍ତ । ସେହି ବ୍ୟକ୍ତ ଅବ୍ୟକ୍ତ ଅନୁଭବ ସବୁ ଯେତେ ବିପୁଳତର ହେଲେ ହେଁ ସେହି ପୂଣ୍ୟ ସ୍ମୃତି ପାଖରେ ହୋଇଯାଏ ମ୍ଳାନ ଓ ସାମାନ୍ୟ । ସ୍ୱର୍ଗତ ଆତ୍ମା ରୁହନ୍ତି ଏହାର ଅନେକ ଊର୍ଦ୍ଧ୍ୱରେ ।

ଶ୍ରୀଯୁକ୍ତ କାହ୍ନୁଚରଣ ମିଶ୍ରଙ୍କ ସମ୍ପର୍କରେ ବହୁ ବ୍ୟକ୍ତି ବହୁ ଅନୁଷ୍ଠାନ ଅନେକ ଅନେକ କଥା କହିପାରିବେ । ଓଡ଼ିଶାର ସାହିତ୍ୟ ସଂସ୍କୃତିର ଇତିହାସରେ ସେ ଜଣେ କର୍ମନିଷ୍ଠ, ସତ୍ୟନିଷ୍ଠ ବ୍ୟକ୍ତିତ୍ୱ । ସେ ଯେମିତି ଛାତ୍ର ବତ୍ସଳ ଜଣେ ନୈଷ୍ଠିକ ଅଧ୍ୟାପକ, ସେମିତି ଜଣେ ପ୍ରବୀଣ ବକ୍ତା, ସମାଲୋଚକ, ଜିଜ୍ଞାସୁ ଗବେଷକ ଓ ଆଜୀବନ ସାହିତ୍ୟ ସାଧକ । ସବୁଠୁ ଯାହା ଅନ୍ତରକୁ ସ୍ପର୍ଶ କରେ, ସେ ଜଣେ ନିରଳସ୍ କର୍ମଯୋଗୀ ଓ ଅମାୟିକ ଭଦ୍ରଲୋକ । ଶେଷ ପର୍ଯ୍ୟନ୍ତ ଆପଣା ପସନ୍ଦର କାର୍ଯ୍ୟରେ ସେ ବ୍ୟାପୃତ ଥିଲେ । ସମୟକୁ ମୂଲ୍ୟ ଦେବାର କଳା ତାଙ୍କଠାରୁ ଶିଖିବାର ହିଁ କଥା ।

ଶ୍ରୀଯୁକ୍ତ କାହ୍ନୁଚରଣ ମିଶ୍ରଙ୍କ ସହିତ ପୂର୍ବରୁ ମୋର ପ୍ରତ୍ୟକ୍ଷ ସମ୍ପର୍କ ନଥିଲା । କିନ୍ତୁ ବହୁବର୍ଷ ତଳୁ ମୁଁ ସାର୍‌ଙ୍କୁ ଜାଣିଥିଲି । ପୁରୀର ଝିଅ ଭାବରେ ପୁରୀ କଲେଜର ଜଣେ ସ୍ୱନାମଧନ୍ୟ ଅଧ୍ୟାପକଙ୍କୁ ଜାଣିବା ସ୍ୱାଭାବିକ ଥିଲା । କିନ୍ତୁ ଏ ଜାଣିବା ଏତିକି ନଥିଲା । ମୋ ସହିତ ପରିଚୟ ନଥିଲେ ମଧ୍ୟ ସାର୍ ମତେ ଋଣୀ କରିଥିଲେ । ଆଜି ଏତେ ବର୍ଷ ପରେ ମଧ୍ୟ ସେ କଥା ମୁଁ ଭୁଲିପାରୁନାହିଁ । ମୋ ସ୍ମୃତିରେ ଖଣ୍ଡିଏ ହୀରା ପରି ତାହା ଚକ୍‌ଚକ୍ କରୁଛି । ସାର୍ ତାଙ୍କର ଏକ ପ୍ରବନ୍ଧରେ ଓଡ଼ିଆ କବିତାର ଆଲୋଚନା କରି, ମୋ କବିତା ପ୍ରତି ଆସ୍ଥା ପ୍ରକଟ କରିଥିଲେ । ଆସନ୍ତାକାଲି, ପ୍ରଜାତନ୍ତ୍ର, ପ୍ରଭୃତି ତତ୍କାଳୀନ କେତେକ ସାହିତ୍ୟ ପତ୍ରିକାରେ ପ୍ରକାଶିତ ମୋର କବିତା ପାଠ କରି, ନୂତନ ଲେଖକ ଲେଖିକାଙ୍କ ନାମ ସହ ମୋ ନାମ ଯୋଡିଥିଲେ । ପ୍ରବନ୍ଧଟି କେଉଁ ମାଗାଜିନରେ ବାହାରିଥିଲା ଆଜି ଠିକ୍ ମନେ ପଡୁନାହିଁ । 'ସାହିତ୍ୟ ସମୀକ୍ଷା' ପୁସ୍ତକରେ ଥିଲା କି କଣ ମନେ ନାହିଁ, କିନ୍ତୁ ମୁଁ ଖୁବ୍ ଖୁସୀ ହୋଇଥିଲି

ସେଦିନ । ମୋର ଅର୍ବାଚୀନ ହାତର ଲେଖା ଯେ କୃତବିଦ୍ୟ ଅଧ୍ୟାପକ ପ୍ରବୀଣ ସାହିତ୍ୟିକ ପାଠ କରି, ଆସ୍ଥା ସ୍ଥାପନ କରନ୍ତି ଏହା ମତେ ବିହ୍ୱଳ କରିଥିଲା । ଓଡ଼ିଆ ସାହିତ୍ୟରେ ସ୍ୱୀକୃତ ହେଲା ପରି କୌଣସି ଆଖିଦୃଶିଆ କାର୍ଯ୍ୟ କରିନଥିଲେ ହେଁ, ବହୁ ବର୍ଷ ତଳେ ସାର ଯେ ମତେ ସ୍ୱୀକୃତି ଦେଇଥିଲେ, ତାହା ହିଁ ମୋର ଏକ ଅତୁଳନୀୟ ଐଶ୍ୱର୍ଯ୍ୟ । ସେଥିପାଇଁ ମୁଁ ଏବେ ବି କୃତଜ୍ଞ ।

ଦୀର୍ଘ ଚାଳିଶ ବର୍ଷ ବିତିଯାଇଛି । ଏଇ ଛ ସାତ ବର୍ଷ ଧରି ସାର୍‌ଙ୍କୁ ନିକଟରୁ ଦେଖିବାର ସୁଯୋଗ ପାଇଲି । ପୁରୁଣା ଭୁବନେଶ୍ୱରରେ ଅବସ୍ଥାନ କଲା ପରଠାରୁ, ମୋ ସ୍ୱାମୀ ସାର୍‌ଙ୍କର ଛାତ୍ର ଥିବାରୁ ସେ ମତେ ପରିଚୟ କରାଇ ଦେଇଥିଲେ । ସାର୍‌ଙ୍କୁ ବହୁବାର ଭେଟିଛି । ବସ୍‌ରେ, ରାସ୍ତାରେ ଗଲାବେଳେ । ସେଇ ଗୋରା ତକ୍‌ତକ୍ ଉଜ୍ଜ୍ୱଳ ଚେହେରା, ଧୋତି ପଞ୍ଜାବୀ ଓ କାନ୍ଧରେ ଉତ୍ତରୀୟ, ହସହସ ମୁହଁ, ଦେଖିଲା ମାତ୍ରେ, କୁଶଳଜିଜ୍ଞାସା କରି କଣ ଲେଖୁଛ ? ପ୍ରଶ୍ନ କରନ୍ତି । ଏହି କଥାରୁ ମିଳେ ଆଶୀର୍ବାଦ, ମିଳେ ପ୍ରେରଣା ।

ଦିନେ ସେ ଖରାବେଳେ ମୋ ଘରେ ପହଞ୍ଚିଲେ । ସେଇଥିଲା ମୋ' ଘରକୁ ଆସିବା ତାଙ୍କର ପ୍ରଥମ ଓ ଶେଷ । ସାଙ୍ଗରେ ଆଣିଥିଲେ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଲେଖିକାମାନଙ୍କର ଏକ ତାଲିକା । ଗୋଟି ଗୋଟି କରି ପଢ଼ିଗଲେ । ସେ ତାଲିକା ବୀଣାପାଣି ମହାନ୍ତିଙ୍କ ଠାରୁ ହିରଣ୍ମୟୀ ମିଶ୍ରଙ୍କ ପର୍ଯ୍ୟନ୍ତ ଥିଲା । ମତେ କହିଲେ "ଆଉ କାହାକୁ ଛାଡ଼ିଗଲି କି ? ଟିକିଏ ମନେ ପକେଇଦିଅ ।" ପଞ୍ଚଚାଳିଶ ବର୍ଷ ତଳେ ମୋ ପରି ଅର୍ବାଚୀନ ଲେଖିକାର ଲେଖା ପଢ଼ି ଆସ୍ଥା ପ୍ରକଟ କରିଥିବା ସାର୍ ତାଙ୍କର ଉତ୍ତୀର୍ଣ୍ଣ ବୟସରେ ଏବେ ବି ଯେ ନବୀନତମ ସମସ୍ତ କବି ଲେଖକଙ୍କୁ ଖୁଣ୍ଟିନାଣ୍ଟି ପଢ଼ନ୍ତି । ଏହା ଦେଖି ମୁଁ ଅଭିଭୂତ ହୋଇଗଲି । ପ୍ରବୀଣମାନେ ନବୀନଙ୍କ ଲେଖା ପଢ଼ନ୍ତି ନାହିଁ ବୋଲି ଏ ଯେଉଁ ପ୍ରତିକ୍ରିୟା ଦେଖିବାକୁ ମିଳେ ଶ୍ରୀଯୁକ୍ତ କାହ୍ନୁଚରଣ ମିଶ୍ର ତାଙ୍କର ଆଚରଣରେ, କାର୍ଯ୍ୟରେ ଏହାକୁ ବିରୋଧ କରନ୍ତି । ସେଦିନର ଏଇ ତାଲିକା କରି ଲେଖିକାମାନଙ୍କ ଉପରେ ଲେଖାଟିଏ ପ୍ରସ୍ତୁତ କରୁଛନ୍ତି ବୋଲି କହୁଥିଲେ ।

ଶୁଣିଲୁ ସାର୍ ଅସୁସ୍ଥ ହୋଇ କଳିଙ୍ଗ ହସ୍ପିଟାଲରେ ଚିକିତ୍ସିତ ହୋଇ ଘରକୁ ଫେରିଆସିଚନ୍ତି । ମୋ ସ୍ୱାମୀ ଓ ମୁଁ ସାର୍‌ଙ୍କୁ ଦେଖିବାକୁ ତାଙ୍କ ଘରକୁ ଗଲୁ । ତାଙ୍କ ରୁମ୍‌ରେ ଖଟରେ ତକିଆକୁ ଆଉଜି ସେ ବସିଥିଲେ । ଦୁଇ ପୁଅ ପାଖରେ ଠିଆ ହୋଇଥାନ୍ତି । ମୁହଁ ଚିପୁଡି ଦେଲା ପରି ଶୁଖିଯାଇଥାଏ । ଖୁବ୍ ଧୀରେ କଥା କହୁଥାନ୍ତି । ସ୍ମୃତି ତଥାପି ପ୍ରଖର ଥିଲା । ଚିହ୍ନିପାରିଲେ ବୋଲି ମୁଣ୍ଡ ହଲେଇ କହିଲେ, ସେଦିନ ତାଙ୍କୁ ପ୍ରଣାମ ଜଣାଇ ଫେରିଲୁ ।

ତାହାହିଁ ଥିଲା ଆମର ଶେଷ ପ୍ରଣାମ ।

ଶ୍ରୀଯୁକ୍ତ କାହ୍ନୁଚରଣ ମିଶ୍ର ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ଏକ ପ୍ରବାଦ ପୁରୁଷ । ବ୍ୟକ୍ତିରୁ ଅନୁଷ୍ଠାନରେ ପରିଣତ ସେ । ତାଙ୍କର ବିୟୋଗ ଏକ ଶୂନ୍ୟସ୍ଥାନ । ସେ ଶୂନ୍ୟସ୍ଥାନ ପୂରଣ ହେବାର ନୁହେଁ । ଏହି କଥା କହିଲା ବେଳେ ପୁଣି ମନେ ହୁଏ, ନାଁ, ସେ ଶୂନ୍ୟସ୍ଥାନ ଛାଡ଼ି ଯାଇନାହାନ୍ତି । ସବୁ ପରିପୂର୍ଣ୍ଣ କରିଯାଇଛନ୍ତି ସେ । ଗଢ଼ି ଯାଇଚନ୍ତି ଭାଷା ସାହିତ୍ୟର ଆଧାର ଶିଳା । ତା' ଉପରେ ମନ୍ଦିର ନିର୍ମାଣ କରିପାରିଲେ ହିଁ, ତାହା ହେବ ତାଙ୍କ ପ୍ରତି ଯଥାର୍ଥ ଓ ସାର୍ଥକ ଶ୍ରଦ୍ଧାଞ୍ଜଳି ।

■■

# କାହ୍ନୁ ମିଶ୍ର ସ୍ମରଣେ

*- ଅଶ୍ୱିନୀ କୁମାର ମିଶ୍ର*

ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଫେସର ପଦବୀ ମଣ୍ଡନ କରିବା ବେଳଠୁ ମୁଁ ତାଙ୍କୁ ଜାଣିବା ଆରମ୍ଭ କରିଥିଲି । କିନ୍ତୁ ବହୁବର୍ଷ ଧରି ତାଙ୍କ ସହିତ ଦେଖା ହେବାର ସୁଯୋଗ ଯୁଟିନଥିଲା । ୧୯୯୮ ମସିହାରେ ମୁଁ ସଂସ୍କୃତି ନିର୍ଦ୍ଦେଶାଳୟରେ ଯୋଗଦାନ କଲି । ଦିନେ ହଠାତ୍ ଜଣେ ଭଦ୍ରବ୍ୟକ୍ତି ଧଇଁସଇଁ ଆସି ତାଙ୍କ କ୍ଷୋଭ ଉଦ୍‌ଗାରିବା ଆରମ୍ଭ କଲେ, 'ଦେଖନ୍ତୁ ମୁଁ ଏତେ କଷ୍ଟରେ ପାହାଚ ଚଢ଼ି ଆସୁଛି, ଦରଖାସ୍ତ ଫର୍ମଟିଏ ନିର୍ଦ୍ଦେଶକଙ୍କ ଜରିଆରେ ଗ୍ରାଣ୍ଟ ପାଇଁ ପଠେଇବାକୁ, ଅଥଚ କେହି ମୋ କଥା ଶୁଣୁନାହାନ୍ତି', ଇତ୍ୟାଦି । ତାଙ୍କ ସାହାଯ୍ୟାର୍ଥେ ନିଜକୁ ନିବେଦିବା ମୋର ଏକମାତ୍ର ରାସ୍ତା ଥିଲା । କାରଣ ଏଭଳି ପରିଣତ ବୟସରେ ଜଣେ ବ୍ୟକ୍ତି ସାହିତ୍ୟ, ସଂସ୍କୃତି ସେବାରେ ନିଜକୁ ନିୟୋଜିତ କରିଛନ୍ତି । ଏ କ'ଣ କମ୍ କଥା । ପୁଣି ମୋ ପାଇଁ ସେ ଥିଲେ ନମସ୍ୟ ସମ୍ମାନାସ୍ପଦ । ସେ ଜଣକ ଆଉ କେହି ନଥିଲେ, ଥିଲେ ଡଃ କାହ୍ନୁଚରଣ ମିଶ୍ର ।

ଆଉ ଦିନେ ସିଏ ପ୍ରାତଃ ଭ୍ରମଣରେ ଚାଲି ଚାଲି ୟୁନିଟ୍-୨ରେ ଥିବା ମୋ ସରକାରୀ ବାସଭବନରେ ହାଜର । ମୁଁ ଅବାକ୍ ହେଲି ତାଙ୍କ ଆଗମନ ଦେଖି । ପାଛୋଟି ଆଣି ଯେଉଁଭଳି ଆତିଥେୟତା ଦେଖାଇବା କଥା,ତାର ଉପକ୍ରମ କଲାରୁ ସେ ସବୁକୁ ନାହିଁ ନାହିଁ କଲେ । ଖାଇବା ଜିନିଷ ଏପରିକି ପାଣି ଟିକିଏ ପିଇବା ପାଇଁ ସିଏ ମନା କଲେ । ବେଶ ଅମାୟିକ ଭାବରେ ଗପି ଚାଲିଲେ ଅନେକ କଥା । ଧୋବ ଫରଫର ଧୋତି, କଳା ଯୋତା, ମୋଜା ସାଙ୍ଗକୁ ଢ଼ିଲା ଧଳା ଚାଦର ତାଙ୍କୁ ବେଶ ମାନୁଥିଲା । ସ୍ମୃତିର ଡାଳରୁ ଫୁଲ ଭଳି ଝରି ପଡୁଥିଲେ ଜୀବନର କାହାଣୀ ମାଳା । କାହାଣୀ କହିଲେ ଭୁଲ ହେବ, କାରଣ ସେଗୁଡ଼ିକ ଦାଉ ଦାଉ ଜଳୁଥିଲେ ବାସ୍ତବତାରେ ।

ଦିନେ କେହି ଜଣେ ମତେ କହିଲା, କାହ୍ନୁବାବୁଙ୍କ "ଗବେଷଣା ସଂସ୍ଥାନ" ଅନୁଦାନରେ ବେଶ ସମୃଦ୍ଧ । ମୋର କେମିତି ଧାରଣା ଥିଲା ଯେ ତାଙ୍କର ଅନୁଷ୍ଠାନଟି ଅନ୍ୟାନ୍ୟ ଅନେକ ଏନ୍.ଜି.ଓ. ଭଳି ବେଶ ସ୍ୱଚ୍ଛଳ । ମୁଁ ତାଙ୍କ ସହିତ ଆଉ ଦିନେ ଏମିତି ଆଲୋଚନା କରୁ କରୁ କହିଦେଲି କଥାଟି । ତାଙ୍କୁ ବହୁତ ବାଧିଲା । ସେ କହିଲେ, "ଆପଣ କେବେ ଆସନ୍ତୁ

ବୁଲିଯିବେ । ଦେଖିବେ ଆମେ କେତେ କଷ୍ଟ, ଅଧ୍ୟବସାୟରେ ବଞ୍ଚିଛୁ ।'' ମତେ ସେ ସୁଯୋଗ ଯୁଟିପାରିଲାନି । ଜୀବନ ଯୁଦ୍ଧର ପଦାତିକ ଦି ଜଣ ଯେମିତି ଆମେ ଆଉଦିନେ ଯୋଟ ହୋଇପାରିଲୁନି । କାହ୍ନୁବାବୁ ଥିଲେ ବେଶ ସ୍ନେହୀ, ଦରଦୀ । ବୟସ, ପଦପଦବୀ ଏବଂ ଅନ୍ୟାନ୍ୟ ବିଭେଦ ଭିତରେ ତାଙ୍କ ମୂଲ୍ୟାୟନ ଥିଲା ଭିନ୍ନ ଧରଣର । ସାନ ବଡ଼ ନିର୍ବିଶେଷରେ ପରକୁ ଆପଣାର ଭଳି କୋଳେଇ ନେବାରେ ତାଙ୍କର କାର୍ପଣ୍ୟ ନଥିଲା ।

ସେ ଜନ୍ମ ହୋଇଥିଲେ ୧.୧.୧୯୨୨ ମସିହାରେ । ବୟାଅଶୀ ମସିହାରୁ ଅବସର ଗ୍ରହଣ କରିଥିଲେ ସୁଦ୍ଧା ସେ ମୃତ୍ୟୁଯାକେ ଥିଲେ ଚଳଚଞ୍ଚଳ । ୧୯୯୮ରେ ମୁଁ ତାଙ୍କୁ ପହିଲା ଭେଟିଲା ବେଳକୁ ତାଙ୍କ ହାତରେ ଥିଲା ବିଡ଼ାବିଡ଼ା କାଗଜ । ବୟସ ପ୍ରାୟ ଛଅସ୍ତରୀ । ନିଜ ସ୍ୱଭାବ ସୁଲଭ ଗୁଣ ଯୋଗୁ ସଚିବାଳୟ ଦପ୍ତରଠୁ ସାଧାରଣ କାର୍ଯ୍ୟାଳୟ ଯାକେ କୌଣସି ଠାରେ ତାଙ୍କୁ ଅଟକିବାକୁ ପଡୁନଥିଲା । ମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ସାଧାରଣ ଚାକିରିଆ ଯାଏ ହୁଏତ କେହି କେହି ତାଙ୍କ ଛାତ୍ର ନଚେତ ଚିହ୍ନା ପରିଚୟ ଭିତରେ ଗଣା ହୋଇଯାଉଥିଲେ ।

ଏମିତି ଦିନେ ତାଙ୍କ ସହିତ ଭେଟ ହୋଇଗଲା ସଚିବାଳୟରେ । ସେ ଉତ୍ସୁକ ହୋଇ କହୁଥାନ୍ତି ''ବୁଝିଲ ! ସେଇ ମନ୍ତ୍ରୀଙ୍କ ସହିତ ସାକ୍ଷାତ ବେଳକୁ ସେ ମତେ ନମସ୍କାର ହେଲେ । କୁଆଡେ ଏକଦା ସିଏ ମୋର ଛାତ୍ର ଥିଲେ । ମୋ କାମ ସାଙ୍ଗେ ସାଙ୍ଗେ ହୋଇଗଲା'' ଇତ୍ୟାଦି ।

ତାଙ୍କ ଲିଖିତ ପୁସ୍ତକଗୁଡ଼ିକ ମଧ୍ୟରେ 'ଆଲୋଚନାମାଳା', 'ଓଡ଼ିଶୀ ବୈଷ୍ଣବ ଧର୍ମ', 'ଓଡ଼ିଆ ସାହିତ୍ୟର ଧର୍ମଧାରା' ଭଳି ସମାଲୋଚନା ଗ୍ରନ୍ଥ ପ୍ରତ୍ୟେକ ଓଡ଼ିଆ ସାହିତ୍ୟ ପ୍ରେମୀଙ୍କ ସକାଶେ ଉପାଦେୟ ଗ୍ରନ୍ଥ । ସେହିଭଳି ନବ କଳେବର ଓ ଶ୍ରୀ ଜଗନ୍ନାଥ, ଧର୍ମସାହିତ୍ୟ ଓ ସମାଜ, ଜଗନ୍ନାଥ ତତ୍ତ୍ୱକୁ ବେଶ ପ୍ରାଞ୍ଜଳ ଭାବେ ପାଠକମାନଙ୍କ ନିକଟକୁ ପହୁଞ୍ଚେଇ ପାରିଛନ୍ତି ।

**The Cult of Jagannath** ଭଳି ଇଂରାଜୀ ଗ୍ରନ୍ଥ ସକାଶେ ପୃଥିବୀର ପ୍ରାଜ୍ଞ ମହଲରେ ସିଏ ସୁପରିଚିତ । ସେ ଏହି ଗ୍ରନ୍ଥ ପାଇଁ କଲିକତା ବିଶ୍ୱବିଦ୍ୟାଳୟରୁ ଡି.ଫିଲ୍ ପାଇଛନ୍ତି । ବିଶିଷ୍ଟ ଭାଷାତତ୍ତ୍ୱବିତ୍ ସୁନୀତି କୁମାର ଚାଟାର୍ଜୀ ଏହାର ମୁଖବନ୍ଧ ଲେଖିଛନ୍ତି । ଐତିହାସିକ, ପ୍ରତ୍ନତାତ୍ତ୍ୱିକ, ଧାର୍ମିକ, ସାମାଜିକ- ସାଂସ୍କୃତିକ ତଥା ଶିଳାଲିପିର ପୃଷ୍ଠଭୂମିରେ ସେ ବହୁ ଗବେଷଣାର ସୂତ୍ର ଉଦ୍ଧାର କରି ଏହି ପୁସ୍ତକଟିକୁ ସମ୍ପୂର୍ଣ୍ଣ କରିଛନ୍ତି । ଓଡ଼ିଆ ସାହିତ୍ୟକୁ ପ୍ରାକ୍ ସାରଳା ଦାସଙ୍କଠୁ ପଞ୍ଚସଖା ଯୁଗ ଯାଏ ବିଭିନ୍ନ ଉଦାହରଣ ମାଧ୍ୟମରେ ସେ ତାଙ୍କ ଗବେଷଣା ତତ୍ତ୍ୱକୁ ରସାଣିତ କରିଛନ୍ତି ।

କାହ୍ନୁବାବୁ ବାସ୍ତବରେ ଜୀବନର ଶେଷ ପର୍ଯ୍ୟାୟରେ ତାଙ୍କ ଚାହୁଁଥିବା ଅଭିଳାଷ ପୂରଣ ଦେଖିପାରିଲେନି । ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରଦତ୍ତ 'ଅତିବଡ଼ୀ ସମ୍ମାନ'ଠୁ ନିୟତି ଯେମିତି କ୍ରୁର ଅଟ୍ଟହାସ୍ୟ ମାଧ୍ୟମରେ ତାଙ୍କୁ ଛଡେଇ ରଖିଲା । ପୃଥିବୀର ବହୁ ପ୍ରତିଭାବାନ ମଣିଷ ନିଜ ଜୀବଦ୍ଦଶାରେ ତାଙ୍କ ଇପ୍‌ସିତ ସମ୍ମାନ ହାସଲ କରିପାରି ନାହାନ୍ତି । ଜଣେ ସାହିତ୍ୟିକ ପାଇଁ ଯାହା ସତ୍ୟ, ଜଣେ ସାଧାରଣ ମଣିଷ ପାଇଁ ମଧ୍ୟ ତାହା ସତ୍ୟ । ପ୍ରତିଟି ମଣିଷ ଚାହୁଁଥିବା ଅଭିଳାଷ ଯଦି ତତ୍‌କ୍ଷଣାତ୍ ପୂରଣ ହୋଇ ଯାଉଥାନ୍ତା, ଏ ପୃଥିବୀ ଏମିତି ବୈଚିତ୍ର୍ୟମୟ ହୋଇ ଆମ ଆଗରେ ଉଭା ହୁଅନ୍ତା ନାହିଁ ।

କାହ୍ନୁବାବୁ ଆଜି ଆମ ଗହଣରେ ନାହାନ୍ତି ସତ, କିନ୍ତୁ ତାଙ୍କ ଏକାଗ୍ରତାର ନିଦର୍ଶନ ତାଙ୍କ ପୁସ୍ତକାବଳୀ, ଗବେଷଣା ଅନୁଷ୍ଠାନ ଆଜି ବି ସଗର୍ବେ ମୁଣ୍ଡ ଟେକି ତାଙ୍କ ସ୍ମୃତିକୁ ଉଜ୍ଜୀବିତ କରି ରଖିଛି ।

ସେ ଥିଲେ ନିରଳସ କର୍ମବୀର । ଭଲମନ୍ଦ ସବୁଥିରେ ସ୍ଥିତପ୍ରଜ୍ଞ ଭଳି ସେ ଦୃଢ଼ ଭାବରେ ରହି ଯାଇଥିଲେ କେଉଁ ଉଦାର ମାନବିକତାର ଶ୍ରଦ୍ଧାଳୁ ଅଭିବ୍ୟକ୍ତି ଭିତରେ ।

ମୋର ଆଜି ବି ମନେ ପଡ଼େ ତାଙ୍କୁ । କ୍ଷଣକେ ଆପଣେଇ ନେବାର ତାଙ୍କ ମହତ୍ ପଣିଆକୁ । ଯେମିତି ପାପତାପହୀନ ସିଏ ଏକ ଶ୍ରେଣୀହୀନ ଶ୍ଲୋକ । ବାରମ୍ବାର ପ୍ରତିଧ୍ୱନିତ ହେଉଛନ୍ତି ମାନସ ପଟରେ, ଅପରନ୍ତୁ ଶୂନ୍ୟ ମଣ୍ଡଳରେ ।

ଆଉ ଆମେ ସଭିଏ ରହିଯାଇଛୁ ସେଇ ସଂଯୋଗ ରେଖାର ଉଭୟ ପାର୍ଶ୍ୱରେ ।

■■

# ମଉସା

- ବେଣୁପାଣି ମିଶ୍ର

୧୯୮୭ ମସିହା ଅଗଷ୍ଟ ୧୨ ତାରିଖ ଦିନ ମୁଁ ଚିନ୍ତାମଣିଶ୍ୱରରୁ ନାଗେଶ୍ୱରଟାଙ୍ଗୀ ଆସିଲି । ସେତେବେଳେ ମୁଁ ସମସ୍ତଙ୍କ ପାଖରେ ଅପରିଚିତ । ପରିଚିତ ଲୋକଟିଏ ପାଇଲେ ମୁଁ ମୋ ମନର କଥା କହିପାରିବି ବା ସନ୍ଦେହ ମୋଚନ କରିପାରିବି । ସେଇକଥା ମନେ ମନେ ଭାବୁଥାଏ, ସେଇବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଉତ୍ସବ ପାଳନ ଅବସରରେ ମୁଁ ମଉସାଙ୍କୁ ଜାଣିଲି, ତାପରେ ମଉସା ତାଙ୍କ ଘରକୁ ଆସିବା ପାଇଁ କହିଲେ । ଯିବା ପରେ ମୁଁ ଉପଲବ୍ଧି କଲି ମୋର ବାପ ମା ଏଠି ନଥିଲେ ମଧ୍ୟ ମୋର ପଥପ୍ରଦର୍ଶକ ବା ମୁରବୀ ମୋତେ ମିଳିଗଲେ । ତା ପରଠାରୁ ସେ ମୋତେ ଏତେ ସ୍ନେହରେ ବାନ୍ଧି ଦେଲେ ମୁଁ ମରିବା ପର୍ଯ୍ୟନ୍ତ ତାଙ୍କ ସ୍ନେହ ଭୁଲିପାରିବି ନାହିଁ ।

ତାଙ୍କର ଜନ୍ମ ସତ୍ୟ, କିନ୍ତୁ ମୃତ୍ୟୁ ମିଥ୍ୟା, ଏକ ବିରଳ ବଳିଷ୍ଠ ବ୍ୟକ୍ତିତ୍ୱର ମୃତ୍ୟୁକେବେ ହୋଇପାରେନା । ଦୁନିଆରେ ଏମିତି ଦିନେନା ଦିନେ ମହାନ ଆତ୍ମା ଆସିଥାନ୍ତି, ଯିଏ ଦୁନିଆର ମହତ୍‌କର୍ମ ସମ୍ପୂର୍ଣ୍ଣ କରି ସମସ୍ତଙ୍କୁ ମମତାର ବନ୍ଧନରେ ବାନ୍ଧିଦେଇ ଚିରଦିନ ଏ ସଂସାରରୁ ଚାଲିଯାଆନ୍ତି । ସମସ୍ତଙ୍କ ପାଖରେ ରହିଯାଏ ତାଙ୍କର ସ୍ମୃତି । ଏହିପରି ଜଣେ ମହତ୍ ପୁରୁଷ ଥିଲେ ମଉସା (ପ୍ରଫେସର କାହ୍ନୁଚରଣ ମିଶ୍ର) ।

ମଉସା ଆଉ ନାହାଁନ୍ତି । ତାଙ୍କର ସ୍ନେହବୋଳା କୁନା ଡାକ ଆଉ ଶୁଭିବ ନାହିଁ । ରହିଗଲା ତାଙ୍କର ସ୍ମୃତି ।

■■

# ଆମ 'ସାର' ଅଧ୍ୟାପକ ମିଶ୍ର

*- ଆଶିଷ ମହାପାତ୍ର*

ଓଡ଼ିଆ ସାହିତ୍ୟର ଅଧ୍ୟାପକ ଡକ୍ଟର କାହ୍ନୁଚରଣ ମିଶ୍ରଙ୍କ ତିରୋଧାନରେ ଓଡ଼ିଶାର ସାହିତ୍ୟ ଗବେଷଣା କ୍ଷେତ୍ରରୁ ଏକ ଉଜ୍ଜ୍ୱଳ ଜ୍ୟୋତିଷ ଅର୍ନ୍ତହିତ ହୋଇଛି । ଲେଖକର ସୌଭାଗ୍ୟ ଯେ ଅଧ୍ୟାପକ ମିଶ୍ର ଥିଲେ ମୋର ଶିକ୍ଷାଗୁରୁ ଓ ମୋ ସ୍ତ୍ରୀ ଭାରତୀଙ୍କ ବିଦ୍ୟାଦାତା ସମ୍ମାନନୀୟ ଅଧ୍ୟାପକ । ବିଦ୍ୱାନ, ବହୁଶାସ୍ତ୍ରଦର୍ଶୀ, ବ୍ୟକ୍ତିଗତ ଜୀବନରେ ସରଳ, ନିରାଡମ୍ବର, ସ୍ନେହୀ ଓ ଛାତ୍ରବତ୍ସଳ ଶିକ୍ଷାଗୁରୁ ଆଜିକାଲି ମିଳିବା କଷ୍ଟ, ଯେପରି ଥିଲେ ଆମ ସାର୍ କାହ୍ନୁବାବୁ । ପାରିବାରିକ ଦାରିଦ୍ର୍ୟ ପଙ୍କ ଭିତରୁ ଅଧ୍ୟାପକ କାହ୍ନୁଚରଣ ମିଶ୍ର ପଦ୍ମଜ ଭଳି ଉଭାହେଲେ, ଶିକ୍ଷା, ସଂସ୍କୃତି ଓ ସାହିତ୍ୟର କ୍ଷେତ୍ରରେ । ଅତ୍ୟନ୍ତ ମେଧାବୀ ଛାତ୍ର ଥିଲେ, ଯେ କି କଲିକତା ବିଶ୍ୱବିଦ୍ୟାଳୟରେ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ଏମ୍.ଏରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ପାଇଥିଲେ । ତାପରେ ଓଡ଼ିଶାକୁ ଫେରି ଅଧ୍ୟାପନା କ୍ଷେତ୍ରରେ ଅବିରତ ଜ୍ଞାନ ଓ ସାହିତ୍ୟ ଚର୍ଚ୍ଚା କରି ସେ ଅସଂଖ୍ୟ ଛାତ୍ରଙ୍କ ଆଗରେ ଆଦର୍ଶ ଭାବେ ଠିଆ ହେଲେ । କହିରଖେ ଡକ୍ଟର ମିଶ୍ର ଥିଲେ ମଧ ସ୍ୱାଧୀନତା ସଂଗ୍ରାମୀ । ସେ ଜୀବନର ଶେଷକ୍ଷଣ ପର୍ଯ୍ୟନ୍ତ ସ୍ୱଦେଶୀ ଖଦଡ଼ ବସ୍ତ୍ର ପରିଧାନ କରୁଥିଲେ । ଧଳା ଲୁଗା, ଧଳା ପଞ୍ଜାବୀ, କାନ୍ଧରେ ଧଳା ଚାଦର ତାଙ୍କର ପରିଧାନ ଥିଲା । ପୋଷାକର ଶୁଭ୍ରତା ତାଙ୍କର ଆଚାର ବିଚାରରେ ପ୍ରସ୍ଫୁଟିତ ହେଉଥିଲା । ତାଙ୍କର ଚିନ୍ତା ଓ ଚେତନାର ଦିଗନ୍ତ ଥିଲା ସୁଦୂରପ୍ରସାରୀ । ସେ ଓଡ଼ିଆ, ସଂସ୍କୃତ, ବଙ୍ଗଳା ଓ ଅନ୍ୟ ପ୍ରାନ୍ତୀୟ ସାହିତ୍ୟ ଛଡ଼ା ମଧ ଇଂରାଜୀ ଭାଷା ସାହିତ୍ୟରେ ଗଭୀର ପ୍ରବେଶ ରଖିଥିଲେ । ତେଣୁ ସାହିତ୍ୟ ସମୀକ୍ଷା ଓ ଗବେଷଣା ବେଳେ ତୁଳନାତ୍ମକ ଚିତ୍ର ଥୋଇଲା ବେଳେ ତାଙ୍କର ଜ୍ଞାନର ଗଭୀରତା ପ୍ରକାଶ ପାଉଥିଲା । ଓଡ଼ିଆ ସାହିତ୍ୟର ଗବେଷଣା କ୍ଷେତ୍ରରେ ସେ ଥିଲେ ଜଣେ ଲବ୍ଧପ୍ରତିଷ୍ଠ, ଜ୍ଞାନଗରିଷ୍ଠ ଓ ତପୋସିଦ୍ଧ ଉଜ୍ଜ୍ୱଳ ପ୍ରତିଭା ।

୧୯୫୪ରେ ପୁରୀର ସାମନ୍ତଚନ୍ଦ୍ରଶେଖର ମହାବିଦ୍ୟାଳୟରେ ପ୍ରବେଶ କଲାପରେ ଲେଖକ ଗୁରୁଦେବ ଅଧ୍ୟାପକ ମିଶ୍ରଙ୍କ ସାନ୍ନିଧରେ ଆସିଲା । ଅଳ୍ପ ବୟସରୁ ତାଙ୍କ ପରି ଛାତ୍ର -ରାଜନୀତିରେ ଯୋଗ ଦେଇଥିବାରୁ ଆମର ସବୁଥିରେ ମନ ମିଳିଯାଉଥିଲା । ଅନ୍ୟ ଅଧ୍ୟାପକମାନଙ୍କ ପରି ରକ୍ଷଣଶୀଳ ଦୃଷ୍ଟିକୋଣ ତାଙ୍କର ନଥିଲା । ଆମର ସମାଜଚେତନା

ଆମକୁ ରାଜନୈତିକ  କାର୍ଯ୍ୟରେ ଅନୁପ୍ରେରିତ କରିଛି, ଏଟା ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା । ତେଣୁ ଅତ୍ୟନ୍ତ  ଉଦାର ଭାବେ ତାଙ୍କର ପ୍ରିୟ ଛାତ୍ର ରୂପେ ଆମ କେତେଜଣଙ୍କୁ ଗ୍ରହଣ କରିଥିଲେ । ଜ୍ଞାନର ବିକାଶ ଓ ବିଦ୍ୟାର ସଫଳତା ପାଇଁ ପାଠ ପ୍ରତି ଶ୍ରଦ୍ଧା ଓ ଅଧ୍ୟୟନରେ ନିଷ୍ଠା ଆବଶ୍ୟକ ବୋଲି ଅଧ୍ୟାପକ ମିଶ୍ର କହୁଥିଲେ । 'ଶ୍ରଦ୍ଧାବାନ୍ ଲଭତେ ମାମ୍' ଥିଲା ତାଙ୍କର ଅପ୍ତବାଣୀ । ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ରକରି ଗଢ଼ି ଉଠିଥିବା ଧର୍ମଧାରଣା ଓ ଆଧ୍ୟାତ୍ମିକ ବିଚାର ଉପରେ କାହ୍ନୁବାବୁଙ୍କର ଜ୍ଞାନ ଥିଲା ପ୍ରଖର । ଗୌଡୀୟ ବୈଷ୍ଣବ ଧର୍ମ, ଚୈତନ୍ୟ ଦେବଙ୍କ ଆଚରିତ ଧର୍ମଧାରଣା ଓ ପଞ୍ଚସଖାଙ୍କ ଦ୍ୱାରା ବହୁଧାରାରେ ପ୍ରଚାରିତ ଓଡ଼ିଶୀ ବୈଷ୍ଣବ ଧର୍ମବିଚାର ସମ୍ପର୍କରେ ଅଧ୍ୟାପକ ମିଶ୍ରଙ୍କର ତୁଳନାତ୍ମକ ଆଲୋଚନା ଓ ଧର୍ମଗ୍ରନ୍ଥମାନଙ୍କରୁ ଉଦ୍ଧୃତି ତାଙ୍କ ଆଲୋଚନାକୁ ବୁଦ୍ଧିମନ୍ତ କରୁଥିଲା । ଧର୍ମ ସମ୍ବନ୍ଧୀୟ ତାତ୍ତ୍ୱିକ ଆଲୋଚନା ଓ ତାର ପ୍ରୟୋଗର ରୀତି ଉପରେ ସେ ମନନଶୀଳ ପ୍ରବନ୍ଧ ପ୍ରସ୍ତୁତ କରିଥିଲେ । ତାଙ୍କର ସେ ମୁଦ୍ରିତ ପୁସ୍ତକ 'ଆଲୋଚନାମାଳା ଓ ସାହିତ୍ୟ ସମୀକ୍ଷା' ଖୁବ୍ ଜନପ୍ରିୟ ଥିଲା । ବିଭିନ୍ନ ଆଧ୍ୟାତ୍ମିକ ଆଲୋଚନା ଆସରକୁ ଗୁରୁଜୀ ଛାତ୍ରମାନଙ୍କୁ ନେଇଯାଉଥିଲେ । ମଧ୍ୟଯୁଗୀୟ ସାହିତ୍ୟିକ, ବିଶେଷତଃ ରୀତିଯୁଗର ସାହିତ୍ୟରେ ତାଙ୍କର ପ୍ରଗାଢ଼ ଜ୍ଞାନ ଥିଲା । ୧୯୫୭ରେ ଲେଖକ ପୁରୀ କଲେଜ ଛାତ୍ର ୟୁନିୟନର ସଭାପତି ଥିବାବେଳେ, ଆମ ଦ୍ୱାରା ଆମନ୍ତ୍ରିତ ହୋଇ ରେଭେନ୍ସା କଲେଜର ସାହିତ୍ୟ ଅଧ୍ୟାପକ ଓ ପ୍ରସିଦ୍ଧ କାବ୍ୟ ରସିକ ତଥା ବାଗ୍ମୀ ଅଧ୍ୟାପକ ଜୟକୃଷ୍ଣ ମିଶ୍ର ଆସିଥିଲେ । ସାମନ୍ତ ଚନ୍ଦ୍ରଶେଖର ହଲରେ ଛୁଞ୍ଚିଟିଏ ପକାଇବାକୁ ସ୍ଥାନ ନଥାଏ । ବିଶିଷ୍ଟ କଥାକାର ଓ ସାହିତ୍ୟିକ ଅଧ୍ୟାପକ ରାଜକିଶୋର ରାୟ ଓଡ଼ିଆ ବିଭାଗର ମୁଖ୍ୟ ଥିବାରୁ ସେ ସଭାରେ ସେ ସଭାପତି ହେବାର କଥା । ମାତ୍ର ସେହି ହଲ୍‌ରେ ମୋ ସମକ୍ଷରେ ଅଧ୍ୟାପକ ରାୟ କହିଲେ ଯେ ଜୟକୃଷ୍ଣ ବାବୁଙ୍କର ଆଲୋଚନାର ବିଷୟବସ୍ତୁ ଯାହା, ସେଥିରେ ଠିକ୍ ତାଳ ଦେଇ ଆଲୋଚନା କରିପାରିବାର ଉତ୍ତୁଙ୍ଗ ଯୋଗ୍ୟତା ଥିବା ଅଧ୍ୟାପକ କାହ୍ନୁଚରଣ ମିଶ୍ର ସଭାପତିତ୍ୱ କରିବେ । ସାମାନ୍ୟ ଆପତ୍ତି ପରେ କାହ୍ନୁବାବୁ ସଭାପତିତ୍ୱ କରିବାକୁ ରାଜି ହେଲେ । ମାତ୍ର ରାଜକିଶୋରବାବୁ ସଭାର ସାମନା ଧାଡ଼ିରେ ବସିଥିଲେ । କାହ୍ନୁବାବୁଙ୍କର ବିଦ୍ୱତା ଓ ପ୍ରତିଭାର ଏହା ଥିଲା ଏକ ସାର୍ବଜନୀନ ସ୍ୱୀକୃତି । ଏପରିକି ମହାନ୍ ପ୍ରତିଭାବାନ ପଣ୍ଡିତ ନୀଳକଣ୍ଠ ଦାସ ପୁରୀ ଆସୁଥିବାବେଳେ ଅଧ୍ୟାପକ ମିଶ୍ରଙ୍କୁ ଡକାଇ ପଠାଉଥିଲେ ଓ ଉଭୟଙ୍କର ଜଗନ୍ନାଥ ସଂସ୍କୃତି ଉପରେ ଗଭୀର ଆଲୋଚନା ହେଉଥିଲା । କାହ୍ନୁବାବୁଙ୍କୁ ପଣ୍ଡିତ ଦାସ ବହୁତ ସୁଖ ପାଉଥିଲେ । ତାତ୍ତ୍ୱିକ ଜ୍ଞାନରେ ଶାଣିତ ଥିଲା ତାଙ୍କର ପ୍ରତିଭା ।

୧୯୫୬ରେ ସମଗ୍ର ଓଡ଼ିଶାର ଏକମାତ୍ର ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କୁ ନେଇ ଏକ ସ୍ୱତନ୍ତ୍ର ବିରାଟ ଦୈର୍ଘ୍ୟ ରେଳଗାଡିର ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇ ସବୁ କଲେଜର ଛାତ୍ରଙ୍କୁ

ଦିଲ୍ଲୀ ଠାରେ ହେଉଥିବା ବିରାଟ ଶିକ୍ଷ ମେଳା ଦେଖିବାକୁ ପଠାଗଲା । ପୁରୀ କଲେଜ ତରଫରୁ ୫୦ ଜଣ ଛାତ୍ର ଛାତ୍ରୀ ଓ ଚାରି ବରିଷ୍ଠ ଅଧ୍ୟାପକ ଦୁଇଟି ବଗିରେ ଯାଇଥିଲୁ । ଆମ 'ସାର' ଅଧ୍ୟାପକମାନଙ୍କ ମଧ୍ୟରୁ ଅନ୍ୟତମ । ଦିଲ୍ଲୀ, ଆଗ୍ରା, ବନାରସ, ଏହ୍ଲାବାଦ ଓ କଲିକତା ଦେଖି ଫେରିଲୁ । ସାର୍‌ଙ୍କର ସ୍ନେହଶିକ୍ତ ମନର ପରିଚୟ ଆମକୁ ମିଳିଲା । ପୁରୀ ଛାତ୍ର ରାଜନୀତି କଲାବେଳେ, ମୁଁ ମନ୍ଦିର ସଫେଇ ହେଉ ବା ଆଉ କିଛି ସାମାଜିକ - ସାଂସ୍କୃତିକ କାର୍ଯ୍ୟ ହେଉ ସବୁଥିରେ ଅଧ୍ୟାପକ ମିଶ୍ରଙ୍କର ଆଶୀର୍ବାଦ ପାଇ ଆସିଛି । କଟକ ଆସି ରେଭେନ୍ସା କଲେଜ ୟୁନିୟନ ସଭାପତି ହେଲି । ମଝିରେ ମଝିରେ 'ସାର୍'ଙ୍କ ସଂଗେ ଦେଖାହୁଏ । ସେଇ ସ୍ନେହ ମମତା ଭରା ଦୁଇପଦ ପରାମର୍ଶ, ସଦିଚ୍ଛା ମିଳିଥାଏ ତାଙ୍କଠାରୁ । ମୋ ସ୍ତ୍ରୀ ଭାରତୀଙ୍କ ପାଳି ପଡ଼ିଲା 'ସାର'ଙ୍କ ପାଖରେ ପଢ଼ିବା ପାଇଁ ଓଡ଼ିଆ ଏମ୍.ଏ. କ୍ଲାସରେ । ସହଜେ ସାର୍ ତ ଛାତ୍ରବତ୍ସଳ, ପୁଣି ମୋର ସ୍ତ୍ରୀ ଜାଣି ତା ଉପରେ ଅଧିକ ସ୍ନେହ ବର୍ଷା ହେଲା । ଏ ଭିତରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟ୍‌କୁ ନିର୍ବାଚିତ ହେବା ପରେ 'ସାର' ଆମ ଘରକୁ ଆସିଛନ୍ତି । ମାତ୍ର ସେଥିରେ ସ୍ୱାର୍ଥର ନାମଗନ୍ଧ ନଥାଏ । ଏକାଡେମିକ୍ ସମସ୍ୟା ଓ ବିଭିନ୍ନ କାର୍ଯ୍ୟ ସମ୍ବନ୍ଧରେ ପ୍ରଫେସର ମିଶ୍ରଙ୍କ ଠାରୁ ଦିଗଦର୍ଶନ ମିଳିଥାଏ । 'ତତ୍ତ୍ୱମସୀ' ଏ ବାକ୍ୟ ସବୁବେଳେ ଧେୟ ଥିଲା ତାଙ୍କର । କାର୍ଯ୍ୟଧାରା ଠାରୁ ତତ୍ତ୍ୱ ଭିନ୍ନ ନୁହେଁ- ସେମାନେ ଏକ ଓ ଅଭିନ୍ନ । ତାପରେ ସମୟର ସ୍ରୋତରେ ଅଧ୍ୟାପକ ମିଶ୍ର ଡକ୍ଟର ମିଶ୍ରରେ ପରିଣତ ହେଲେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ ସେ ସ୍ଥାନାନ୍ତରିତ ହେଲେ । ଅଧ୍ୟାପକତ୍ୱ ସରିବା ପରେ ସେ ଫେରିଆସିଲେ ଏକାମ୍ର କାନନର କ୍ଷେତ୍ରକୁ । ସାରସ୍ୱତ କାର୍ଯ୍ୟ ଓ କର୍ତ୍ତବ୍ୟ ତାଙ୍କୁ କେବେ ଛାଡ଼ିନଥିଲା । ତାଙ୍କର ଯୋଗଦାନରେ ପୁରୁଣା ଭୁବନେଶ୍ୱରର 'କେଦାରନାଥ ଗବେଷଣା କେନ୍ଦ୍ର'ର କାର୍ଯ୍ୟକ୍ରମ ବଢ଼ିଚାଲିଲା । ଭାଷା, ସାହିତ୍ୟର ନୂତନ ଦିଗ୍‌ବଳୟର ଉଦ୍‌ଘାଟନ ଲାଗି ଡକ୍ଟର ମିଶ୍ର କେତେ 'ସେମିନାର' ଆଲୋଚନାଚକ୍ର ଓ ସାଂସ୍କୃତିକ ସମ୍ମିଳନ କରିଛନ୍ତି ତାର ସୁମାରି କରିପାରୁ ନାହିଁ । ମାତ୍ର ସାଂସ୍କୃତିକ- ସାରସ୍ୱତ ଚିନ୍ତାଚେତନାର ପୁଷ୍କଳ ଧାରା ତାଙ୍କର କର୍ମମୟ ଜୀବନ ଭିତରେ ଅହରହ ପ୍ରବାହିତ ହେଉଥିଲା । ମଝିରେ ମଝିରେ ବୟସ ଯୋଗୁ ଅସୁସ୍ଥତା ଆସୁଥାଏ । ତାରି ଭିତରେ ନିତ୍ୟ ନୂତନ ଜ୍ଞାନର ଅବବୋଧ ତାଙ୍କୁ କାର୍ଯ୍ୟକ୍ରମ ଭିତରକୁ ଟାଣି ନେଉଥାଏ । ଦେଖାହେଲେ, ଅଳ୍ପ ହସି 'ନାହିଁ କିଛି ନାହିଁ, ଟିକେ ଅସୁସ୍ଥ ହୋଇଗଲି' । ଶେଷରେ ଆମର 'ସାର୍' ଅଧ୍ୟାପକ କାହ୍ନୁଚରଣ ମିଶ୍ରଙ୍କ ଶେଷ ନିଶ୍ୱାସ ବନ୍ଦ ହୋଇଗଲା । ଅସଂଖ୍ୟ ଗୁଣମୁଗ୍ଧ ଛାତ୍ରଛାତ୍ରୀ, ବନ୍ଧୁ ସ୍ୱଜନଙ୍କୁ ଛାଡ଼ି ସେ କୁଆଡ଼େ ତିରୋହିତ ହୋଇଗଲେ । ଏକ ଉଜାଣି ସ୍ରୋତ- ସାଂସ୍କୃତିକ ପ୍ଳାବନର ଅନ୍ତ ଘଟିଲା । ତାଙ୍କର ଅମ୍ଳାନ ସ୍ମୃତି ପ୍ରତି ମୋର ଅଜସ୍ର ନମସ୍କାର ।

■■

# କାହ୍ନୁ ଭାଇନା

- ସ୍ନେହଲତା ମହାପାତ୍ର

ମଧୁର ହସ ସାଥିରେ

ମମତାର ବାସ ଭରି-

ବିଞ୍ଚୁଥିଲ ସବୁଦିଗେ

ଏହି ଧରା ତଳେ ।

...ହଠାତ ଦିନେ ଗଲ ଭାସି

ସମୟର ଅନନ୍ତ ସ୍ରୋତରେ ।

ଲିଭିଗଲା ତୁମରି  ସେ ମାଟିର ପ୍ରଦୀପ

ବନ୍ଧୁ ପରିଜନ ପ୍ରାଣେ

ଶୋକର ଆବେଗ

ଗଲ ଚାଲି ଦୂରେ, ବହୁ ଦୂରେ

ମିଶିଗଲ ଅଦୃଶ୍ୟ ରାଜ୍ୟରେ ।

ତୁମରି ସ୍ନେହ ବନ୍ଧନ-

କରିଥିଲା ସଭିଙ୍କୁ ଏକାଠି

ରୂପେ ଗୁଣେ ପରିପୂର୍ଣ୍ଣ

ସନ୍ତାନ ସନ୍ତତି ।

ସେ ବନ୍ଧନ ଛିନ୍ନ କରି ଗଲ ଚାଲି...

ହଁ, ସମସ୍ତେ ତ ଯାଆନ୍ତି ଏମିତି

ହେ କାହ୍ନୁ ଭାଇନା !

କ୍ଷୀର ପାଇଁ ତୁମର ତ କେତେ ଆକର୍ଷଣ

ଆଜି ମଧ ମନେ ପଡ଼େ ମୋର

ନାନୀଙ୍କ ଚକ୍ଷୁରୁ ଛୁଟେ କେତେ ଅଶ୍ରୁ ଧାର

ଏକ ଆତ୍ମା ପରି ଥିଲ ରହି

ସୁବାସିନୀ ନାନୀ କଥା

ମନେ କି ପଡ଼ିଲା ନାହିଁ ?

ତୁମରି ସେ ହସ ହସ ମୁହଁ

ଏବେ ବି ଦିଶୁଛି...

ତୁମର ସେ ସ୍ନେହବୋଳା ସାନ୍ତ୍ୱନାର ବାଣୀ-

ଏବେ ବି ଶୁଭୁଛି...

ହେ କାହ୍ନୁ ଭାଇନା !

ଜଗନ୍ନାଥ ଜୟଦେବ

ଏ ଦୁହିଁଙ୍କୁ ଜଗତରେ

ଦେଲ ଯେଉଁ ପରିଚୟ;

ଓଡ଼ିଆ ଜାତିର ସ୍ମୃତିରେ

ରହିଗଲ ସର୍ବଦା ଅକ୍ଷୟ !!

ଶାଶ୍ୱତେ ମିଶିବା ପାଇଁ ଅନନ୍ତ ସେ ଯାତ୍ରାପଥ-

ସେ ପଥର ଯାତ୍ରୀ ତୁମେ ଆଜି-

.... ଦେଉଛି ମୁଁ ଭେଟି

ତୁମରି ସ୍ମୃତିରେ ଏଇ ଛୋଟ କବିତାଟି ।

■■

# ନନା

- ସୀମା ମିଶ୍ର

ସମୟର ଧୂଆଁଳିଆ ପଣତ ତଳେ ସବୁ କଣ ସତରେ ହଜିଯାଏ ? ସ୍ମୃତି ତ ଚିର ସମୁଜ୍ଜ୍ୱଳ ଇଲାକାଟିଏ । କେତେ ମୁଗ୍ଧ ମଧୁର କାହାଣୀର ସ୍ୱାକ୍ଷର ନେଇ ସବୁବେଳେ ଉଜ୍ଜ୍ୱଳ ଦିଶୁଥାଏ । ଇସାରା କରେ, ସ୍ନେହ ସମ୍ଭାଷଣ କରେ, ଆଖିରୁ ଲୁହ ପୋଛି ଦିଏ । ବାସ୍ତବତାର ନିର୍ମମ ଧୂଳିଧୂଆଁରୁ ହାତ ଧରି ସ୍ମୃତିଧାରର କେଉଁ ଅଭୁଲା ମୁହୂର୍ତ୍ତ ଆଡ଼କୁ ନେଇଯାଏ । ଆଉଁସି ଦିଏ, ନିଜର ପରିଚୟ ପୁଣି ଫେରାଇ ଦିଏ ।

କିପରି ପ୍ରକାଶ କରିବି ନନା, ତୁମେ ମୋ ପାଇଁ କଣ ? ନନା, ଅତି ଆଦରର, ଶ୍ରଦ୍ଧାର, ସମ୍ମାନର ଶବ୍ଦଟିଏ । ଯେପରି ସଂସାରର ସମସ୍ତ କୋମଳତା, ମଧୁରତା, ସୁନ୍ଦରତା ଓ ଉଜ୍ଜ୍ୱଳତା ମିଶି ରହିଛି ଏଇ ଶବ୍ଦଟିରେ । ମାନବିକତାର ଉଜ୍ଜ୍ୱଳ ପ୍ରତିବିମ୍ବ ତୁମେ ନନା, ଜୀବନର ଧ୍ରୁବତାରା । ଅସରନ୍ତି ପଥଚଲାରେ କ୍ଲାନ୍ତ, ଦିଗଭ୍ରାନ୍ତ ମନକୁ ଏବେ ବି ରାସ୍ତା ଦେଖାଇଦିଅ, ହାତ ଧରି ବାଟ ଚଲାଇନିଅ । ଏମିତି ଚାଲୁ ଚାଲୁ ଜୀବନର କେତେ ଘାତ ପ୍ରତିଘାତ ଭିତରେ ଝୁଣ୍ଟି ପଡ଼ିଛି । କିନ୍ତୁ ତୁମର ଉଜ୍ଜ୍ୱଳ ହସ ହସ ମୁହଁ ଓ ପ୍ରସାରିତ ହାତ ବାରବାର ମୋତେ ହାତ ଧରି ବାଟ ଚଲେଇ ନେଇଛି ।

ମନେ ପଡ଼ିଯାଏ, ପାରଳାଖେମୁଣ୍ଡିର ସେଇ ନାଲି ଟାଇଲ ଘର । ଘର ସାମ୍ନାରେ ମଧୁ ମାଳତୀର ସମାରୋହ । ସକାଳର କଅଁଳ ଆଲୁଅରେ ହସନ୍ତ ସୂର୍ଯ୍ୟମୁଖୀମାନଙ୍କର ପଟୁଆର । ତୁମରି ହାତ ଧରି ଛୋଟିଆ ଶିଶୁଟିଏ ଦୁନିଆକୁ ଦେଖୁଥାଏ । ସବୁଦିନ ପରି ମୟୂରଟିଏ କେଉଁଆଡୁ ଉଡ଼ି ଆସି ଗେଟ୍ ଉପରେ ବସିଥାଏ । ପରଟିଏ ଝଡ଼ିପଡ଼େ । ପରଟିକୁ ଗୋଟେଇ ଆଣି ତୁମେ ଧରାଇଦିଅ ସେଇ ଶିଶୁଟିର ହାତରେ । ସେଇ ମୁହୂର୍ତ୍ତରେ ଯେପରି ଦୁନିଆର ସମସ୍ତ ସୁନ୍ଦରତାର ମଧୁର ବିସ୍ଫୋରଣ ହୁଏ ଶିଶୁର କୋମଳ ହୃଦୟରେ । ଶିଶୁଟି ବୁଝିପାରେନି କଣ ଧରି ରଖିବ ତା କୁନି କୁନି ହାତରେ । ମୟୂର ପଙ୍ଖ, ମଧୁମାଳତୀର ବାସ୍ନା କି ସୂର୍ଯ୍ୟମୁଖୀର ସୁନାର ରଙ୍ଗ ! ସବୁରି ଉପରେ ତୁମର ସ୍ନେହୋଚ୍ଛଳ ବ୍ୟକ୍ତିତ୍ୱ, ସୁନାପରି ଉଜ୍ଜ୍ୱଳ ରଙ୍ଗ ଓ ତାଠାରୁ ଉଜ୍ଜ୍ୱଳ ହସ ହସ ମୁହଁ । ଶିଶୁଟି ବୁଝିପାରେନି କିଏ ବେଶୀ ମନୋରମ, ସେ ସକାଳ କି ତୁମେ । ଚିର କାଳ ସଜା ହୋଇ ରହିଛି ସେ ଚିତ୍ରଟି ମୋ ହୃଦୟରେ । ଏହାହିଁ

ଥିଲା ମୋର ପ୍ରଥମ ଅନୁଭୂତି ସ୍ୱର୍ଗର । ମନେ ବି ପଡ଼େ ତୁମ ସାଥୀରେ ବଣ ଭୋଜି, ମହେନ୍ଦ୍ର ତନୟାରେ କାର୍ତ୍ତିକ ସ୍ନାନ ଓ ତା ବକ୍ଷରୁ ସୁନା ଗୁଣ୍ଡପରି ସୂର୍ଯ୍ୟାଲୋକକୁ ତୋଳି ଆଣିବାର ଆଗ୍ରହ । ସକାଳେ ତୁମ ସାଥିରେ ବାଡ଼ିର ସଜ ଟମାଟୋ ଓ ଭିଜା ବୁଟ ଖାଇବାର ଆନନ୍ଦ ।

ତୁମରି ଆଖିରେ ଏ ଦୁନିଆକୁ ଦେଖିଥିଲି ନନା, ଚିହ୍ନେଇ ବି ଦେଇଥିଲ ଭଲ କଣ ମନ୍ଦ କଣ, ମଣିଷ ପଣିଆ କଣ, ଅପରକୁ ଆନନ୍ଦ ଦେବାରେ ଆନନ୍ଦ କଣ, କ୍ଷମା, ତିତିକ୍ଷା କଣ । ସବୁ କିଛି ତୁମଠାରୁ ଶିଖିଥିଲି, ନନା ! ବୟୋବୃଦ୍ଧ ଯେ ଚିର ନମସ୍ୟ ଆଉ ସବୁରି ଊର୍ଦ୍ଧ୍ୱରେ ମଣିଷର ପୂଜା, ଦୁଃଖୀରଙ୍କିଙ୍କର ସେବା ଯେ ନାରାୟଣଙ୍କର ସେବା । କାହାର ଭଲ ଗୁଣ ଦେଖିଲେ ଯେପରି ଶତମୁଖରେ ତାର ପ୍ରଶଂସା କର, କାହାର ମନ୍ଦଗୁଣ ଦେଖିଲେ ସେପରି କ୍ଷମାଶୀଳ ହୋଇଯାଅ । ଏକ ବିଶାଳ ଓ ଉଦାର ହୃଦୟର ଅଧିକାରୀ ଥିଲ ତୁମେ । କେଉଁ ଅମୃତ ବେଳରେ ଏ ଧରାରେ ପାଦ ଦେଇଥିଲ ନନା, ଶତ ଶତ ଜୀବନକୁ ଅମୃତମୟ କରି ଦେଇଛ । ଅସୀମ ଧୈର୍ଯ୍ୟ ଓ ସାହସର ଅଧିକାରୀ ଥିଲ । ତୁମ ଜୀବନରେ କେତେ ଝଡ଼ଝଞ୍ଜା ନ ଆସିଛି । କିନ୍ତୁ କେହି ବି ତୁମ ଓଠରୁ ସେ ନିର୍ମଳ ହସ ଟିକିକ ଛଡ଼ାଇ ନେଇପାରିନାହାନ୍ତି । ତୁମରି ଅହଙ୍କାର ଶୂନ୍ୟ ବ୍ୟକ୍ତିତ୍ୱ ଆଗରେ ସବୁରି ଦମ୍ଭ ଅଭିମାନ ହାର ମାନିଯାଇଛି । ସେବା, କରୁଣା ଓ ତ୍ୟାଗର ପ୍ରତିମୂର୍ତ୍ତି ତୁମେ, ପ୍ରକୃତିର ପ୍ରକୃତ ପୂଜାରୀ ଥିଲ । ସତ୍ୟ କଣ, ଶିବ କଣ, ସୁନ୍ଦରତା କଣ ସବୁକିଛି ମୁଁ ଅନୁଭବ କରିଛି ତୁମରି ପାଖରେ । ଆଶା, ନିରାଶା, ସଫଳତା ବିଫଳତା ସବୁରି ଊର୍ଦ୍ଧ୍ୱରେ ତୁମରି ଆଦର୍ଶକୁ ପାଥେୟ କରି ଚାଲିଛି ନନା, ସେଇ ଆଲୋକିତ ଦିଗନ୍ତ ଆଡ଼େ, ଯେଉଁଠାରେ ତୁମେ ଅଛ, ତୁମରି ଆଦର୍ଶ ଅଛି, ମାନବିକତା ଅଛି । ତୁମେ ତ ଅମୃତପଥର ଯାତ୍ରୀ । ଶ୍ରଦ୍ଧା ଓ ଭକ୍ତିର ସହସ୍ର ଶତଦଳ ବିଛେଇ ଦେଉଚି ତୁମରି ପାଦ ତଳେ ।

XXX

ନନାଙ୍କ କଥା ଲେଖିଲା ବେଳେ ଅନେକ ଛୋଟ ଛୋଟ କଥା ମନେ ପଡ଼ିଯାଏ । ଛୋଟ ଛୋଟ ହୋଇଥାଉ । ପ୍ରତି ରାତିରେ ଆମ ରୁମକୁ ଆସିବେ । ଥଣ୍ଡାଦିନ ହୋଇଥିଲେ ଝରକା ସବୁ ବନ୍ଦ କରିବେ, ଚାଦର ଖସି ଯାଇଥିଲେ ଘୋଡ଼ାଇ ଦେବେ । ଆଉ ଯଦି କାହାର ଦେହ ଖରାପ ଥାଏ ତେବେ ସାରା ରାତି ଜଗି ବସିବେ, ସହରର ସବୁଠାରୁ ଭଲ ଡାକ୍ତରଙ୍କୁ ଆଣି ଦେଖେଇବେ । ଦେଖିଚି- ବୋଉ ପାଇଁ ରାତି ରାତି ଅନିଦ୍ରା ହୋଇ ତାର ସେବା କରିବା, ମଣିଷର ସେବା ଯେ ନାରାୟଣଙ୍କ ସେବା ତା ମୁଁ ଅନୁଭବ କରିଚି ନନାଙ୍କ ପାଖରେ । ନଈବଢ଼ି

ଓ ବାତ୍ୟା ସମୟରେ କେତେଥର ଦେଖିଚି ତାଙ୍କୁ ରିଲିଫ୍ ନେଇ ଯିବାର । ମାଇଲ ମାଇଲ ଖାଲି ପାଦରେ ଚାଲିଥିବେ, ଡଙ୍ଗାରେ ଯାଇଥିବେ, ଆସିଲା ବେଳକୁ ଗୋଡ଼ ଦୁଇଟି ଫୁଲି ଯାଇଥିବ । ଆମର ପିଲାଦିନ ଏମିତି ଅନେକ ଲୋକଙ୍କ ସେବାରେ ଯାଇଚି । କେହି କେହି ଲୋକ କିଛି ଅସୁସ୍ଥତା କିମ୍ବା ଅସୁବିଧା ନେଇ ଘରକୁ ଆସନ୍ତି । କାହାର କଲେଜରେ ଆଡମିଶନ, କୋର୍ଟ କଚେରୀ କାମ, କିମ୍ବା କିଏ ଅତି ଅଭାବରେ ଅଛି, ଚାକିରିଟିଏ ଦରକାର । କାହାକୁ ନାହିଁ କରିବାର ଶୁଣିନାହିଁ । ସମସ୍ତେ ଘରେ ରହିବେ, ଅତି ଆଦରରେ ନନା ବୋଉ ସେମାନଙ୍କର ସେବା ଯତ୍ନ କରିବେ, ଡାକ୍ତରଙ୍କୁ ନିଜେ ନେଇ ଦେଖାଇବେ । ଅପରେସନ ହେବାର ଥିଲେ ତାର ସୁବିଧା କରାଇବେ । ଯଦିଓ ବୟସରେ ଛୋଟ ଥିଲି, ତେବେ ବି ଘରର ବଡ଼ ହିସାବରେ ନନା ମୋତେ ରୋଗୀମାନଙ୍କର ଦାୟିତ୍ୱ ଦେଇ ଯାଉଥିଲେ । ଅନେକ ସମୟରେ ସେଥିପାଇଁ ଆମ ପାଠପଢ଼ାରେ ବ୍ୟାଘାତ ସୃଷ୍ଟି ହୋଇଛି । ସେ ଯାହା ହେଉ, ସମସ୍ତେ ଆନନ୍ଦରେ ଯେ ଯାହା ଘରକୁ ଫେରିଯାଆନ୍ତି ଏସବୁ ସତ୍ତ୍ୱେ ପର୍ବପର୍ବାଣୀରେ ଘରେ ଦୁଇ ପଟରୁ ସବୁ ବନ୍ଧୁବାନ୍ଧବ ଡକା ହେବେ, ଖିଆପିଆ ହେବ, ତାସ ଖେଳ ହେବ । ଘରର ବାତାବରଣ ଆନନ୍ଦ ଉତ୍ସବରେ ଭରପୁର ଥାଏ । କାହାଠାରୁ କିଛି ପ୍ରତ୍ୟାଶା ନ ରଖି ସବୁରି ସେବା ଯତ୍ନ କରାଯିବା, ତା' ବି ତାଙ୍କର ସୀମିତ ସମ୍ବଳରେ, ମୁଁ ଆଉ କେଉଁଠାରେ ଦେଖିନାହିଁ ।

ମନେ ପଡ଼ିଯାଏ ପିଲାଦିନର କଥାଟିଏ । ମାର୍ଗଶିର ମାସର ହେମାଳ ରାତି । ଝରକା ବାଟେ ତୁହାକୁ ତୁହା ଥଣ୍ଡା ପବନ ପଶି ଆସୁଥାଏ । ଆମେ ଭାଇ ଭଉଣୀ ଏକାଠି ଶୋଇଥାଉ । ଦେଖିଲି ଅଧରାତିରେ ନନା ଆସି ଆମକୁ ସବୁ ଘୋଡେଇ ଦେଲେ । ଆମ ଉପରୁ ଗୋଟିଏ କମଳ ଧୀରେ ଧୀରେ କାଢ଼ିନେଇ ଅନ୍ୟ ରୁମକୁ ଯାଉଥିଲେ । ମୁଁ ଉଠି ଯାଉଥିବା ଲକ୍ଷ୍ୟ କରି ଧୀରେ କହିଲେ "ମା', ସେତିକିରେ ଚଳେଇ ନିଅ । ଆର ଘରେ ଶୋଇଥିବା ଲୋକଟି ଅତି ଅସୁସ୍ଥ । ଏଇଟି ନେଉଛି ତାକୁ ଘୋଡ଼େଇ ଦେବି ।"

ପିଲାଦିନେ ଆମ ସାଥିରେ ଆଉରି ଚାରି ପାଞ୍ଚ ଜଣ ଘରେ ରହି ପଢ଼ିବାର ମନେ ଅଛି । ସମସ୍ତଙ୍କୁ ନନା ବୋଉ ପୁଅ ଝିଅ ପରି ସ୍ନେହ କରୁଥିଲେ । ଏଯାଏଁ ତାଙ୍କ ସହିତ ଆମର ସଂପର୍କ ରକ୍ତର ସମ୍ପର୍କ ପରି ସୁଦୃଢ଼ ।

ପିଲାଦିନର ଆଉ ଗୋଟିଏ କଥା । ମୋର ମନେ ଅଛି, ଦରମା ପାଇଲା ପରେ ଖାମ୍‌ରେ କେତେ ପିଲାଙ୍କ ପାଇଁ ବୋଉକୁ ଲୁଚାଇ ପାଠ ପଢ଼ିବା ପାଇଁ ଟଙ୍କା ପଠାଉଥିଲେ ।

ଖୁବ୍ କ୍ୱଚିତ ନନାଙ୍କୁ ରାଗିବା ଦେଖିଛି । କାହାକୁ କିଛି ବାଧିଲା ପରି କହିବା ତାଙ୍କ

ପକ୍ଷରେ ଅସମ୍ଭବ ଥିଲା । କେବେ କାହାର ଭୁଲ ଦେଖିଲେ କଥା ଛଳରେ ବୁଝେଇବେ, ଉପଦେଶ ଦେବେ । ଏ ବି ମନେ ଅଛି ଯଦି ମୋର ଭୁଲ ଦେଖନ୍ତି ମିଛି ମିଛିକା ରାଗିବେ, ବୁଝାଇବେ; ବଡ଼ମାନଙ୍କ ରାଗ ଯେ ଆଶୀର୍ବାଦ ତା'ବି ବୁଝେଇଦେବେ । ଏଇ ପ୍ରସଙ୍ଗରେ ଅନେକ ଥର ଏ ଘଟଣାଟି ନନାଙ୍କ ଠାରୁ ଶୁଣିଛି । ସୁନିତି କୁମାର ଚାଟାର୍ଜୀ ନନାଙ୍କୁ ପୁଅ ପରି ସ୍ନେହ କରୁଥିଲେ । ଥରେ ନନା ମଉସା ମାଉସୀଙ୍କୁ ପୁରୀ ବୁଲାଇ ନେଇଥିଲେ । କଥା ଛଳରେ ନନା କହିଥିଲେ ''ଜଗନ୍ନାଥଙ୍କୁ ଯିଏ ବେଶୀ ଭଲ ପାଏ ସେ ତାକୁ ସେତିକି ଦୁଃଖ ଦିଅନ୍ତି ।'' ତା ଶୁଣି ଚାଟାର୍ଜୀ ମଉସା ଯାହା କହିଲେ ତାକୁ ନନା ଶୁଦ୍ଧ ବଙ୍ଗଳାରେ ବଡ଼ ସୁନ୍ଦର ଭାବରେ କହନ୍ତି । ଯାହାର ଅର୍ଥ ''ତତେ ଏକ ଶକ୍ତ ଚାପୁଡ଼ା ଦେବି ଯେ ଚୁପ୍ ହୋଇଯିବୁ । ଜଗନ୍ନାଥଙ୍କୁ ଏପରି କହନ୍ତି ?'' ମାଉସୀ ବୋଧେ ଟିକିଏ ଲଜ୍ଜିତ ହୋଇ କହିଲେ ''ତାର ଝିଅର ବିବାହ ହୋଇଗଲାଣି । ତାକୁ ଏପରି କୁହାଯାଏ ?'' ମଉସା କହିଲେ ''ଜାଣିଚ ? ଯିଏ ଯାହାକୁ ବେଶୀ ଭଲପାଏ ତା ଉପରେ ତାର ରାଗ କରିବାର ପୂରା ଅଧିକାର ଅଛି । ଏତ ତା ପାଇଁ ଆଶୀର୍ବାଦ ।'' ଏକଥା କହି, ନନା ବୁଝାନ୍ତି କହନ୍ତି ତେଣୁ ମା ମନଦୁଃଖ କରିବୁ ନାହିଁ । ମୁଣ୍ଡ ନଇଁ ପ୍ରଣାମ କଲେ ବ୍ୟସ୍ତ ହୋଇ ପଡ଼ିବେ, କହିବେ ତୁ'ତ ମୋର ସୁନା ମାଆ ତୋ ପାଇଁ ମୋ ଆଶୀର୍ବାଦ ସବୁବେଳେ ଅଛି । ଏବେ ସେଇ ସ୍ନେହବୋଳା କଥା ପଦେ ଶୁଣିବା ପାଇଁ ମନ ବ୍ୟାକୁଳ ହୋଇଉଠେ ।

ଘର ଫାଟକ ଖୋଲି ଆଣିଲେ ଆଖିରେ ଲୁହ ଭରିଯାଏ । ଆଖିରେ ପଡ଼େ ତାଙ୍କର ହାତ ଲଗା ଫଳଗଛ ସବୁ । ଯେପରି ଧୀର ପବନରେ ହଲି ଦୋହଲି ନନାଙ୍କ ସାଙ୍ଗରେ କଥାଭାଷା ହେଉଥାଆନ୍ତି । ଆଉ ସେଇ ଗଛମାନଙ୍କର ତଳେ ଠିଆ ହୋଇ ମୁଁ ତାଙ୍କୁ ଅନୁଭବ କରେ, କାନ ପାତେ କାଳେ ନନାଙ୍କର ସ୍ୱର ଶୁଭିଯିବ ପରା 'ଆ, ମା ଉପରକୁ ଆ' ।

''ତୁମେ ତ ଚାଲିଗଲ ନନା । କାହାର ଆଖିରୁ ଲୁହ ନଝରିଛି ସେଦିନ । ରିକ୍ସା ବାଲାଠାରୁ ବନ୍ଧୁ ସ୍ୱଜନ ଯାଏଁ । ସେ ଲୁହ ତ ଶୁଖିବାର ନୁହେଁ । କବି ଯଥାର୍ଥରେ କହିଛନ୍ତି

''ଜନ୍ମ ହୋଇ ଦେବତା ବି ମରେ

ସାର୍ଥକ ଜନମ ତାର

ଯାହା ପାଇଁ ମାଟି ଗୋଡ଼ି ଝୁରେ ।''

ସମସ୍ତ ଶ୍ରଦ୍ଧା ଓ ଭକ୍ତି ତୁମରି ପାଦ ତଳେ ଢ଼ାଳି ଦେଉଛି ନନା, ଆଶୀର୍ବାଦ କରନ୍ତୁ, ଆପଣଙ୍କ ପରି ଅନ୍ତରାତ୍ମା ନିର୍ମଳ ହେଉ, ସୁନ୍ଦର ହେଉ, ସହୃଦୟତାରେ ପରିପୂର୍ଣ୍ଣ ହେଉ ।

XXX

